ଓଡ଼ିଆ ଗବେଷଣା ପରିଷଦ
(ପ୍ରତିଷ୍ଠା–୧୯୮୦)
Institute of Oriya Studies
(Regd. No. CTC.-290-290/1980-81)
Saraswat Nilay
Sri Aurobindo Nagar, Madhupatna
Cuttack-753010

ଓଡ଼ିଆ ଗବେଷଣା ପରିଷଦ ଗ୍ରନ୍ଥମାଳା
ସଂପାଦକ ମଣ୍ଡଳୀ :
ଡକ୍ଟର କୃଷ୍ଣଚରଣ ବେହେରା
ଶ୍ରୀ ଚିତ୍ତରଞ୍ଜନ ଦାସ
ଡକ୍ଟର ଲାବଣ୍ୟ ନାୟକ

Digitized by srujanika@gmail.com

# କାବ୍ୟପୁରୁଷର କଥା

ଓ

# ଅନ୍ୟାନ୍ୟ ପ୍ରବନ୍ଧ


ଲେଖକ :

ଅଧ୍ୟାପକ ଡକ୍ଟର ୰କ୍ଷେତ୍ରବାସୀ ନାୟକ






୨୦୦୩

ଓଡ଼ିଆ ଗବେଷଣା ପରିଷଦ

ସାରସ୍ୱତ ନିଳୟ, ଶ୍ରୀଅରବିନ୍ଦ ନଗର

ମଧୁପାଟଣା, କଟକ-୭୫୩୦୧୦



Digitized by srujanika@gmail.com

# କାବ୍ୟପୁରୁଷର କଥା
## ଓ ଅନ୍ୟାନ୍ୟ ପ୍ରବନ୍ଧ

ପ୍ରଥମ ପ୍ରକାଶ–୨୦୦୩
ପ୍ରକାଶକ ଓଡ଼ିଆ ଗବେଷଣା ପରିଷଦ ଦ୍ୱାରା


ସର୍ବସ୍ୱତ୍ୱ ସଂରକ୍ଷିତ


ମୁଦ୍ରଣ : ଟେକ୍‌ନୋ ଆର୍ଟସ୍ ଅଫ୍‌ସେଟ୍
କଲ୍ୟାଣୀନଗର, କଟକ-୧୩

ମୂଲ୍ୟ : **ପଞ୍ଚସ୍ତରୀ ଟଙ୍କା**

**Kavya Purusar Katha**
and other essays
Written by **Dr. Kshetrabasi Nayak**

First published in 2003

Printed at : **Techno Arts Offset**
Kalyaninagar, Cuttack-13

Price : Rupees **Seventy five** only



Digitized by srujanika@gmail.com

# ନିର୍ଦ୍ଦେଶିକା


| | ବିଷୟ | ପୃଷ୍ଠାଙ୍କ |
|---|---|---|
| ୧. | ଅଗ୍ରଲେଖ | |
| ୨. | କାବ୍ୟପୁରୁଷର କଥା | ୧ |
| ୩. | କବିତା କାହିଁକି ? | ୧୧ |
| ୪. | ପ୍ରାଚୀନ କବିଙ୍କ କାବ୍ୟତତ୍ତ୍ୱ | ୨୬ |
| ୫. | ଜୀବନସତ୍ୟ ଓ କାବ୍ୟସତ୍ୟ | ୩୦ |
| ୬. | କାବ୍ୟ-ପ୍ରୟୋଜନ ଓ ନନ୍ଦନତତ୍ତ୍ୱର କଥା | ୩୫ |
| ୭. | କବି-ଉକ୍ତି : ବକ୍ରୋକ୍ତି | ୪୩ |
| ୮. | କାବ୍ୟବିମ୍ବ ପ୍ରସଙ୍ଗ ଓ କବି ସାରଳା ଦାସ | ୪୯ |
| ୯. | ଆଧୁନିକତା ଓ ଆଧୁନିକ କବିତାତତ୍ତ୍ୱ | ୫୫ |
| ୧୦. | ଫକୀରମୋହନଙ୍କ ସାରସ୍ୱତ ଦୃଷ୍ଟି | ୬୫ |
| ୧୧. | ଲେଖକର ସ୍ୱର୍ଗ ଓ ମର୍ତ୍ତ୍ୟ | ୭୨ |
| ୧୨. | ପ୍ରେମ : ଏକ ଚେତନା | ୭୫ |
| ୧୩. | ସାହିତ୍ୟ ଓ ଆମ ସାହିତ୍ୟ | ୮୩ |
| ୧୪. | ଆଧୁନିକତା ଓ ଓଡ଼ିଆ ସାହିତ୍ୟ | ୮୬ |
| ୧୫. | ସଂପାଦନା ପ୍ରସଙ୍ଗ | ୯୬ |
| ୧୬. | ଗବେଷଣାର ସରହଦ ଓ ବିଷୟ ପରିକଳ୍ପନା | ୧୦୨ |




Digitized by srujanika@gmail.com

# ଅଗ୍ରଲେଖ

ଏହି ପୁସ୍ତକର ପ୍ରବନ୍ଧଗୁଡ଼ିକ ଦୀର୍ଘ କାଳ ପୂର୍ବର ଲେଖା; ସମାବେଶ, ଝଙ୍କାର, ସପ୍ତର୍ଷି, ଗୋଧୂଳି, ସହକାର, ନବରବି, ମୂଲ୍ୟାୟନ, ଏଷଣା, ସୁଚରିତା ପ୍ରଭୃତି ପତ୍ରିକାରେ ଏଗୁଡ଼ିକ ପ୍ରକାଶିତ ହୋଇଥିଲା । ପୁସ୍ତକାକାରରେ ତାହାର ପ୍ରକାଶିତ ରୂପ ଦେଖିବା ପୂର୍ବରୁ ଡଃ ନାୟକଙ୍କ ତିରୋଧାନ ଘଟିଲା । ସେହି ପ୍ରବନ୍ଧସବୁକୁ ଏକତ୍ର କରି ପ୍ରକାଶ କରିବାର ପ୍ରୟାସ କରାଯାଇଛି ।

ଡଃ କ୍ଷେତ୍ରବାସୀ ନାୟକ ତାଙ୍କ ଜୀବନର ସ୍ୱଳ୍ପ ପରିସୀମା ମଧ୍ୟରେ ଗଳ୍ପ, କବିତା ସହିତ ମୌଳିକ ସମାଲୋଚନା ଓ ଗବେଷଣାତ୍ମକ ବହୁଗ୍ରନ୍ଥ ରଚନା କରିଛନ୍ତି । ସେଗୁଡ଼ିକ ମଧ୍ୟରେ ତାଙ୍କର ଗବେଷଣାତ୍ମକ ନିବନ୍ଧ 'ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ' ଓ 'ଭାରତୀୟ କାବ୍ୟତତ୍ତ୍ୱ' ଉଚ୍ଚକୋଟୀର ସାହିତ୍ୟ କୃତି । ତାଙ୍କ ଗବେଷଣା ନିବନ୍ଧରେ ସେ ଯେପରି ଚମତ୍କାର ତୁଳନାତ୍ମକ ବିଚାର କରିଛନ୍ତି, ଭାରତୀୟ କାବ୍ୟତତ୍ତ୍ୱରେ ସାହିତ୍ୟବିଦ୍ୟା ସମ୍ପର୍କରେ ପାଠକମାନଙ୍କୁ ସେହିପରି ଅତି ସ୍ପଷ୍ଟ ଓ ପ୍ରାଞ୍ଜଳ ଧାରଣା ଦେଇ ପାରିଛନ୍ତି ।

ଉକ୍ତ ପୁସ୍ତକରେ ସନ୍ନିବେଶିତ ପ୍ରବନ୍ଧଗୁଡ଼ିକ ମୁଖ୍ୟତଃ କାବ୍ୟତତ୍ତ୍ୱ ଉପରେ ଆଧାରିତ । ଏଥିରେ କବିତାର ଲକ୍ଷ୍ୟ କ'ଣ, କାବ୍ୟ ପୁରୁଷର ବକ୍ତବ୍ୟ କ'ଣ, ଜୀବନ-ସତ୍ୟ ସହିତ କାବ୍ୟ-ସତ୍ୟର ସମ୍ବନ୍ଧ କଣ, କାବ୍ୟର ଉଦ୍ଦେଶ୍ୟ ଆନନ୍ଦ ବିତରଣ ନା ସୌନ୍ଦର୍ଯ୍ୟାନୁଭୂତି, ଏପରି ବହୁ ପ୍ରଶ୍ନ ଉତ୍ଥାପନ କରିବା ସହିତ ସେ ଅତି ସ୍ପଷ୍ଟ ଓ ପ୍ରାଞ୍ଜଳ ଭାବରେ ତାହାର ବିଚାର ଆଲୋଚନା କରିଛନ୍ତି । 'କବିତା କାହିଁକି'ରେ ପ୍ରାବନ୍ଧିକ ପ୍ରଶ୍ନ ଉଠାଇଛନ୍ତି – କବିତା ଆଦିମ କାଳରୁ ଆହ୍ଲାଦ ଭିତରେ କାହିଁକି ବଞ୍ଚିଥିଲା ? କେଉଁ ପ୍ରୟୋଜନ ହେତୁ କବିତା ସ୍ୱରରୁ ଶ୍ରୁତିକୁ ଗଲା ? ପୁଣି ଉତ୍ତରରେ ସେ କହନ୍ତି, ଯେହେତୁ ମଣିଷର ଆତ୍ମ ସଂଳାପ ଅପେକ୍ଷା ସମୂହ ସଂଳାପ ପ୍ରତି ଅଧିକ ଆକର୍ଷଣ ଥିଲା, ସେଥିପାଇଁ ତା'ର ଚେତନା ଓ କଳ୍ପନାର ପ୍ରକାଶ ପାଇଁ ଏପରି ହେଲା । ସବୁ କ୍ଷେତ୍ରରେ ସବୁ ସମୟରେ କବିତା ପବିତ୍ରତାର ସ୍ୱର ଉତ୍ତୋଳନ କରିବ କି ? ତେବେ ଓମାରଙ୍କ ରୁବାୟତ, କାଳିଦାସଙ୍କ ଋତୁସଂହାର, ମାନସିଂହଙ୍କ ଧୂପ ପରି ଲେଖାର କ'ଣ କୌଣସି ମୂଲ୍ୟ ନାହିଁ ? ଅପର ପକ୍ଷରେ ସେ କହନ୍ତି, ଶିକ୍ଷା ପାଇଁ କେବଳ କବିତାର ଜନ୍ମ ନୁହେଁ । ପ୍ରକୃତରେ କବିତା ହେଉଛି

Digitized by srujanika@gmail.com

ସୌନ୍ଦର୍ଯ୍ୟବାଦୀ ଓ ଜୀବନବାଦୀ । କାବ୍ୟ ପ୍ରୟୋଜନ ଓ ନନ୍ଦନତତ୍ତ୍ୱର କଥା ପ୍ରବନ୍ଧରେ ମଧ୍ୟ ପ୍ରାବନ୍ଧିକ ମତ ବ୍ୟକ୍ତ କରିଛନ୍ତି ଯେ, ''କାବ୍ୟ ପ୍ରୟୋଜନ ପ୍ରସଙ୍ଗରେ କାବ୍ୟ-ତତ୍ତ୍ୱ ଆନନ୍ଦକୁ ଯେପରି ମୂଲ୍ୟ ଦେଇଥାଏ, ସୌନ୍ଦର୍ଯ୍ୟ ଅବବୋଧ ପ୍ରତି ପ୍ରାୟ ସମଧର୍ମୀ ଧାରଣା ପୋଷଣ କରିଥାଏ ।'' 'କାବ୍ୟ ପୁରୁଷର କଥା'ରେ ସେ କଳାଶକ୍ତି ସମ୍ପର୍କରେ ମତବ୍ୟକ୍ତ କରନ୍ତି ଯେ କଳାଶକ୍ତି ନିସ୍ତେଜ, ବିମର୍ଷ ମନରେ ଉଲ୍ଲାସ ତରଙ୍ଗ ଖେଳେଇ ଦିଏ । ନିଷ୍ପନ୍ଦ, ନିର୍ବାକ୍ ତୁଣ୍ଡରେ ଧ୍ୱନିର ଗୁଞ୍ଜରଣ ସୃଷ୍ଟିକରେ । କାବ୍ୟତତ୍ତ୍ୱ ଉପରେ ଆଲୋଚନା କଲାବେଳେ ଡଃ ନାୟକ ପ୍ରାଚୀନ ଓ ଆଧୁନିକ ଉଭୟ ସାହିତ୍ୟକୁ ପରିସର-ଭୁକ୍ତ କରିଛନ୍ତି । 'ପ୍ରାଚୀନ କବିଙ୍କ କାବ୍ୟ ତତ୍ତ୍ୱ' ଓ 'ଆଧୁନିକତା ଓ ଆଧୁନିକ କବିତା ତତ୍ତ୍ୱ' ପ୍ରବନ୍ଧ ଦୁଇଟିରୁ ତାହାର ପ୍ରମାଣ ମିଳେ । ପ୍ରାଚୀନ କାବ୍ୟତତ୍ତ୍ୱ ସମ୍ପର୍କରେ କହିବାକୁ ଯାଇ ପ୍ରାବନ୍ଧିକ ମତବ୍ୟକ୍ତ କରନ୍ତି ଯେ ଉଭୟମାନର କାବ୍ୟସୃଷ୍ଟିରେ ପଣ୍ଡିତପଣ ଓ କବିପଣ ଉଭୟର ପ୍ରୟୋଜନିୟତା ରହିଛି । ତେବେ ପ୍ରାଚୀନ କବିପ୍ରତିଭା, ପ୍ରଜ୍ଞା ଓ ପାଣ୍ଡିତ୍ୟର ବଳିଷ୍ଠ ଭୂମିକା ଉପରେ ଆଧାରିତ । ଏଥିରେ ଅନୁଭୂତିର ମୁକ୍ତ ପ୍ରବାହ ଅପେକ୍ଷା ଉପଲବ୍ଧ ଜ୍ଞାନର ପାରଦର୍ଶିତା ଅଧିକ । ଶବ୍ଦ ସମ୍ଭାର, ଆଳଙ୍କାରିକତା, ସଙ୍ଗୀତର ଶ୍ରୁତି ମାଧୁର୍ଯ୍ୟ ଓ ବହୁ ଶାସ୍ତ୍ରର ବିଷୟ ବିନ୍ୟାସ ଆଦି ବିଦ୍ୟମାନ । ତେଣୁ ପ୍ରାଚୀନ କାବ୍ୟତତ୍ତ୍ୱ ଥିଲା ସଂସ୍କୃତ କାବ୍ୟ ତତ୍ତ୍ୱର ଅନୁଗାମୀ । ଆଧୁନିକ କବିତା ତତ୍ତ୍ୱରେ ପ୍ରାବନ୍ଧିକ ଆଧୁନିକତାର ଭାଷ୍ୟ ଓ ସଂଜ୍ଞା ସମ୍ପର୍କରେ ସୂଚାଇବାବେଳେ ଆଧୁନିକତା, ସାମ୍ପ୍ରତିକତା ଓ ସମକାଳୀନତାର ପାର୍ଥକ୍ୟ ଦର୍ଶାଇଛନ୍ତି । ପୁନଶ୍ଚ ଆଧୁନିକ କବିତାର ଭାଷା, ଛନ୍ଦ, କାବ୍ୟବିମ୍ବ, ଚିତ୍ରକଳ୍ପ, ଆର୍କିଟାଇପ୍ ଇତ୍ୟାଦିର ପୃଥକ୍ ପୃଥକ୍ ଆଲୋଚନା କରିବା ମାଧ୍ୟମରେ ପ୍ରାବନ୍ଧିକ ମୁକ୍ତ କଳ୍ପନା ଓ ସୃଜନଧର୍ମିତାର ପରିଚୟ ଦେଇଛନ୍ତି । 'ଆଧୁନିକତା ଓ ଓଡ଼ିଆ ସାହିତ୍ୟ' ପ୍ରବନ୍ଧରେ ଲେଖକ ଆଧୁନିକ ସାହିତ୍ୟ ସମ୍ପର୍କରେ କହନ୍ତି ''ଯେଉଁ ସାହିତ୍ୟରେ ମଣିଷର ମାନସିକ ସଂଘାତର ଇତିହାସ ସ୍ପଷ୍ଟ, ଧର୍ମ ଓ ବିଜ୍ଞାନ ମଧ୍ୟରେ ଦେଖାଦେଇଥିବା ଚିତ୍ର ପ୍ରତିଫଳିତ, ଶାସ୍ତ୍ରୀୟ ଆଚାର ଓ ଅନୁଷ୍ଠାନର ନିଗଡ଼ ଭିତରୁ ମୁକ୍ତ ହେବା ଲାଗି ଯେଉଁଥିରେ ବିଦ୍ରୋହର ସ୍ୱର ଉଚ୍ଚାରିତ କିମ୍ବା ନୂତନ ସମାଜ ସୃଷ୍ଟିର ଆବେଗ ଯେଉଁ ସାହିତ୍ୟରେ ଉଚ୍ଛଳ, ତାକୁ କୁହାଯିବ ଆଧୁନିକ ସାହିତ୍ୟ ।'' ଓଡ଼ିଆ ସାହିତ୍ୟ ସମ୍ପର୍କରେ ଆଲୋଚନା କରିବାବେଳେ ଫକୀରମୋହନଙ୍କଠାରୁ ଆରମ୍ଭ କରି ଅମାବାସ୍ୟାର ଚନ୍ଦ୍ରର ଲେଖକ ଗୋବିନ୍ଦ ଦାସଙ୍କ ପର୍ଯ୍ୟନ୍ତ ବିଭିନ୍ନ ଲେଖକଙ୍କର ସାହିତ୍ୟକୃତିକୁ ଆଲୋଚନାକରି ତହିଁରେ ଆଧୁନିକତାର ଉପାଦାନ କିପରି ପ୍ରତିଫଳିତ ତାହା ଦର୍ଶାଇଛନ୍ତି । 'ଆଧୁନିକତା ଓ ଆଧୁନିକ କବିତାତତ୍ତ୍ୱ' ଏବଂ 'ଆଧୁନିକତା ଓ ଓଡ଼ିଆ ସାହିତ୍ୟ' ଉଭୟ ପ୍ରବନ୍ଧ ସମଧର୍ମୀ ହେଲେ ମଧ୍ୟ ପ୍ରାବନ୍ଧିକ ପୁନରାବୃତ୍ତିକୁ ପ୍ରଶ୍ରୟ ଦେଇନାହାନ୍ତି । ଆଧୁନିକତା ସମ୍ପର୍କରେ ପାଠକମାନଙ୍କର ଧାରଣା ସ୍ପଷ୍ଟ କରିବାରେ ଉଭୟ ପ୍ରବନ୍ଧର ଉପଯୋଗିତା ରହିଛି ।

Digitized by srujanika@gmail.com

କବି ଉକ୍ତି : ବକ୍ରୋକ୍ତି, ଲେଖକର ସ୍ୱର୍ଗ ଓ ମର୍ତ୍ତ୍ୟ, 'ସମ୍ପାଦନା ପ୍ରସଙ୍ଗ' ଏବଂ 'ଗବେଷଣାର ସରହଦ ଓ ବିଷୟ ପରିକଳ୍ପନା' ପ୍ରବନ୍ଧରେ ଲେଖକଙ୍କର ମୌଳିକ ଚିନ୍ତାଧାରା ଓ ସର୍ଜନାତ୍ମକତାର ପରିଚୟ ମିଳେ । 'କବି ଉକ୍ତି: ବକ୍ରୋକ୍ତି'ରେ ସେ ପ୍ରତିପାଦନ କରିଛନ୍ତି ଯେ ବକ୍ର ଅଭିବ୍ୟକ୍ତି ଓ ତିର୍ଯ୍ୟକ ଦୃଷ୍ଟି ହିଁ ହେଉଛି କବିର ଦୃଷ୍ଟି- ବକ୍ରୋକ୍ତି ମାଧ୍ୟମରେ କବିର ସୃଷ୍ଟି ରସୋତ୍ତୀର୍ଣ୍ଣ ହୁଏ । 'ଲେଖକର ସ୍ୱର୍ଗ ଓ ମର୍ତ୍ତ୍ୟ'ରେ ପ୍ରାବନ୍ଧିକ କହନ୍ତି ସମସ୍ୟାର ଆଘାତରେ ମର୍ତ୍ତ୍ୟବାସୀ ଅତିଷ୍ଠ । ସେମାନଙ୍କୁ ସେଥିରୁ ଉଦ୍ଧାର କରିବା ଲେଖକର ଇଚ୍ଛା ।

ସମ୍ପାଦନା କର୍ମକୁ ଅନେକେ ନ୍ୟୂନ ଦୃଷ୍ଟିରେ ଦେଖନ୍ତି; ସେମାନଙ୍କ ମତରେ ଏଥିରେ କଳାତ୍ମକତାର ଅଭାବ ପରିଲକ୍ଷିତ ହୁଏ । ମାତ୍ର ସମ୍ପାଦନା ଯେ ଏକ କଳାକର୍ମ ଏ ବିଷୟରେ ସେମାନେ ଅବଗତ ନୁହନ୍ତି । 'ସଂପାଦନା ପ୍ରସଙ୍ଗ' ପ୍ରବନ୍ଧରେ ଲେଖକ ତାହାହିଁ ସ୍ପଷ୍ଟ କରି ଦେଇଛନ୍ତି । ଓଡ଼ିଆ ସାହିତ୍ୟରେ ଗବେଷଣା ବିଧି ସମ୍ପର୍କରେ ପ୍ରବନ୍ଧ ବା ପୁସ୍ତକର ଅଭାବ ବେଶୀ ଅନୁଭୂତ ହେଉଥିବା ସ୍ଥଳେ ଖ୍ରୀ ୧୯୮୧ରେ ରଚିତ ଗବେଷଣାର ସରହଦ ଓ ବିଷୟ ପରିକଳ୍ପନା ପ୍ରବନ୍ଧଟି ଏହି ଶୂନ୍ୟସ୍ଥାନ ପୂରଣ କରିବାରେ ସାହାଯ୍ୟ କରିଛି । ଜଣେ ଗବେଷକ କିପରି ନିଜର ଶକ୍ତି ସାମର୍ଥ୍ୟକୁ ବିଚାର କରି ଗବେଷଣାର ବିଷୟ ଓ ଗବେଷଣା ନିମନ୍ତେ ଦିଗ୍‌ଦର୍ଶକ ନିର୍ବାଚନ କରିବ ଓ କିପରି ବିଭିନ୍ନ ଉପାଦାନ ସଂଗ୍ରହ କରିବ ଇତ୍ୟାଦି ବହୁ ବିଷୟ ଉପରେ ତାକୁ ଦୃଷ୍ଟି ଦେବାକୁ ହୁଏ । ପୁନଶ୍ଚ ଉପାଦାନ ସଂଗ୍ରହ କରି ଲେଖା ଆରମ୍ଭ କରିବାବେଳେ ଗବେଷକଙ୍କୁ ନିବନ୍ଧର ଭାଷା ଶୈଳୀ, ପାଦଟୀକା, ଅନୁଚ୍ଛେଦ ବିଭାଗ ପ୍ରଭୃତି ବିଭିନ୍ନ ଦିଗପ୍ରତି ଦୃଷ୍ଟି ଦେବାକୁ ହୁଏ । ଏହା ସହିତ ତତ୍ତ୍ୱ ଅନୁସନ୍ଧାନ ଓ ସୂକ୍ଷ୍ମ ପର୍ଯ୍ୟବେକ୍ଷଣ ଦକ୍ଷତା ଏବଂ ତୁଳନାତ୍ମକ ଦୃଷ୍ଟିକୋଣ ଜଣେ ଗବେଷକ ନିମନ୍ତେ ବିଶେଷ ପ୍ରୟୋଜନ । ଉକ୍ତ ପ୍ରବନ୍ଧରେ ଏ ସବୁ ଦିଗପ୍ରତି ଗବେଷକଙ୍କୁ ସଚେତନ ହେବା ପାଇଁ ଦିଗ୍‌ଦର୍ଶନ ଦିଆଯାଇଛି । ଆଶାକରେଁ ଏହି ପୁସ୍ତକଟି ପାଠକମାନଙ୍କର ବେଶ୍ ଆଦୃତି ଲାଭ କରିବ ।

କ୍ଷେତ୍ରବାସୀଙ୍କର ଶ୍ରଦ୍ଧେୟ ଛାତ୍ର ଶ୍ରୀ ସୁଧୀରଚନ୍ଦ୍ର ବେହୁରା, ପ୍ରଦୀପ୍ତ ଶ୍ରୀଚନ୍ଦନ ଓ ଶ୍ରୀ ଅସିତ ମହାନ୍ତି ପ୍ରବନ୍ଧଗୁଡ଼ିକୁ ଏକତ୍ର କରି ପୁସ୍ତକାକାରରେ ପ୍ରକାଶିତ କରିବା ପାଇଁ ବାରମ୍ବାର ଅନୁରୋଧ କରିଥିଲେ । ଏ ଗ୍ରନ୍ଥ ପ୍ରକାଶ କ୍ଷେତ୍ରରେ ଡଃ ଗୋବିନ୍ଦ ଭୂୟାଁ, ଡଃ ହରେକୃଷ୍ଣ ପାତ୍ର, ଶ୍ରୀ ଅନୁରକ୍ତ ଦାସନାୟକ ଏବଂ ସୁଶ୍ରୀ ଋତସର୍ବା ଦାସନାୟକଙ୍କର ପୃଷ୍ଠପୋଷକତା ଧନ୍ୟବାଦର ସହ ସ୍ୱୀକାର କରୁଛୁଁ ।

ସଂପାଦିକା
ଓଡ଼ିଆ ଗବେଷଣା ପରିଷଦ

Digitized by srujanika@gmail.com

# କାବ୍ୟପୁରୁଷର କଥା

କବିତା ଓ କବିତ୍ୱ ଶବ୍ଦ ଦୁଇଟିର ଅଭିଧା ଭିନ୍ନ, ମର୍ମ ମଧ୍ୟ ଅଲଗା । କଳା-ବସ୍ତୁ ଓ କଳା-ଶକ୍ତି ଭିତରେ ଥିବା ପାର୍ଥକ୍ୟ ପରି ଏମାନଙ୍କର କଳା-ଶକ୍ତିର ରୂପ ଦେଖିବାକୁ ଚାହିଁଲେ, ରୂପ ଅପେକ୍ଷା ଅରୂପ ହିଁ ଆଖିରେ ନାଚେ । ସଶରୀରେ ସଂଗୀତ ଆସି ଉଭାହୁଏ ନାହିଁ, ଧ୍ୱନିରେ ଲୁଚି ରହିଥାଏ ତା'ର କାୟା । ଶ୍ରୁତି ଅଶ୍ରୁତ କେତେ ଭଂଗୀରେ ଏଇ ସଂଗୀତ, ମନରେ ମିଶେ, ପ୍ରୀତିରେ ମଜ୍ଜେ, ମରମରେ ଦୋଳିଖେଳେ । ଶାଳଭଂଜିକାର ତନୁରାଗରେ ଉଚ୍ଛୁଳି ପଡୁଥାଏ ପ୍ରସ୍ଫୁଟିତ ଯୌବନର ଆଭା, ଚିଟାଉ ଲେଖିକା ପ୍ରଣୟିନୀର ଆଶାଦୀପ୍ତ ଦୃଷ୍ଟିରେ କେତେ ସ୍ୱର୍ଣ୍ଣକାତରତା ! କବିତାର କଳେବରରେ କେତେ ଆବେଗ ଅନୁଭୂତିର ତରଂଗ ମେଖଳା । ଏମାନେ ସମସ୍ତେ ତ ନିଜ ରୂପର ଆଲୋକରେ ମୂର୍ତ୍ତିମାନ, ଆପଣା ସଂଜ୍ଞାର ଆଭରଣ ଘେନି ପରିଚିତ । କବିତା, ସଂଗୀତ, ସ୍ଥାପତ୍ୟ ଇତ୍ୟାଦି ଅଭିବାଚକ ଶବ୍ଦ ଗୁଡ଼ିକ ଗୋଟିଏ ଗୋଟିଏ ଆଧାର, ଆଧେୟର ମୂଲ୍ୟବଳରେ ଏମାନେ ମୂଲ୍ୟବାନ । ଆଧେୟ ନଥିଲେ ଆଧାର ମୃତ, ପ୍ରାଣ ଉଡ଼ିଗଲେ ଶରୀର ଶବ ହେଲାପରି । ପିଣ୍ଡପଡ଼ିଛି ପ୍ରାଣନାହିଁ, ପିଣ୍ଡରେ ପ୍ରାଣ ପଶିଲେ ମଣିଷ କଥା କହେ । କଳା-ବସ୍ତୁରେ କଳା-ଶକ୍ତିର ସଂଯୋଗ ଘଟିଲେ ତାହାର ଜୀବନ ତେଜ ଫିଟେ, ଧୂସରତା ଉଭେଇଯାଏ, ବିବର୍ଣ୍ଣତାର ଦୃଷ୍ଟଦାଗ ଲିଭିଯାଏ ।

## କବିତା ଓ କବିତ୍ୱ :

କବିତା ଏକ କଳା-ବସ୍ତୁ, କବିତ୍ୱ ହେଉଛି କଳା-ଶକ୍ତି । ଯେଉଁ ଶକ୍ତିର ପରଶ ଲାଗିଲା କ୍ଷଣି ନିସ୍ତେଜ ପ୍ରାଣରେ ମୂର୍ଚ୍ଛନାର ତରଂଗ ଖେଳିଯାଏ, ଅମର୍ଷ ମନରେ ଉଲ୍ଲାସର ଦୀପ ଜଳି ଉଠେ, ନିର୍ବାକତୁଣ୍ଡ ଆପଣା ଛାଏଁ ଗୁଣୁ ଗୁଣୁ ଧ୍ୱନି କରି

Digitized by srujanika@gmail.com

ଗୁଞ୍ଜରି ଉଠେ, ସେଇ ଶକ୍ତିଟି ହେଉଛି କଳା ଶକ୍ତି । ବିଭିନ୍ନ ଉପାଦାନ ମିଶାଇ ଦେଇ ବୈଜ୍ଞାନିକ ପ୍ରଣାଳୀରେ ଏପରି ଏକ ଶକ୍ତି କି ପ୍ରତ୍ୟକ୍ଷ ଆକାର ଦେଇହୁଏ ନାହିଁ । ବାଗ ଓ ରାଗ ତୁଳ କରି ବେଦୀଟିଏ ତିଆରି କରିଦେଲେ କଳା-ଶକ୍ତିକି ଆବାହନ କରି ଅଣାଯାଇପାରେ; ଏପରି ଇଚ୍ଛାକୃତ ଉଦ୍ୟମରେ କଳାଶକ୍ତିର ଫୁଲଫୁଟେ– ଏମିତି ଭାବନା ମିଥ୍ୟା ।

କଳା-ଶକ୍ତି ଫୁଲର ମହକ ପରି କେଉଁଠୁ ଆସେ କେଉଁଥାନକୁ ଯାଏ କେହି ଦେଖେନାହିଁ । ତେବେ କୌତୂହଳ ହେବା ସ୍ୱାଭାବିକ, ଏପରି ଯଦି କଳା-ଶକ୍ତିର ଗୁଣ ଏହାର ପ୍ରକୃତ ଉତ୍ସ-କେଉଁଠି ? ବିଶ୍ୱର ଅନନ୍ତ ଆୟତନ ଭିତରେ ଏହା ଲୁଚି ରହିଥାଏ କି ? ନା ବିଶ୍ୱ ବାହାରେ ଆଉ କିଛି ଅଦେଖା ଦିଗବଳୟ ଅଛି, ତାହାରି ଆଡୁଆଳରେ ଏହା ଥାଏ, ତାକୁ ଆଖି ଦେଖେ ନାହିଁ, ମଣିଷର ଜିଜ୍ଞାସା ତାହାରି ଭାବନାର ସୁରତୀର୍ଥରେ ପଶି, କିଛି ପାଇ, ନ ପାଇଲା ପରି ବାଟବଣା ହୋଇ ଫେରିଆସେ ?

ମଣିଷର ଆଖିଦେଖା ଜଗତ ଓ ମନ ଜଗତର ମହକୁମା ଭିତରେ କେତେ ଧ୍ୱନି, କେତେ ଉଚ୍ଚାରଣର ଶଙ୍ଖନାଦ । ଶବ୍ଦ ଅନ୍ତେ ପୁଣି ନିଃଶବ୍ଦତାର କେତେ ଲୀଳା, ଉଚ୍ଚାରିତ-ଅନୁଚ୍ଚାରିତ ଉଚ୍ଛ୍ୱାସର କେତେ ମହାପ୍ଲାବନ; ଅନୁଭୂତିର ଅଜସ୍ର ଧରାପାତ ଓ ବର୍ଷଣର ବର୍ଣ୍ଣମୟ ବିଭୋରତା । ଏତେ ବୈଚିତ୍ର୍ୟ ଓ ବୈପରୀତ୍ୟ ଭିତରେ ପୁଣି କେତେ ସଂଗତି ଓ ବିସ୍ତାର ।

ମନ୍ତ୍ରମୟ ଏଇ ପୃଥିବୀ ଏବଂ ଜ୍ୟୋତିର୍ମୟ ଏଇ ବିଶ୍ୱର ଆକାଶ । କିଂତୁ ଜ୍ୟୋତିର ଅବାରିତ ବିକିରଣ ଓ ମନ୍ତ୍ରର ନିତ୍ୟ ଅନୁରଣନକୁ ଧରି ରଖିବା ଲାଗି ସମର୍ଥ ଯେଉଁ ଶକ୍ତି, –ତାହାହିଁ କବିତ୍ୱ ଶକ୍ତି । କବିତ୍ୱ-ଶକ୍ତିର ଆବିର୍ଭାବ ଓ ମଣିଷଠାରେ ତାହାର ଅନ୍ତଃପ୍ରବେଶ ଘଟିବାରେ ମଧ୍ୟ ତାରତମ୍ୟ ଅଛି । ଶ୍ରୀ ଅରବିନ୍ଦ ଅନୁଭବ କରନ୍ତି ଯେ; ସାଧାରଣ ପ୍ରତିଭା ସଂପନ୍ନ କବିଙ୍କଠାରେ ଏଇ ଶକ୍ତିର ଉନ୍ମେଷ ଝଲକ ପ୍ରାୟ ଘଟେ, କ୍ଷଣମାତ୍ର ରହି ପୁଣି ଅନ୍ତର୍ହିତ ହୋଇଯାଏ । ଦେବଦୂତଙ୍କ ଆବିର୍ଭାବ ପରି ଜ୍ୟୋତିଟିଏ କାହୁଁ ଆସି କାହିଁ ଚାଲିଯାଏ । ସାଧାରଣ କବିଙ୍କ ପକ୍ଷରେ ଏପରି ମୁହୂର୍ତ୍ତ ଖୁବ କ୍ୱଚିତ୍ ଆସେ । କିଂତୁ ଏମାନଙ୍କଠାରୁ କିଂଚିତ୍ ଅଧିକ ପ୍ରତିଭା ସଂପନ୍ନ କବିଙ୍କଠାରେ ଏଇ ଶକ୍ତିର ପ୍ରକାଶ ଓ ପ୍ରମୂର୍ତ୍ତନ ବାରଂବାର ଘଟେ । ଯେଉଁମାନେ ଅମ୍ଳାନ ପ୍ରତିଭାଧର ତାଙ୍କଠାରେ ଏଇ ଶକ୍ତି ସଦାଜୀବିତ, ଏଇ ଜ୍ୟୋତି ତାଙ୍କର

Digitized by srujanika@gmail.com

ତୃତୀୟ ନୟନରୁ ଆଦୌ ଲିଭେ ନାହିଁ । ଏମାନେ ଆଦି କବି, ଶ୍ରୀ ଅରବିନ୍ଦ କହନ୍ତି Arhitypa poets. *

ସଂସ୍କୃତ କାବ୍ୟ-ଶାସ୍ତ୍ରରେ କବିମାନଙ୍କୁ ଅଧମ, ମଧମ, ଉତ୍ତମ ଭେଦରେ ବିଭକ୍ତ କରାଯାଇଛି । ଅରବିନ୍ଦଙ୍କ ସୂତ୍ର, ଆମରି ପାରଂପରିକ 'ସାହିତ୍ୟ-ବିଦ୍ୟା'ରୁ ନିଷ୍ପନ୍ନ କିଂତୁ ନବୀନ ଅନୁଶୀଳନରେ ବର୍ତ୍ତିଥିବା ମନେହୁଏ । ପ୍ରତ୍ୟେକ କବି, ଯିଏ ଯେଉଁ କିସମର ହୁଅନ୍ତୁ ନା କାହିଁକି, ସମସ୍ତେ କବିତ୍ୱ ଶକ୍ତିର ପ୍ରତ୍ୟାଶୀ; କିଏ ପାଏ କିଏବା ପାଇବାଲାଗି ଯତ୍ନକରେ ।

କବିତ୍ୱ ଥିଲେ କବିତା ସୁପ୍ରତ୍ୟକ୍ଷ ହୋଇଯାଏ । କବିତ୍ୱ ଶକ୍ତି, ସୀମାବଦ୍ଧ ଭାଷାର ବେଢ଼ାଭାଂଗି କୌଣସି ଏକ ଆଧାରରେ ଆପଣାକୁ ମୂର୍ତ୍ତିମନ୍ତ କରେ । ମୂର୍ତ୍ତ ଓ ସୁପ୍ରତ୍ୟକ୍ଷ ହେଲେ ଯାଇ ଅଙ୍ଗ ଓ ଅନଙ୍ଗର, ଗୁଣ ଓ ଗୁଣୋତ୍ତରର ପରିଚୟ ମିଳେ । ଅଙ୍ଗ ନାହିଁ ତଥାପି ଅନଙ୍ଗ କେତେ ଶକ୍ତିଶାଳୀ ! ରୂପ-ନାସ୍ତି ସତ କଂତୁ ପ୍ରାଣ-ଶକ୍ତିର ବିଚ୍ଛୁରିତ ପ୍ରକାଶ ତ ଚରାଚରର ପ୍ରତ୍ୟେକ ନିବାସୀଙ୍କୁ ଆଚ୍ଛନ୍ନ କରିଛି । ପ୍ରାଣଶକ୍ତିର ସ୍ପର୍ଶକୁ ଚିହ୍ନି କିଏ କେତେ ମନ୍ତେ ରୂପର କଳ୍ପନା କରୁଛନ୍ତି ଯେପରି 'ଅନଳ ନୁହଁଇ ଦେହ ଦହଇ' ଇତ୍ୟାଦି । ଏଠି ଅନଙ୍ଗର ଭାବ-ମୂର୍ତ୍ତିଟିଏ ଅଂକନ କରାଯାଇଛି, ଭାବ-ସତ୍ତାର ଉପଲବ୍ଧିରୁ ଆମେ ଅନଙ୍ଗକୁ ମନଶ୍ଚକ୍ଷୁରେ ଦେଖିପାରୁଛୁଁ, ପ୍ରାଣଶକ୍ତିର ସ୍ପନ୍ଦନକୁ ଠଉରାଇ ଅମୂର୍ତ୍ତର ସୁପ୍ରତ୍ୟକ୍ଷ ଅନୁଭବ ଆମେ ଲାଭ କରିପାରୁଛୁଁ । ଅତଏବ ଏହା ସତ ଯେ ଭାବ-ସତ୍ତାର ଆଲୋକରେ ଅମୂର୍ତ୍ତକୁ ଦେଖିହୁଏ ।

କଳା-ଶକ୍ତି ବା କବିତ୍ୱ-ଶକ୍ତି ଅମୂର୍ତ୍ତ । ଏହା ସୁପ୍ରତ୍ୟକ୍ଷ ହେବା ପାଇଁ ବସ୍ତୁ-ସତ୍ତା ଅପେକ୍ଷା ଭାବ-ସତ୍ତାର ଦାୟ ବେଶୀ । କାରଣ ବର୍ଣ୍ଣମୟ ରୂପର ଜ୍ୟୋତି ଲିଭିଯାଇପାରେ, କୁହୁଡ଼ି ତାକୁ ଗ୍ରାସ କରିପାରେ, ଅନ୍ଧାର ତାକୁ ଆବୃତ୍ତ କରିପାରେ, ପ୍ଲାବନ ତାକୁ ଲୁଚେଇ ଦେଇପାରେ, ମାତ୍ର ଭାବ-ମୟ ସତ୍ତାର ଜ୍ୟୋତି ତ ଲିଭିବାର ନୁହେଁ କି ହଜିବାର ନୁହେଁ । ଯେଉଁଠି ଏହାର ସ୍ଫୂର୍ତ୍ତି ସେଇଠି ତାର ମୂର୍ତ୍ତିମୟ ପ୍ରକାଶ । ସ୍ଫୂର୍ତ୍ତିକି ଘେନି ମୂର୍ତ୍ତି; କବିତ୍ୱକୁ ଘେନି କବିତା । କବିତାରେ କବିତ୍ୱ ନଥିଲେ ତାହା ପାଷାଣୀ-ଅହଲ୍ୟା, ଆକାର ଅଛି ଆତ୍ମା ନାହିଁ ।

## କାବ୍ୟପୁରୁଷ ହିଁ କବି-କ୍ରତୁ(କବିତ୍ୱ ତେଜ) :

ଯଜ୍ଞ ଗର୍ଭରୁ ଯଜ୍ଞପୁରୁଷଙ୍କର ଆବିର୍ଭାବ ପରି କିଂବା ହିରଣ୍ୟ ପିଣ୍ଡରୁ ହିରଣ୍ୟଗର୍ଭଙ୍କର ଆତ୍ମପ୍ରକାଶ ପରି କବି ଆତ୍ମାରୁ କାବ୍ୟର ଉନ୍ମେଷ । କବି ସତ୍ତାରୁ

---

* Sri Aurobinda- The future poctic vision and the Mantra 1972, Pondichery, page-30.

Digitized by srujanika@gmail.com

କବିତାର ଜନ୍ମ । କବି ଓ କବିତା ଭିତରେ ଯେଉଁ ସଂପର୍କ ତାହା ସର୍ଜନାର ସଂପର୍କ, ନିର୍ମାଣ ନୁହେଁ । ଉପଯୋଗୀ ଉପକରଣ ସଂଗ୍ରହ କରି କାରିଗର ମାଟି କଣ୍ଢେଇଟିଏ ଗଢ଼ି ଦେଲା ପରି କବି, କବିତା ଗଢ଼େ ନାହିଁ । ଉପକରଣ ସଜିଲ କରି ଚତୁରତାର ସହ ତାକୁ ଖଂଜି ପାରିଲେ ତହିଁରୁ ହୁଏତ ନିର୍ମାଣର କାରିଗରି ଫୁଟି ଦିଶିବ, ମାତ୍ର ସେଇପରି ଶବ୍ଦ, ଅର୍ଥ, ଭାବ, ଛନ୍ଦ ଇତ୍ୟାଦି ବୁଛିବିଚାରି ଗୁନ୍ଥିଦେଲେ, କବିତା-ମୂର୍ତ୍ତିଟିଏ ଆଖି ଆଗରେ ଉଭା ହୋଇଯିବ ନାହିଁ କିଂବା କବିର କବିତ୍ୱମୟ ରୂପ ସେଥିରୁ ବିକଶି ଦିଶିବ ନାହିଁ । କବିତା, ବାଙ୍‌ମୟ ନ ହେଲା ଯାଏ ସଜୀବତା ଚିହ୍ନାପଡ଼ିବ କେମିତି ? ବାଙ୍‌ମୟ ହେଲେ ତ ଯାଇ ସେ ମଣିଷ ପରି ହସିବ-ହସେଇବ, କାନ୍ଦିବ, କନ୍ଦେଇବ, ଆପଣା ମନର ମୂର୍ତ୍ତିଟିକୁ ଅପରର ପରାଣ ପ୍ରିୟ କରି ପାରିବ । କବି, ଯଦି ହୃଦୟର ନିର୍ଯ୍ୟାସ ଦେଇ, ମୁଗ୍ଧ ଅନୁରାଗରେ ଲାବଣ୍ୟମୟୀ କାବ୍ୟ-ଲଳନାକୁ ଲାଳିତ ପାଳିତ କରି ନଥାନ୍ତି, କବିଙ୍କ କବିତ୍ୱ ତେଜ (କବିତ୍ତ୍ୱ) ଯଦି ଯୋଗାରୂଢ଼ ମାନସାଭିସାରରୁ ଭ୍ରଷ୍ଟଚେତନା ହୋଇ ଫେରି ଆସିଥାଏ; ତେବେ ବାଙ୍‌ମୟ କାବ୍ୟ-ପ୍ରତିମାର ଆବିର୍ଭାବ ଘଟିବ କିପରି ? କବି-ଆତ୍ମାର ବାଙ୍‌ମୟ ଅକ୍ଷର-ପ୍ରତିମା ସିନା କବିତା ।

ଗୋଟିଏ ଆତ୍ମା ଅପର ଏକ ଆତ୍ମାର ଜନକ । ଉପନିଷଦର ଆତ୍ମା ବୈ ଜାୟତେ ସୂକ୍ତପରି କବି ଆତ୍ମା କାବ୍ୟ-ପୁରୁଷର ମୂର୍ତ୍ତି । ପ୍ରକୃତି ଜଠରରେ ସୃଷ୍ଟିର ବୀଜ ଅଂକୁରିତ ହେଲା ପରି ପ୍ରକୃତି-ଭାବାପନ୍ନ କବି ଆତ୍ମାର ନିବୃତ୍ତ ଜଠରରୁ କବିତାରୂପୀ ବାଙ୍‌ମୟ ପ୍ରତିମାର ଧରାବତରଣ ଘଟିଥାଏ । କବି, ପ୍ରକୃତିସ୍ୱରୂପା, କୁହାଯାଏ ଯେ, ନାରୀଭାବାପନ୍ନ ନ ହେଲେ ସୃଷ୍ଟିର ବୀଜ ବହନ କରିବା ସମ୍ଭବ ନୁହେଁ । ସୃଷ୍ଟିର ବୀଜ ଘେନି ଅନ୍ତଃସତ୍ତ୍ୱା କବି, ସୃଷ୍ଟି ପ୍ରବଣ ହେବା ମୂଳରେ ପ୍ରଜନିତ୍ରୀ ପ୍ରକୃତି-ଗୁଣ ହିଁ ପ୍ରଚ୍ଛନ୍ନ । ତେବେ କାହା ସହିତ ସଂଗମ ନ ଘଟିଲେ ଅଥବା କେହି ପ୍ରଜନିତାଙ୍କ ସ୍ପର୍ଶ ନ ପାଇଲେ ସୃଷ୍ଟିର ବୀଜ ବପନ ଲାଗି ଅନୁକୂଳ ଅବସ୍ଥା ବା ଆସିବ କାହୁଁ ? ତେଣୁ କବି-ଆତ୍ମା ଲୋଡ଼େ କାବ୍ୟ-ପୁରୁଷର ସଂଗମ, ଏପରି ସଂଗମପରେ କବି-ଚିତ୍ତରେ ସୃଷ୍ଟିର ସ୍ପନ୍ଦନ ଜାଗେ । କାବ୍ୟ-ପୁରୁଷର ଆଚାନକ ସ୍ପର୍ଶରେ ସୃଷ୍ଟିର ଶୋଣିତ ପ୍ରବାହ କବିର ମରମଭେଦି ବହିଯାଏ । କବି, ସୃଷ୍ଟିର ବେଦନାରେ ଶିହରି ଉଠେ । ତଡ଼ିଦ୍ ବେଗ ତୁଲ୍ୟ ଉଲ୍ଲାସର ତରଙ୍ଗ ଖେଳିଯାଏ କବିର ମନ-ପ୍ରାଣର ଉଷର ଭୂଇଁରେ, କାଳିସୀ ଲାଗିଲା ପରି ସମ୍ମୋହନରେ ଭରିଯାଏ ତା'ର ଅନ୍ତର୍ନିଳୟ । କାବ୍ୟ-ପୁରୁଷ ଚିଆଇଁ ଦିଏ ଏଇ ସ୍ଫୂର୍ତ୍ତି ଓ ସ୍ପନ୍ଦନ ।

କାବ୍ୟ-ପୁରୁଷ ହିଁ କବିର କବିତ୍ୱ-ତେଜ; ପ୍ରେରଣା ସଂଜୀବନୀ ଓ ଜୀବନୀ-ଶକ୍ତି । ଏହା ଯାହାଙ୍କ ଦେହ-ମନ-ପ୍ରାଣକୁ ଛୁଏଁ ସେ କବି-ବାଣୀରେ ବାଙ୍‌ମୟ ହୋଇଉଠନ୍ତି ।

Digitized by srujanika@gmail.com

## କାବ୍ୟ-ପୁରୁଷ ମିଥ୍ :

ଆଚାର୍ଯ୍ୟ ରାଜଶେଖର (ନବମ/ଦଶମ ଶତାବ୍ଦୀ)ଙ୍କର 'କାବ୍ୟ-ମୀମାଂସା'ରୁ କାବ୍ୟ ପୁରୁଷଙ୍କ ଲୀଳାପ୍ରସଙ୍ଗରେ କଥିତ ଗୋଟିଏ ମିଥ୍‌ର ଦୃଷ୍ଟାନ୍ତ ମିଳେ । ଭାରତୀୟ କାବ୍ୟ-ଶାସ୍ତ୍ରରେ ଏହି ମିଥ୍‌ଟି ଖୁବ୍ ଜଣାଶୁଣା । ଉପାଖ୍ୟାନଟି ହେଉଛି ଏହିପରି- ଥରେ ଦେବୀ ସରସ୍ୱତୀ ପୁତ୍ର କାମନା କରି ହିମାଳୟରେ କଠୋର ତପସ୍ୟା ଆଚରଣ କଲେ । ତପସ୍ୟାରେ ପ୍ରସନ୍ନ ହୋଇ ବ୍ରହ୍ମା, ସରସ୍ୱତୀଙ୍କୁ ପୁତ୍ରବତୀ ହେବାର ସୌଭାଗ୍ୟଦାନ କରିଥିଲେ । ବ୍ରହ୍ମାଙ୍କ ପ୍ରସାଦରୁ ସରସ୍ୱତୀ ଯେଉଁ ପୁତ୍ର ସନ୍ତାନଟିକୁ ଜନ୍ମ ଦେଲେ, ସେ ହେଉଛନ୍ତି- 'କାବ୍ୟ ପୁରୁଷ' । କାବ୍ୟ-ପୁରୁଷ ଭୂମିଷ୍ଠ ହେବା ପରେ ପରେ ମାତାଙ୍କ ଚରଣ ବନ୍ଦନା କରି ଏକ ଛନ୍ଦୋବଦ୍ଧ ଶ୍ଳୋକ ଉଚ୍ଚାରଣ କଲେ– 'ହେ ମାତଃ ! ଏଇ ସମଗ୍ର ବାଙ୍‌ମୟ ଯାହାକି ଅର୍ଥର ଆକୃତି ଘେନି ବିରାଜିତ (ପ୍ରତିଭାତ), ସେଇ ବାଙ୍‌ମୟ ସ୍ୱରୂପ ମୁଁ, କାବ୍ୟ-ପୁରୁଷ ଆପଣଙ୍କ ଚରଣ ଯୁଗଳ ବନ୍ଦନା କରୁଛି ।'* ଭକ୍ତି ବିନମ୍ର ବନ୍ଦନାରେ ସନ୍ତୁଷ୍ଟ ହୋଇ ଦେବୀ ସରସ୍ୱତୀ ପୁତ୍ରକୁ ଆଶୀର୍ବାଦ କରି କହିଲେ; - 'ବତ୍ସ ! ତୁମେ ଛନ୍ଦୋବଦ୍ଧ ବାକ୍ୟର ରଚୟିତା; ମୁଁ ବିଶ୍ୱଭାଷାର ଜନନୀ ହେଲେ ମଧ ତୁମେ ମୋତେ ପରାସ୍ତ କରିଛ । ପୁତ୍ର ନିକଟରେ ମାତାର ପରାଜୟ ପ୍ରଶଂସନୀୟ ନିଶ୍ଚୟ । ଏବେ ଏଣିକି ତୁମ ପ୍ରେରଣାରେ ଯେଉଁ ଛନ୍ଦୋବଦ୍ଧ ବାଣୀର ସୃଷ୍ଟି ହେବ; ଶବ୍ଦ ଓ ଅର୍ଥ ହେବ ତାହାର ଶରୀର; ସଂସ୍କୃତ ହେବ ମୁଖ, ପ୍ରାକୃତ ବାହୁ, ଅପଭ୍ରଂଶ ଜଘନ ଦେଶ, ପୈଶାଚୀ ଚରଣ ଯୁଗଳ ଏବଂ ମିଶ୍ର ଭାଷା ହେବ ବକ୍ଷ ସ୍ଥଳ । ତୁମେ ହେବ ନିରପେକ୍ଷ ଓ ଉଦାର, ପ୍ରସନ୍ନ-ମଧୁର ଏବଂ ଓଜସ୍ୱୀ । ଭାବ ପ୍ରକାଶ କ୍ଷେତ୍ରରେ ସାର୍ଥକ ଓ କଳା ନିପୁଣ ବାକ୍ୟ ହେବ ତୁମର ବାଣୀ, ରସ ହେବ ତୁମର ଆତ୍ମା, ଛନ୍ଦ ରୋମରାଜି, ପ୍ରଶ୍ନୋତ୍ତର ସମସ୍ୟା ପୂରଣ ପ୍ରଭୃତି ହେବ ତୁମର କୌତୁକ ସଂଳାପ, ଅନୁପ୍ରାସ ଉପମା ପ୍ରଭୃତି ହେବ ତୁମର ଅଳଂକାର । ଦୁଷ୍ଟ ଓ ମୁର୍ଖ ଲୋକଙ୍କ କର୍ମରୁ ତୁମେ ନିବୃତ୍ତ ରହିବ, ଶିଶୁତୁଲ୍ୟ ବ୍ୟବହାର କରିବ ।'

ଏପରି ପରାମର୍ଶ ଦେଇ ଦେବୀ ସରସ୍ୱତୀ ଖଣ୍ଡେ ଶିଳା ତଳପରେ ଶିଶୁ ପୁତ୍ରକୁ ଶୁଆଇ ଦେଇ ଗଂଗାକୁ ସ୍ନାନ ନିମନ୍ତେ ଚାଲିଗଲେ । କିଛି କ୍ଷଣ ଉତ୍ତାରୁ କୁଶ-ସମିଧ ଅନ୍ୱେଷଣରେ ପ୍ରତ୍ୟାଗତ ମହାମୁନି ଶୁକ୍ରାଚାର୍ଯ୍ୟ ସେଠାରେ ଉପସ୍ଥିତ

---

* ଯଦେତଦ୍ ବାଙ୍‌ମୟଂ ବିଶ୍ୱମର୍ଥମୂର୍ତ୍ତ୍ୟା ବିବର୍ତ୍ତତେ
ସୋଽସ୍ମି କାବ୍ୟପୁମାନମ୍ବ ପାଦୌ ବନ୍ଦେୟତାବକୌ ॥
(ରାଜଶେଖର-କାବ୍ୟମୀମାଂସା-ତୃତୀୟ ଅଧାୟ-କାବ୍ୟ (ପୁରୁଷୋତ୍ପତ୍ତିଃ)

Digitized by srujanika@gmail.com

ହୁଅନ୍ତେ ଉତପ୍ତ ସୂର୍ଯ୍ୟ କିରଣରେ ପରିତ୍ୟକ୍ତ ଏହି ନିରାଶ୍ରୟ ଶିଶୁଟିକୁ ଦେଖି ନିଜ ଆଶ୍ରମକୁ ଘେନିଗଲେ । ଆଶ୍ରମରେ ଆଶ୍ୱସ୍ତ ଓ ପ୍ରକୃତିସ୍ଥ ହୋଇ ସରସ୍ୱତୀ-ପୁତ୍ର କାବ୍ୟପୁରୁଷ ଶୁକ୍ରାଚାର୍ଯ୍ୟଙ୍କ ଅନ୍ତରରେ ଛନ୍ଦୋମୟୀ ବାଣୀର ତରଙ୍ଗ ଖେଳାଇଦେଲେ । ଫଳରେ ଶୁକ୍ରାଚାର୍ଯ୍ୟଙ୍କ କଣ୍ଠରୁ ଅକସ୍ମାତ ପଦେ କବିତା ଉଚ୍ଚାରିତ ହେଲା–

'ଯା ଦୁଗ୍ଧାଽପି ନ ଦୁଗଧେବ କବି ଦୋଗ୍ଧୃଭିରନ୍ୱହମ୍
ହୃଦିନଃ ସନ୍ନିଧତ୍ତାଂ ସା ସୂକ୍ତିଧେନୁଃ ସରସ୍ୱତୀ ।'[୭]

(କବିରୂପୀ ଦୋହନକାରୀ ଗଣ ପ୍ରତିଦିନ ଯାହାଙ୍କୁ ଦୋହନ କଲେ ମଧ ଦୋହନ କରାଯାଉଛି ବୋଲି ମନେହୁଏନା, ଉତ୍କୃଷ୍ଟ ଉକ୍ତିମୟୀ ସେଇ ଧେନୁରୂପା ସରସ୍ୱତୀ ଆମ୍ଭମାନଙ୍କ ହୃଦୟରେ ଅବସ୍ଥାନ କରନ୍ତୁ । ସେଇ ଦିନଠାରୁ ଶୁକ୍ରାଚାର୍ଯ୍ୟ ହେଲେ କବି । ସ୍ନାନାନ୍ତେ ସରସ୍ୱତୀ ଫେରି ଆସି ଯଥା ସ୍ଥାନରେ ପୁତ୍ରକୁ ନ ଦେଖି ବ୍ୟସ୍ତ-ବ୍ୟାକୁଳ ହେଉଛନ୍ତି, ଘଟଣାକ୍ରମେ ବାଲ୍ମୀକି ଆସି ସେଠି ଉପସ୍ଥିତ ହେଲେ । ସେ ଦେବୀ ସରସ୍ୱତୀଙ୍କୁ ପୁତ୍ରର ସଂବାଦ ଦେଇ ଶୁକ୍ରାଚାର୍ଯ୍ୟଙ୍କ ଆଶ୍ରମ ଦେଖାଇ ଦେଲେ । ଫଳସ୍ୱରୂପ ବାଲ୍ମୀକି ଦେବୀଙ୍କ କୃପାରୁ ଛନ୍ଦୋବଦ୍ଧବାଣୀ ରଚନାର ଶକ୍ତି ପାଇଲେ ।

## କାବ୍ୟ ପୁରୁଷ ଓ ସାହିତ୍ୟବିଦ୍ୟାବଧୂ :

ଦିନେ ଜଣେ ବ୍ରହ୍ମର୍ଷି ଓ ଜଣେ ଦେବତାଙ୍କ ମଧରେ ବିବାଦ ଉପସ୍ଥିତ ହେବାରୁ ବ୍ରହ୍ମା ସରସ୍ୱତୀଙ୍କୁ ଏହି ବିବାଦର ମୀମାଂସା ନିମିତ୍ତ ମଧ୍ୟସ୍ଥ ନିଯୁକ୍ତ କରି ବ୍ରହ୍ମଲୋକ ଯିବା ଲାଗି ନିର୍ଦ୍ଦେଶ ଦେଲେ । ଏହି ସଂବାଦ ଜାଣି କାବ୍ୟ-ପୁରୁଷ, ମାତାଙ୍କର ଅନୁଗମନ ଲାଗି ଇଚ୍ଛା ବଳାଇଲେ । ମାତ୍ର ବ୍ରହ୍ମାଙ୍କ ଅନୁମତି ବିନା ବ୍ରହ୍ମଲୋକ ଗମନ ତ ନିଷିଦ୍ଧ । ସରସ୍ୱତୀ ବାରଣ କଲେ । କ୍ରୋଧ ଓ ଅଭିମାନରେ ବିଚଳିତ କାବ୍ୟ-ପୁରୁଷ ଏହି କାରଣରୁ ଗୃହ-ତ୍ୟାଗ କରିବାଲାଗି ସ୍ଥିର କଲେ । କାବ୍ୟ-ପୁରୁଷଙ୍କର ଗୃହତ୍ୟାଗ ଘଟଣା ଅନ୍ତରଂଗ ସଖା କାର୍ତ୍ତିକେୟ (କୁମାର)ଙ୍କୁ ଦୁଃଖରେ ଜାରିଦେଲା, ସେ ମାତା ଗୌରୀଙ୍କ ନିକଟରେ ସବୁବେଳେ ବିମର୍ଷଭାବ ପ୍ରକାଶ କଲେ, କ୍ରନ୍ଦନ-ରୋଳରେ ମାତାଙ୍କୁ ବିବ୍ରତ କରି ପକାଇଲେ । ପ୍ରବୋଧନାର ସକଳଚେଷ୍ଟା ବିଫଳ ହେଲା, ତେବେ କାବ୍ୟ-ପୁରୁଷଙ୍କୁ ଫେରାଇ ଆଣିବାର ଉପାୟ କଣ ? ଗୌରୀ ମନେ ମନେ ସ୍ଥିର କଲେ- ପ୍ରାଣୀମାତ୍ରେ ପ୍ରେମବନ୍ଧନରେ ବନ୍ଧା, ବଶୀକରଣର ଏକମାତ୍ର ଅବଲମ୍ବନ ହେଉଛି ନାରୀ । ଗୃହତ୍ୟାଗୀ କାବ୍ୟ-ପୁରୁଷଙ୍କୁ ବଶୀଭୂତ କରିବାଲାଗି ଗୌରୀ ମାନସ-କନ୍ୟା-ରତ୍ନଟିଏ ଜନ୍ମକଲେ, ସେ ହେଲେ 'ସାହିତ୍ୟ-

---

[୭] ରାଜଶେଖର- କାବ୍ୟ ମୀମାଂସା-ତୃତୀୟ ଅଧ୍ୟାୟ

Digitized by srujanika@gmail.com

ବିଦ୍ୟା-ବଧୂ' । ତାଙ୍କୁ ଗୌରୀ ଆଦେଶ ଦେଲେ 'ତୁମର ଧର୍ମପତି, ତୁମ ଆଗେ ଆଗେ କ୍ରୁଦ୍ଧ ହୋଇ କାହିଁ ଚାଲି ଯାଉଛନ୍ତି, ତୁମେ ତାଙ୍କୁ ଅନୁଗମନ କର ଓ ଫେରାଇ ଆଣ ।' ମାନସ-କନ୍ୟା ସାହିତ୍ୟ-ବିଦ୍ୟାଙ୍କୁ ଏପରି ନିର୍ଦ୍ଦେଶ ଦେବା ଉତ୍ତାରୁ ଗୌରୀ, କାବ୍ୟ ବିଦ୍ୟା-ସ୍ନାତକ ମୁନିମାନଙ୍କୁ ଚେତେଇ ଦେଇ କହିଥିଲେ, 'ଆପଣମାନେ ଏଇ ଦୁଇଜଣଙ୍କ ଚରିତ-ଗାଥା ଗାନ କରନ୍ତୁ, ତାହାହିଁ ଆପଣଙ୍କ ସୃଷ୍ଟିର ସାରସର୍ବସ୍ୱ ।'

ତଦୁତ୍ତାରୁ କାବ୍ୟ-ବିଦ୍ୟା-ସ୍ନାତକ ମୁନିଗଣ ଓ ସାହିତ୍ୟ ବିଦ୍ୟା-ବଧୂ, ମିଳିମିଶି କାବ୍ୟ-ପୁରୁଷଙ୍କ ଅନ୍ୱେଷଣରେ ବିଭିନ୍ନ ଦେଶ ପରିଭ୍ରମଣ କରିଛନ୍ତି । ସାହିତ୍ୟ-ବିଦ୍ୟା-ବଧୂ ଓ ମୁନିଗଣ ଯେତେବେଳେ ଯେଉଁ ବେଶଭୂଷା ଓ ଆଭରଣ ପରିଧାନ କରିଛନ୍ତି, ସେଇ ଦେଶର ନର-ନାରୀବୃନ୍ଦ ତାହାର ଅନୁକରଣ ହିଁ କରିଛନ୍ତି । ଅଙ୍ଗ, ବଙ୍ଗ, କଳିଙ୍ଗ, ପାଞ୍ଚାଳ, ଆବନ୍ତୀ, ଦାକ୍ଷିଣାତ୍ୟ ପ୍ରଭୃତି ଦେଶ ଭ୍ରମଣ କରି ଶେଷରେ କାମଦେବଙ୍କ ଲୀଳାଭୂମି ବିଦର୍ଭ ଦେଶର ବସ୍ଥଳ ନଗରୀରେ ସରସ୍ୱତୀ ପୁତ୍ର କାବ୍ୟ-ପୁରୁଷ ଏବଂ ଉମାକନ୍ୟା 'ସାହିତ୍ୟ-ବିଦ୍ୟା'ଙ୍କର ଗାନ୍ଧର୍ବରୀତିରେ ବିବାହ ସଂପନ୍ନ ହୋଇଛି । ବର-ବଧୂ, ପ୍ରମୋଦ ବିହାରରେ ବିଭିନ୍ନ ଦେଶ ପର୍ଯ୍ୟଟନ କରି, ହିମାଳୟରେ ଆସି ପହଂଚିଛନ୍ତି । ଏଠି ଗୌରୀ ଓ ସରସ୍ୱତୀ-ଉଭୟ କୁଟୁମ୍ବ ପ୍ରୀତିରେ ଅବସ୍ଥାନ କରୁଥାନ୍ତି । ବର-ବଧୂ ମାତାଙ୍କର ପାଦ ବନ୍ଦନା କରନ୍ତେ ଗୌରୀ ଓ ସରସ୍ୱତୀ ସେମାନଙ୍କୁ (କାବ୍ୟ-ପୁରୁଷ, ସାହିତ୍ୟବିଦ୍ୟା-ବଧୂ) ଆର୍ଶୀବାଦ କରି ବର ପ୍ରଦାନ କଲେ ଯେ, ସେମାନେ ଦୁହେଁ 'କବି-ଚିତ୍ତର ଅଧିବାସୀ' ହୋଇ ଆପଣା ଆପଣାର ଐଜ୍ଜ୍ୱଲ୍ୟ ବିକିରଣ କରିବେ । ମାତାଙ୍କ କୃପାରୁ ନବଦଂପତିଙ୍କର ବାସସ୍ଥାନ କବିଲୋକ ମଧ୍ୟ ସ୍ୱର୍ଗ-ଭୂମିର ମର୍ଯ୍ୟାଦା ପାଇଲା । କାବ୍ୟ-ମୟ ଶରୀର ଘେନି କବିଗଣ ମର୍ତ୍ତ୍ୟବାସୀ ହୋଇଥିଲେ ମଧ୍ୟ ସେମାନେ ଦିବ୍ୟଶରୀରରେ କଳ୍ପାନ୍ତ ପର୍ଯ୍ୟନ୍ତ ସେଠି ଆନନ୍ଦରେ ଦିନାତିପାତ କରୁଥିବେ ମୃତ୍ୟୁ ତାଙ୍କୁ ସ୍ପର୍ଶକରିବ ନାହିଁ, ଆନନ୍ଦ ଘନ ଉଲ୍ଲୋଳ ଉଚ୍ଛ୍ୱାସରେ ତାଙ୍କର ଜୀବନସ୍ରୋତ ବହିଯାଉଥିବ । କାବ୍ୟମୟ ଶରୀର ଅଗ୍ନିରେ ଦଗ୍ଧହେବ ନାହିଁକି ଜଳରେ ଭାସିଯିବ ନାହିଁ । ଶବ୍ଦ ତରଂଗର କୌଣସି ଅଂଶରେ ତାହା ଜୀଇଁ ରହିଥିବ ।

## କାବ୍ୟ-ପୁରୁଷ ଓ ମ୍ୟୁଜେସ୍ (Muses):

ରାଜଶେଖରଙ୍କ କଳ୍ପିତ ମିଥଟିରୁ ସୂଚନା ମିଳେ ଯେ, କବି-ଆତ୍ମାର ଅଧିଷ୍ଠାତା କାବ୍ୟ-ପୁରୁଷ ବିହୁନେ କବିତା-ସ୍ଫୂର୍ତ୍ତି ଏକ ବିଡ଼ମ୍ବନା । 'କବି-ଲୋକ'ର ସୁଷମା ଓ ସୃଷ୍ଟି ଅନ୍ତରାଳରେ କାବ୍ୟ-ପୁରୁଷ ଓ ସାହିତ୍ୟ ବିଦ୍ୟାବଧୂଙ୍କର ପ୍ରଚ୍ଛନ୍ନ ପ୍ରେରଣାଥିବା ଏକାନ୍ତ ସତ୍ୟ । ଏହାକୁ ଦୈବୀ ଶକ୍ତି ପ୍ରତି ଆସ୍ଥା ଓ ଆଶ୍ରୟର ଏକ ସ୍ୱୀକୃତି ବୋଲି କହି ଯୁକ୍ତିନିଷ୍ଠମନ ହୁଏତ ନାପସନ୍ଦ କରିପାରେ । କିଂତୁ କାବ୍ୟ-ତତ୍ତ୍ୱ ଚର୍ଚ୍ଚାର

Digitized by srujanika@gmail.com

ପରଂପରାରେ ବିଶ୍ୱରେ ଯେତେ ମତବାଦର ଆଲୋଡ଼ନ ସୃଷ୍ଟି ହୋଇଛି, ସେଥିରେ ଊଣାଅଧିକେ ଏପରି ଏକ ଅଦୃଶ୍ୟ ଶକ୍ତିର ଅଧିକାରକୁ ସାହିତ୍ୟ, କଳା ପ୍ରଭୃତି ସୂକ୍ଷ୍ମ ବୃତ୍ତିର ସ୍ଫୁରଣର ହେତୁ ବୋଲି ନିର୍ଣ୍ଣୟ କରାଯାଇଛି । କବିଙ୍କର ଶ୍ରେଣୀ ବିଭାଜନବେଳେ ଏହି ମତକୁ ଆଧାରକରି ଆଲୋଚକମାନେ କୌଣସି ନା କୌଣସି ନିର୍ଦ୍ଧାରଣରେ ପହଂଚିଛନ୍ତି । ପାଶ୍ଚାତ୍ୟ ସାହିତ୍ୟତତ୍ତ୍ୱରୁ ଜଣାଯାଏ ସେମାନେ ମଧ୍ୟ ସମଧର୍ମୀ ଏକ ମିଥ୍‌ର କଳ୍ପନା କରିଛନ୍ତି ।

ପାଶ୍ଚାତ୍ୟ ଦେଶରେ କବିଶକ୍ତି ବା ବିଭିନ୍ନ କଳାବିଦ୍ୟା ଓ ଦାର୍ଶନିକ ଜିଜ୍ଞାସାର ପ୍ରେରଣାଦାୟୀ ଶକ୍ତି ରୂପେ ନଅଟି ଦେବୀପ୍ରତିମାଙ୍କ ଅଦୃଶ୍ୟ ସ୍ପର୍ଶକୁ ସ୍ୱୀକାର କରାଯାଇଛି । ସେମାନେ Muses ନାମରେ ପରିଚିତ ।* ମ୍ୟୁଜ୍ ବା କାବ୍ୟ-ପୁରୁଷ କିଂବା ଭାରତୀୟ ପୁରାଣ ଶାସ୍ତ୍ରରେ କଥିତ ଭାରତୀ (ବାଗ୍‌ଦେବୀ) ହେଉଛନ୍ତି ସକଳ ନାନ୍ଦନିକ ପ୍ରକାଶର ଅନୁପ୍ରେରକ । ତେଣୁ ଅସ୍ୱୀକାର କରିବା ଏତେ ସହଜ ନୁହେଁ ଯେ ବ୍ୟକ୍ତି ମାନସରେ କବିତ୍ୱ ଶକ୍ତିର ଅବତରଣ ବିନା କବି-ଅଧିକାର ଲାଭ କରିହେବ !

ଏହି କାବ୍ୟ-ପୁରୁଷ ବା କବିତ୍ୱ-ଶକ୍ତିକୁ କେହି କେହି ପ୍ରତିଭା ନାମରେ ମଧ୍ୟ ନାମିତ କରିଛନ୍ତି । ପ୍ରତିଭାର ନିର୍ମାତା କବି ନୁହେଁ । ପ୍ରତିଭାକୁ ସୃଜନୀ ଶକ୍ତିର ଅଂଶ ବୋଲି ଗ୍ରହଣ କରାଯାଉଥିଲା ବେଳେ ଏହା ମଧ୍ୟ ସ୍ୱୀକୃତ ହୋଇଥାଏ ଯେ ପ୍ରତିଭାର ଅବାରିତ ଉତ୍ସ ଯେଉଁଠି ଶୁଖିଯାଏ ସେଠି କବି ମୃତବତ୍ସା ତୁଲ୍ୟ ଆପଣାର ଜୀବନୀସତ୍ତା ହରାଇଥାଏ । ଏହାର ଅର୍ଥ ହେଲା, ନିରନ୍ତର ଉଦ୍ୟମ ଫଳରେ ପ୍ରତିଭାକୁ ଗୁଣ-ଡ଼ୋରିରେ ସାଇତି ରଖିବା ଏତେ ସହଜ ନୁହେଁ । ଏଥିପାଇଁ ପାଶ୍ଚାତ୍ୟ ସାହିତ୍ୟ-ତତ୍ତ୍ୱରେ କବିମାନଙ୍କର କୁଳବିଚାର ପ୍ରସଙ୍ଗରେ କେତୋଟି ପ୍ରସ୍ତାବ ଉପସ୍ଥାପିତ କରାଯାଇଛି । କୁହାଯାଇଛି- ଯେଉଁ କବିଙ୍କୁ ‘ସ୍ୱଭାବ କବି’ରେ ପରିଣତ କରେ, ଯାହା ପ୍ରକାଶର ଆଲୋକ ଦେଖିବା ପାଇଁ କୌଣସି ପ୍ରଯତ୍ନର ସହାୟତା ଲୋଡ଼େ ନାହିଁ, ଯାହାର ଉଦୟନ ଓ ଉତ୍ତରଣ ଆକାଶ ପକ୍ଷୀ ତୁଲ୍ୟ ସ୍ୱେଚ୍ଛାବିହାରୀ ହୋଇଥାଏ, କୌଣସି କୌଣସି ପ୍ରତିବନ୍ଧକ ଯାହାର ସ୍ରୋତମୁଖକୁ ରୋଧକରିପାରେ ନାହିଁ; ସେହି ଶକ୍ତି କବିର ବ୍ୟକ୍ତିଗତ ଆୟତ୍ତାଧୀନ ନୁହେଁ । ଏହା ଯାହାଙ୍କ ଚିତ୍ତରେ ଅବତରଣ

---

* Muses :Calliope- (epic/heroic poetry), Clio- (History) Erato- (Love poetry, hyms), Euterpe- (Tragedy, Feunte-playing, Lyric poetry), Melpomene (tragody, Lyr-playing), Polymnia or Polyhymnia- (hymns religious dancing) terpsichore- (Choral dancing and singing), Thalia- (Comed), Urania- (astronomy- cosmological poetry.) ନଅଟି ମ୍ୟୁଜଙ୍କୁ ଏହିପରି ବିଭିନ୍ନ ବିଦ୍ୟାର ଅଧିଷ୍ଠାତ୍ରୀ ରୂପେ ଗ୍ରହଣ କରାଯାଇଛି ।

Digitized by srujanika@gmail.com

କରେ ସେ ପ୍ରତ୍ୟେକ ମୁହୂର୍ତ୍ତଲାଗି କବିତାର ସ୍ଫୁଲିଙ୍ଗ ଓ ଉଲ୍ଲାସ ଅନୁଭବ କରୁଥାନ୍ତି । ଏମାନଙ୍କୁ Natural Genious ବା ଆଦି କବି ବୋଲି ଆଖ୍ୟାୟିତ କରାଯାଇଥାଏ । ଏମାନେ ହେଉଛନ୍ତି ସେହିମାନବ କୁଳର ସନ୍ତାନ ଯେଉଁମାନେ କି ଆପଣାର ସହଜାତ ଗୁଣ ଯୋଗୁଁ କୌଣସି କଳା-କୌଶଳ ଓ ଜ୍ଞାନ-ଗାରିମାର ଅପେକ୍ଷା ନରଖି ଯେଉଁ ଗ୍ରନ୍ଥ ରଚନା କରିଯା'ନ୍ତି ତାହା ସମକାଳୀନ ପୃଥିବୀକୁ ଓ ଅନନ୍ତ କାଳର ଦିଗବଳୟକୁ ବିସ୍ମୟ ବିଭୋରତାର ଅରୁଣ ଅନୁରାଗରେ ଆରକ୍ତ କରି ରଖିଥାଏ । କାଳିଦାସ, ସାରଳାଦାସ, ଭୀମଭୋଇ, ହୋମର, ସେକ୍ସପିୟର ପ୍ରଭୃତି ହେଉଛନ୍ତି ଏହି କୋଟୀର କବି ।

ସାରଳା ଦାସଙ୍କୁ ଆଦିକବି କୁହାଯାଏ; ତାର ଏକମାତ୍ର କାରଣ ନୁହେଁ ଯେ ସେ ଓଡ଼ିଆ ଭାଷା ଓ ସାହିତ୍ୟର ଆଦ୍ୟ ସୂତ୍ରଧର । ଏହା ଇତିହାସ ଦୃଷ୍ଟିରୁ ସତ୍ୟ ହୋଇପାରେ କିଂତୁ ନନ୍ଦନ ତତ୍ତ୍ୱ ଦୃଷ୍ଟିରୁ ବିଚାରକଲେ ସାରଳା ଦାସ ଆଦିକବି (Natural Genius) । କାରଣ ତାଙ୍କ ଠାରେ କବିତ୍ୱ-ଶକ୍ତିର ଅନାହତ ସ୍ପନ୍ଦନ ଉଜ୍ଜୀବିତ ହୋଇରହିଥିଲା । ସ୍ୱତଃସ୍ଫୂର୍ତ୍ତିର ଆବେଗରେ ତାଙ୍କ ଲେଖନୀ, ପଙ୍‌କ୍ତି ପରେ ପଙ୍‌କ୍ତି ଲେଖିଯାଉଥିଲା । କୌଣସି ଏକ ସଂକୀର୍ଣ୍ଣ ଭୌଗୋଳିକ ସୀମାଭିତରେ ଥାଇ, ଛୋଟିଆ ପଲ୍ଲୀର ମହକୁମା ଭିତରେ ବସବାସ କରି ସୁଦ୍ଧା ସେ ବିସ୍ତୃତଭୂମାର ଦିଗବଳୟକୁ ଆପଣା ଚିନ୍ତାର ଗୋଲକ ଭିତରକୁ ଟାଣି ଆଣି ପାରୁଥିଲେ; ଜୀବନର ବୈଚିତ୍ର୍ୟମୟ ଆଲେଖ୍ୟ ଏବଂ ଅନୁଭୂତିର ବିପୁଳ ଐଶ୍ୱର୍ଯ୍ୟ ଆପଣାର ନିଭୃତ ମନର ଚୌହଦୀ ଭିତରେ ଫୁଟାଇ ପାରୁଥିଲେ । ତାଙ୍କ ମାନସର ବ୍ୟାପ୍ତି ଓ ଦୃଷ୍ଟିର ପ୍ରଶସ୍ତ-ତାକୁ ଲକ୍ଷ୍ୟକଲେ ସ୍ୱଭାବତଃ ବିଶ୍ୱାସ ଜନ୍ମେ ଯେ ସେ ଯଥାର୍ଥତଃ ଆଦିକବି ଗୁଣରେ ଗୁଣୀ । ସେକ୍ସପିୟରଙ୍କୁ ବିସ୍ତୃତ ମନା (Myriad minded) କହିବା ମୂଳରେ ଯେଉଁ ଯୁକ୍ତି ନିହିତ ସାରଳା ଦାସଙ୍କଠାରେ ମଧ୍ୟ ସେଇ ବିଶେଷଣ ପ୍ରଯୁଜ୍ୟ ।

ତେବେ ପ୍ରଶ୍ନ ହେଉଛି; ଆଦିକବିଙ୍କ ଶକ୍ତି ଯଦି ଦୈବୀ ପ୍ରେରଣା ବଶ ହେଲା କିଂବା କାବ୍ୟ-ପୁରୁଷର ସ୍ଥାୟୀ ସାନ୍ନିଧ୍ୟକୁ ଭୋଗକଲା ତା'ହେଲେ ଯେଉଁମାନେ ସାଧକ କବି (Made poets) ସେମାନଙ୍କ କବି ଶକ୍ତିର ଚରିତ୍ର କଣ ? ଏ କ୍ଷେତ୍ରରେ ଏତିକି ବିଶ୍ୱାସଯୋଗ୍ୟ ଯେ, ଏମାନଙ୍କର କାବ୍ୟସ୍ଫୂର୍ତ୍ତି ବ୍ୟୁତ୍ପତ୍ତି ଉପରେ ଯେତେ ନିର୍ଭରଶୀଳ ସ୍ୱଭାବ ସ୍ଫୂର୍ତ୍ତି ଉପରେ ସେତେନୁହେଁ । ବ୍ୟୁତ୍ପତ୍ତି ବଳରେ କବି ହେବା ଯଦି ଅସମ୍ଭବ ନୁହେଁ, ତା'ହେଲେ କାବ୍ୟ-ପୁରୁଷର ସାନ୍ନିଧ୍ୟ ଲାଗି ଆଶା କରିବା କାହିଁକି ? ଏଇ ସମସ୍ୟାର ଉତ୍ତରରେ ଏତିକି କୁହାଯାଇପାରେ ଯେ– ବ୍ୟୁତ୍ପତ୍ତିଥିବ ଏବଂ କବିତ୍ୱ ତେଜ ବିଦ୍ୟୁତ ଝଲକ ପରି ଆସୁଥିବ ପୁଣି ଅନ୍ତର୍ହିତ ହୋଇଯାଉଥିବ, ତେବେ ଯାଇ ସେହି ବ୍ୟକ୍ତି କବି ଗୁଣରେ ଗୁଣୀ ହୋଇପାରିବ । ଯେଉଁ ମୁହୂର୍ତ୍ତ

Digitized by srujanika@gmail.com

ଗର୍ଭରେ ଥାଇ ସେ କବିତ୍ୱ ତେଜର ସ୍ଫୁଲିଙ୍ଗ ଶିଖା ଅଙ୍ଗେ ଅଙ୍ଗେ ଅନୁଭବ କରୁଥିବ ସେହି ମୁହୂର୍ତ୍ତ ଭିତରେ ସେ ତା'ର ବ୍ୟୁତ୍ପତ୍ତିକି ବିନିଯୋଗ କରି ସଯତ୍ନ-ବର୍ଦ୍ଧିତ ଏକ କାବ୍ୟ-ପ୍ରତିମା ସୃଷ୍ଟି କରିପାରିବ । ଏହି କବିର କାବ୍ୟ ସୃଷ୍ଟିରେ କୃତ୍ରିମ ଉପବନର ସୁଷମା ଫୁଟିପାରେ ମାତ୍ର ସ୍ୱଭାବ-କବିର କାବ୍ୟ-ସମ୍ଭାର ହେଉଛି ଅଯତ୍ନ ବର୍ଦ୍ଧିତ ପ୍ରାକୃତିକ ଶୋଭାର ହିରଣ୍ମୟ ପସରା । କିଂତୁ ଏହା ସତ ଯେ ଉଭୟ କବିଙ୍କ ପକ୍ଷରେ ପ୍ରେରଣା ଓ ସାଧନାର ଭୂମିକା କେତେ ଉପଯୋଗୀ ତାହାକୁ ସ୍ଥୂଳ ଆକାର ଦେଇ ଦେଖାଇ ହେବ ନାହିଁ । କବିତା ଓ କବିତ୍ୱର ଆତ୍ମପ୍ରକାଶ ପାଇଁ ପ୍ରେରଣା ଓ ସାଧନାର ହେତୁବୀଜ ଏଇ 'କାବ୍ୟ-ପୁରୁଷ'ର ସାନ୍ନିଧ୍ୟ ହିଁ ଏଥିଲାଗି ଏକାନ୍ତ ଅପରିହାର୍ଯ୍ୟ ।



---

(ଝଙ୍କାର ୩୪ ବର୍ଷ ତୃତୀୟ ସଂଖ୍ୟା-୧୯୮୨)

Digitized by srujanika@gmail.com

# କବିତା କାହିଁକି ?

କବିତା କାହିଁକି, ଏକ ପୁରାତନ ପ୍ରଶ୍ନ; ଇତିହାସରୁ ଏହାର ଉତ୍ସ ଓ ପରିସୀମା ସନ୍ଧାନ କରାଯାଇପାରେ । ପ୍ରଶ୍ନଟି ସହ ଆଳାପ କଲାବେଳେ ଆମେ ପରିପ୍ରଶ୍ନ ମଧ୍ୟ ପଚାରିପାରୁଁ– କେଉଁ କାରଣରୁ ଏପରି ପ୍ରଶ୍ନର ଉଦ୍ଭବ ହେଲା ? ଉପଯୋଗବାଦୀ ଚିନ୍ତାର ପ୍ରବେଶ ହେତୁ ମଣିଷ ମନରେ ଏଇ ପ୍ରଶ୍ନ ଉଠିଥିବା ସମ୍ଭବ । ଯଦି ଉପଯୋଗିତାର କଥା ଉଠୁଛି, ତେବେ ଧାରଣା ଆସୁଛି, କେଉଁଥିପାଇଁ ଏହା ଉପଯୋଗୀ ? ସମାଜ ପାଇଁ, ରାଷ୍ଟ୍ର ପାଇଁ, ମଣିଷର ଅନ୍ତରାଜ୍ୟ ପାଇଁ, ସଭ୍ୟତା ଓ ସଂସ୍କୃତିର ବିକାଶ ପାଇଁ ନା ମାନବୀୟ ମନନର ବିଳାସ ପାଇଁ ଇତ୍ୟାଦି ନାନା କଥା । ତେବେ ଏଠି ଜଣାପଡୁଛି, ମୂଳ ପ୍ରଶ୍ନଟି ସହିତ ଅନେକ ଚିନ୍ତା ଓ ଜ୍ଞାନର ଦିଗ ସଂପୃକ୍ତ । ଏଥିସହିତ ସମାଜନୀତିର ସଂପର୍କ ଅଛି, ସଂପର୍କ ଅଛି ରାଷ୍ଟ୍ରନୀତିର, ସାଂସ୍କୃତିକ ଜିଜ୍ଞାସାର, ନୈତିକ ଅଭିପ୍ରାୟର, ମନସ୍ତତ୍ତ୍ୱ ଓ ନୃତତ୍ତ୍ୱର ଏବଂ ସର୍ବୋପରି ନନ୍ଦନ-ବିଦ୍ୟାର ।

ପ୍ରଥମତଃ ଆମେ ଯଦି ସ୍ୱୀକାର କରୁଁ ମଣିଷର ଆଦିମ ଉଚ୍ଚାରଣ ଏଇ କବିତା, ସ୍ୱରରୁ ଜନ୍ମ ନେଇ ଶ୍ରୁତିରେ ବ୍ୟାପିଥିଲା ଓ ଆହ୍ଲାଦ ଭିତରେ ବଂଚିଥିଲା, ତେବେ ସେଇଠି ମଧ୍ୟ ପ୍ରଶ୍ନ ଉଠେ, କାହିଁକି ? କାହିଁକି ଏହା ସ୍ୱରରୁ ଶ୍ରୁତିକି ଗଲା, କି ପ୍ରୟୋଜନ ତାଡ଼ନାରେ ଏପରି ହେଲା ? ଏହା ସପକ୍ଷରେ ଏକ ବିଦଗ୍ଧ ଉତ୍ତର ମିଳିବ । ମଣିଷର ଚେତନା ଓ କଳ୍ପନାର ପ୍ରକାଶ ପାଇଁ ଏପରି ହେଲା । ଆତ୍ମ-ସଂଳାପ ଅପେକ୍ଷା ସମୂହ-ସଂଳାପ ପାଇଁ ମଣିଷର ଆକର୍ଷଣ ଏମିତି ହେଲା ।

ସୁତରାଂ ସମଷ୍ଟି ସହ କବିର ସଂଳାପ ସମୂହ ସଂଳାପର ଫଳ କ'ଣ ? ଫଳ ଓଲଟା ଜାଣି ପ୍ଲେଟୋ (୪୨୭-୩୪୭ ଖ୍ରୀ:ପୂ:) ଆପଣା 'ରିପବ୍ଲିକ୍'ରୁ କବିତାକୁ ପ୍ରତ୍ୟାଖ୍ୟାନ କରିଥିଲେ । ବୃଦ୍ଧ ଟଲଷ୍ଟୟ (୧୯୨୮-୧୯୧୦) ଦୀର୍ଘକାଳ ସାହିତ୍ୟ

Digitized by srujanika@gmail.com

ସମୁଦ୍ରରେ ଅବଗାହି ଶେଷକୁ War is Art (୧୯୯୮) ପ୍ରସଙ୍ଗରେ କଳା-କର୍ମର ଉପଯୋଗିତା ପ୍ରତି ସନ୍ଦିହାନ ହୋଇପଡ଼ିଥିଲେ । କେବଳ ଈଶ୍ୱର-ପ୍ରଶସ୍ତି ଓ ବୀରସ୍ତୁତିମୂଳକ କବିତା, ଯାହାଦେଶପ୍ରେମ, ନୀତିଜ୍ଞାନ ଓ ଈଶ୍ୱର-ବିଶ୍ୱାସ ଜାଗରଣରେ ସହାୟକ, ତାକୁ ପ୍ଲେଟୋ ଲାଇସେନ୍‌ସ ଦେଇଥିଲେ । ସନ୍ଥ ଅଗଷ୍ଟିନ୍ (୩୫୪-୪୩୦ ଖ୍ରୀ:) ଅନୁଭବ କରିଥିଲେ- କବିତା ଦେଶ ପାଇଁ ଅନୁପଯୋଗୀ; ଏହା 'ଭ୍ରାନ୍ତି ମଦିରାର ଏକ ପାତ୍ର' ତୁଲ୍ୟ । ପ୍ଲେଟୋଙ୍କର ଶିଷ୍ୟ ଆରିଷ୍ଟଟଲ୍ (୩୮୪-୩୨୨ ଖ୍ରୀ:ପୂ:) ବିତର୍କରେ ନ ପଶି ଶିଳ୍ପର ମୂଳ ମର୍ମଟିକୁ ଖୋଜିଥିଲେ । Mimesis, Catharsis ଇତ୍ୟାଦି ତାଙ୍କର ମୁଖ୍ୟ ପ୍ରତିପାଦ୍ୟ । ଏଇ କାଥାରସିସ୍ ହେଉଛି କବିତାର ଶ୍ରେଷ୍ଠ ଦେୟ ମାନବ-ସମାଜକୁ । କାଥାରସିସ୍ ବା ଭାବମୋକ୍ଷ ଏବଂ ଆବେଗର ଉତ୍ତରଣରୁ ଯେଉଁ ଶୁଚିବୋଧ ଓ ଆହ୍ଲାଦ-ସଂଚାର ସଂଭବ ତାହା ଯଦି ଏଇ କବିତା ଦାନ କରିପାରେ, ତେବେ ତାହା କ'ଣ ମାନବ-ସମାଜ ପକ୍ଷରେ କଲ୍ୟାଣକର ନୁହେଁ ?

କିନ୍ତୁ ପ୍ରଶ୍ନ ହେଉଛି, ପବିତ୍ରତାକାର ସ୍ୱାଦ ଲାଗି ଅନୁରାଗ କ'ଣ ଜୀବନର ଏକ ଆକର୍ଷଣ ? ଆମ ଅନୁଭୂତିରେ ପବିତ୍ରତାବୋଧର ସ୍ୱର୍ଣ୍ଣ-ମଣି ମିଶିଗଲେ କ'ଣ ତହିଁରୁ ପୂର୍ଣ୍ଣାଙ୍ଗ ମଣିଷକୁ ଦେଖିହେବ ? ସବୁ କ୍ଷେତ୍ରରେ ଓ ସବୁ ସ୍ଥଳରେ ମଣିଷ ବା କାହିଁକି ପବିତ୍ରତାର ଅଭିମୁଖୀ ହେବ ? ଏହି କାରଣରୁ କବିତା ବା କାହିଁକି ସର୍ବଦା ପବିତ୍ରତାର ସ୍ୱର ଉଚ୍ଚାରଣ କରିବ ? ଇତ୍ୟାଦି ନାନା ପ୍ରଶ୍ନ । ବେଦ, ବାଇବେଲ, ଗୀତା-ଭାଗବତ, କୋରାନ୍ ଅପେକ୍ଷା ମଣିଷ ପାଇଁ ଓମାର-ଖୈୟାମ୍‌ଙ୍କ ରୁବାୟତ୍, କାଳିଦାସଙ୍କ ଋତୁସଂହାର, ସେକ୍‌ସପିୟରଙ୍କ ସନେଟ୍, ରବୀନ୍ଦ୍ରନାଥଙ୍କ ଗୀତାଞ୍ଜଳି, ମାନସିଂହଙ୍କ 'ଧୂପ' କ'ଣ ଏକ ଅଦରକାରୀ ବସ୍ତୁ ? ଏଥିରୁ କିଛି ପବିତ୍ରତାବୋଧ, କିଛି ସୌନ୍ଦର୍ଯ୍ୟାନୁଭୂତି, କିମ୍ବା ଉଭୟର ମିଶ୍ରଭୋଜ୍ୟ ଯଦି ସହୃଦୟକୁ ମିଳୁଥାଏ ଏବଂ ଫଳସ୍ୱରୂପ ଚିତ୍ତଶୁଦ୍ଧି ସହିତେ ଆନନ୍ଦର ମୁଗ୍ଧ ସୌରଭରେ ସେ ଯଦି ଅଭିଷିକ୍ତ ହେଉଥାଏ, ତେବେ ତାହା କ'ଣ ମଣିଷ ଲାଗି ଜୀବନଚର୍ଯ୍ୟାର ପାଥେୟ ହେବ ନାହିଁ ? ପୁଣି ସେହି ପ୍ରଶ୍ନ- କବିତା କାହିଁକି ? ପବିତ୍ରତାର ଅବବୋଧ ପାଇଁ ଯେ ଏକାନ୍ତ ଭାବେ କବିତାର ଉପାସନା ଲୋଡ଼ା, ତାହା ନିର୍ବିବାଦ୍ୟ ନୁହେଁ ।

କାବ୍ୟ-ନାଟକରୁ ଚତୁର୍ବର୍ଗ ଫଳପ୍ରାପ୍ତି ସମେତ ହିତୋପଦେଶ, ବିଶ୍ରାନ୍ତି, ବୁଦ୍ଧି-ବିକାଶ, ଲୋକଶିକ୍ଷା ଓ ବିନୋଦନ ସମ୍ଭବ ହୋଇଥାଏ ବୋଲି ପ୍ରାଚ୍ୟ ଆଳଙ୍କାରିକମାନେ ଅନୁଭବ କରିଛନ୍ତି । ''ସର୍ବୋପଦେଶ ଜନନଂ ନାଟ୍ୟମେତଦ୍ ଭବିଷ୍ୟତି, ଦୁଃଖାର୍ତ୍ତାନାଂ ଶ୍ରମାର୍ତ୍ତାନାଂ, ଶୋକାର୍ତ୍ତାନାଂ ତପସ୍ୱିନାମ୍, ବିଶ୍ରାମ ଜନନ ଲୋକେ ନାଟ୍ୟମେତଦ ଭବିଷ୍ୟତି-'' ଇତ୍ୟାଦି ଯୁକ୍ତି ମୂଳରେ ଆଚାର୍ଯ୍ୟ ଭରତଙ୍କର (ଖ୍ରୀ:ପୂ: ୪ର୍ଥ ଶତକ

Digitized by srujanika@gmail.com

ପୂର୍ବବର୍ତ୍ତୀ) ଏକପ୍ରକାର ନୀତିବାଦୀ ଓ ହିତବାଦୀ ଅଭିପ୍ରାୟ ନିହିତ । ଏହି ଅଭିପ୍ରାୟ ଉଣା ଅଧିକେ ପ୍ରାଚୀନ ଭାରତୀୟ ଆଳଂକାରିକ ମାନଙ୍କଠାରେ ପ୍ରାୟ ପରିଲକ୍ଷିତ । ଯଶଃ, ଅର୍ଥପ୍ରାପ୍ତି, ଅମଙ୍ଗଳନାଶ, ବ୍ୟାବହାର-ଜ୍ଞାନ ପ୍ରସାର, କାନ୍ତା-ସମ୍ମିତ ଉପଦେଶ ଦାନ, ରମଣୀୟ ଆହ୍ଲାଦଭୋଗ, ଅଲୌକିକ ରସାନନ୍ଦ ଆସ୍ୱାଦନ ଏବଂ ଅନ୍ତଃଚମତ୍କାର-ବିଧାନ ଜନିତ ପ୍ରୟୋଜନବୋଧ ଭିତରେ କବିତା କାହିଁକିର ଉତ୍ତର ସେମାନେ ପାଇଥିଲେ ।

କବି ସାରଳା ଦାସ (୧୫ଶ ଶତାବ୍ଦୀ), ଲୋକହିତ ପାଇଁ, କାବ୍ୟ ରଚନା କରିଥିବା ଘୋଷଣା କରିଥିଲେ । ମଧ୍ୟଯୁଗରେ କାବ୍ୟତତ୍ତ୍ୱରେ ଭଞ୍ଜ, ଦୀନକୃଷ୍ଣ ପ୍ରଭୃତି କବିମାନଙ୍କ ତୁଣ୍ଡରୁ କବିତା କାହିଁକିର ଉତ୍ତର କ୍ରମରେ ବିନୋଦନ ଓ ଲୋକହିତ ସାଧନର ଅଭିପ୍ରାୟ ପ୍ରକଟିତ ହୋଇଥିଲା । 'ମଧୁକୋଷ କୀର୍ତ୍ତି' ତୁଲ୍ୟ କବିତାକୁ ଘେନିବା ପାଇଁ ବୈଷ୍ଣବ କବି ଅଭିମନ୍ୟୁ ସାମନ୍ତସିଂହାର ନିବେଦନ କଲାବେଳେ କବିତା କାହିଁକିର ଉତ୍ତର ସୂଚାଇଥିଲେ– ଆଧ୍ୟାତ୍ମିକ ଅଭିପ୍ରାୟ ସାଧନର ହେତୁ ରୂପେ । ତାଙ୍କ ପାଇଁ 'କବିତା କାହିଁକି'ର ଉତ୍ତର ହେଉଛି– 'ସ୍ୱାଦ ଆସ୍ୱାଦନ କଲେ ଚିତ୍ତ ମଗ୍ନ ହେବ / ସଂସାର ସାଗର ବୁଡ଼ା ବାଧ ବ୍ୟାଧି ଯିବ ।' ସଂସାର ସାଗରରୁ ମୁକ୍ତି ପାଇଁ କବିତା ଏକ ଆଶ୍ରୟ । 'କବି ହୋଇ କରୁଥିବ ନିର୍ମଳ କବିତ୍ୱ'– କବି ଦୀନକୃଷ୍ଣଙ୍କର ଏତଦ୍‌ଧର୍ମୀ ଉଚ୍ଚାରଣ ମୂଳରେ, ମୁକ୍ତି ଲାଗି କବିତା ଏକ ଅବଲମ୍ବନ, ଏଇ ଧାରଣା ହିଁ କାର୍ଯ୍ୟ କରୁଥିଲା । ଅତଏବ ମନେହୁଏ ମଧ୍ୟଯୁଗର ବୈଷ୍ଣବ କବିଗଣ, ଆଧ୍ୟାତ୍ମିକ ଫଳଭୋଗର ସାଧନ ରୂପେ କବିତାକୁ ଗ୍ରହଣ କରିଥିଲେ ।

ଆଧୁନିକ କବି-ଉବାଚରେ କବିତା କାହିଁକିର କୈଫିୟତ୍ ନାନା ସ୍ୱରରେ ଉଚ୍ଚାରିତ । କେତୋଟି ଦୃଷ୍ଟାନ୍ତରୁ ତା'ର ପରିଚୟ ଆମେ ପାଇପାରିବା । କବି ମାନସିଂହ (୧୯୦୫-୧୯୭୩) କହନ୍ତି, 'ଆମେ ସେ ଦଳର ଲେଖକ, କବି/ ଚିତ୍ରୀ, ଶିଳ୍ପୀ, ଗାୟକ ଜାତି / ମାନବ-ମନର ମରମ କଥା / ଆମରି ହାତରେ ରୂପ ପାଆନ୍ତି / ବଣୁଆ ମଣିଷ ଆମରି ଯୋଗୁଁ / ଚିକଣା ଆଜିରେ ବସନେ, ବାସେ / ସୁକୁମାର ତା'ର ଜୀବନ ଭୋଗ / କହଇ କଥା ସେ ଲଳିତ ଭାଷେ ।' (କଳା ସେବକ) ଆଉ ଏକ ପ୍ରକାରେ କବିତାର ପକ୍ଷ ସମର୍ଥନ କରି ମାନସିଂହ ଲେଖିଛନ୍ତି– ''ତମାନ୍ଧ ମାନବ ଯେବେ କ୍ଷୁଦ୍ର ସ୍ୱାର୍ଥ ପାଇଁ / ଚଳାଇବେ ପରସ୍ପର ଗଳେ ତରବାର / କବି ମୁଁ ମୋ ବୀଣା ତାରେ ତବ ନାମ ଗାଇ / ବିରୋଧିବି କିଣ୍ଟତରେ ପଶୁତ୍ୱ ପ୍ରସାରେ / ମାଗେ ନା ମୁଁ ନିଜ ମୁକ୍ତି, ସନ୍ତୋଷ, ବିଳାସ / ହେ କବି, କରାଅ ମୋତେ କବି ଜନ୍ମେ ଜନ୍ମେ / ଗୀତେ ଫୁଟାଇବି ସତ୍ୟ, ଶିବର ବିକାଶ / ଜଗାଇବି ଦେବାତରେ ମାନବ ମରମେ ।'' (କବି ଗୌରବ) । ଏଠି କବିତା କାହିଁକିର ଚିନ୍ତା

Digitized by srujanika@gmail.com

ସଂସ୍କୃତିର ଅଭିଜାତ ବିକାଶ ଓ ମଣିଷର ମହତ୍ତମ ଅର୍ନ୍ତଉନ୍ମୀଳନ କାରଣକୁ ପ୍ରତିପାଦନ କରୁଛି । କବି କୁଞ୍ଜବିହାରୀ ଦାଶ (୧୯୧୪) କବିତାର ଉପଯୋଗିତା ପ୍ରସଙ୍ଗ ଉଠାଇ କହିଛନ୍ତି– ''କବି, ବିଶ୍ୱରେ ଆଉ ଗୋଟିଏ ବିଶ୍ୱ ରଚନା କରେ-ଆନନ୍ଦର । ସେ ବିଶ୍ୱାମିତ୍ର; କିନ୍ତୁ ଶକ୍ତି ପ୍ରଦର୍ଶନ ଲାଗି ଉନ୍ମତ୍ତ ହୋଇ ସେ କିଛି କରେ ନାହିଁ । ସେ ବିଶ୍ୱର ମିତ୍ର; ସର୍ବଶ୍ରେଷ୍ଠ-କବିତା ବା କଳା, ଜୀବନ ଓ ଜୀବନ ମଧ୍ୟରେ ଥିବା ବିଭେଦକୁ ଦୂର କରେ । ବିଚ୍ଛିନ୍ନକୁ ସଂହତ କରେ, ଅନେକକୁ ଏକ କରେ । ତେଣୁ ଆଟମିକ୍ ଯୁଗରେ କବିତା ପାଠର ଉପଯୋଗିତା ଜଣା ହୋଇ ନାହିଁ କିମ୍ୱା ନାନା ପ୍ରଲୋଭନ ଓ ନୈରାଶ୍ୟ ମଧ୍ୟରେ ବି କବିମାନେ କବିତା ଲେଖା ଛାଡ଼ି ନାହାନ୍ତି ।' (କୁଞ୍ଜବିହାରୀ ସଂଚୟନ ୩ୟ- ୧୯୬୩-ମୁଖବନ୍ଧ) । କବି ସୀତାକାନ୍ତ ମହାପାତ୍ର (୧୯୩୭) 'ଚିତ୍ରନଦୀ' କବିତା ସଂକଳନ (୧୯୭୯)ରେ ସୂଚନାତ୍ମକ ଭଂଗୀରେ କବିତା କାହିଁକିର ଉତ୍ତର ଦେଇଛନ୍ତି ଏବଂ କହିଛନ୍ତି– "ପ୍ରିୟ ନଦୀ ! ଯୋଡ଼ିବାକୁ ମିଶେଇ ଦେବାକୁ ତୁମେ ଗୀତ ବୋଲ । ମୁଁ ବି ଗୀତ ବୋଲେ ସେଇଥି ପାଇଁ, ଦୁଃଖରେ, କ୍ଷୋଭରେ, ଶୋକରେ, ମୋହରେ, ଆନନ୍ଦରେ, କ୍ରୋଧରେ, ମାୟାରେ । କିନ୍ତୁ ଗୀତ ବୋଲେ, ଯୋଡ଼ିବାକୁ, ମିଳେଇ ଦେବାକୁ ।"

ଅତଏବ ଆମ କବିମାନଙ୍କ ଉକ୍ତିରୁ କବିତା କାହିଁକିର ଉତ୍ତର ଆମେ ଏଇ ଧାରାରେ ପ୍ରାୟ ପାଇପାରିବୁ । ଏଥିରୁ ଜଣାପଡୁଛି- କବିତା ମିଳେଇ ଦେଇପାରେ ମନକୁ ମନ ସିହତ, ସମୟକୁ ସମୟ ସହିତ, ଚିତ୍ରକୁ ଭାବ ସହିତ, ଆତ୍ମାକୁ ନୈରାତ୍ମା ସହିତ । ଚିତ୍ର ଓ ଭାବକୁ ଏକାକାର କରିପାରେ ଏଇ କବିତା । ମଣିଷର ଚେତନ ଓ ଅବଚେତନରେ ଏହା ଏକ ସ୍ଥାୟୀ ପ୍ରଲୋପ ବୋଳିଦେଇ ପାରେ । ସ୍ନାୟୁ ତଳେ ତଳେ ଏହା, ଜୀବକଣିକା ପରି ମଣିଷକୁ ମାନସିକ ଶକ୍ତି ଯୋଗାଇ ପାରେ । ସାରଳା ଦାସ, କେତେ ମାତ୍ରାରେ ଆମ ଅବଚେତନକୁ ଅଧିକାର କରିଛନ୍ତି କିମ୍ୱା ରବୀନ୍ଦ୍ରନାଥ ଠାକୁର (୧୮୬୧-୧୯୪୧) କେତେ ମାତ୍ରାରେ ଆମର ନିତ୍ୟ ପ୍ରେରଣାର ଉତ୍ସ ହୋଇ ଆମକୁ ଉଜ୍ଜୀବିତ କରିଛନ୍ତି, ତାହା ତାଙ୍କ କବିତାର ଧ୍ୱନି ଓ ପ୍ରତିଧ୍ୱନିରୁ ହିଁ ବୁଝିହେବ । ସାରଳା ଦାସଙ୍କ ପରିକଳ୍ପିତ ମିଥ୍, ଆମ ଅବଚେତନରେ ଏବେ ବି ସ୍ଥାୟୀ, ଆମ ଜୀବନଚର୍ଯ୍ୟାରେ ତାହା ମିଶିଯାଇଛି । ସଂସ୍କୃତିର ଅଙ୍ଗ ହୋଇଯାଇଛି । ଏଇ କାରଣରୁ ଆମେ କହିପାରିବା; କବିତା ତିଆରିଛି ଆମ ସଂସ୍କୃତିକି । ଆମ ଅନ୍ତର୍ଯାତ୍ରାର ସ୍ପନ୍ଦିତ ନିକ୍ୱଣ ହେଉଛି– ଏଇ କବିତା ।

କାଳ କାଳର ଅନୁଭୂତି ଠୁଳ ହୋଇ ରହିଛି କବିତାର ବାକ୍-ପ୍ରତିମା ଗର୍ଭରେ । ଏହାକୁ ଅନୁଭୂତିର ଫସିଲ୍ ଭାବି ପରିତ୍ୟାଗ କରିବା ଭୁଲ୍ । ପ୍ରକୃତି ରାଜ୍ୟରେ ବୃକ୍ଷଲତା ଗୁଳ୍ମରାଜି କାଳକ୍ରମେ ଫସିଲ୍‌ରେ ପରିଣତ ହୋଇ ତହିଁରୁ ପୁଣି କୋଇଲା

Digitized by srujanika@gmail.com

ତୁଲ୍ୟ 'ଏନର୍ଜି' ଉତ୍‌ପାଦନ କରିଥାଆନ୍ତି । ବ୍ୟାବାହାରିକ ଜୀବନରେ ଏଇ ଏନର୍ଜିର ବିନିଯୋଗରୁ ଆମ ସଭ୍ୟତା-ଯାତ୍ରା । ସେହିପରି କବିତା ଗର୍ଭରେ ସଂଚିତ ଅନୁଭୂତି ହେଉଛି- ଉତ୍ତର ଜୀବନ ପାଇଁ ଆଲୋକର ଦୀପଶିଖା, ଏନର୍ଜି କଣିକା । ଗୋଟିଏ ଦୀପଶିଖାରୁ ସହସ୍ର ଦୀପଶିଖାର ଜ୍ୱଳନ ପରି ଅନୁଭୂତିର ବ୍ୟାପ୍ତି ଏବଂ ଏଇଥି ପାଇଁ କବିତାର ପ୍ରୟୋଜନ ! କବିତାରେ ସଂଚିତ ପରସ୍ତ ପରସ୍ତ ଅନୁଭୂତିର ଫସିଲ୍ ହେଉଛି । ମାନବ-ସଂସ୍କୃତିର ମହିମାମୟ ବିଭୂତି । ତଥାପି କବିତା କାହିଁକି ପ୍ରଶ୍ନଟିର ସମାଧାନ ଏତିକିରେ ଶେଷ ହେଉ ନାହିଁ– ଅନ୍ୟ ଦିଗନ୍ତର ବିମୋଚନକୁ ଏହା ଅପେକ୍ଷା କରୁଛି ।

ଆନନ୍ଦ ଓ ସୁଶିକ୍ଷା ପ୍ରତ୍ୟାଶୀ ମଣିଷ କବିତାକୁ ଏକ ଉତ୍‌ପ୍ରେରକ ଶକ୍ତି ରୂପେ ବୁଝିଛି । ଜୀବନ ପାଇଁ ସଦୁପଦେଶର ଉପଯୋଗିତା ମେଣ୍ଟାଇ ପାରୁଥିବା ହେତୁ କବିତା ଆମର ଆଦରଣୀୟ ବୋଲି ହୋରେସ (୬୫୮ ଖ୍ରୀ:ପୂ:) ବିଚାରିଛନ୍ତି । ଏଠି ମଧ୍ୟ ଅନେକ ପ୍ରଶ୍ନ ଓ ଦ୍ୱନ୍ଦ୍ୱର ସମ୍ଭାବନା ଅଛି । ହୋରେସ୍ ଯେଉଁ ଉପଦେଶର କଥା ଉଠାଇଛନ୍ତି, ତାହାର ଆବଶ୍ୟକତା ସମାଜ-ବ୍ୟବସ୍ଥାରେ କେତେ ? କବି ତୁଣ୍ଡର ଉପଦେଶ ମାନବର ସମାଜ-ବ୍ୟବସ୍ଥାରେ କିପରି ଓ କାହିଁକି ଆବଶ୍ୟକ ? ଏହି ସୂତ୍ରକୁ ଧରି ଓ କବି ଶେଲି (୧୭୯୨-୧୮୨୨)ଙ୍କୁ ମାନି ଯଦି କୁହାଯାଏ, କବି ହେଉଛନ୍ତି ଜଣେ ଅସ୍ୱୀକୃତ ବିଧାୟକ, unacknowledged legislator ଏବଂ Defence of Poetry ଅନୁମତେ ଯଦି ପ୍ରତିପାଦନ କରାଯାଏ ଯେ, କବିତା ହେଉଛି ସାର୍ବଭୌମ; ତାହାହେଲେ ଏଇ ଶକ୍ତିର ପ୍ରାଣବୀଜ କେଉଁଠି ? ଏହାର ଅବସ୍ଥିତି କ'ଣ ଉପଦେଶାତ୍ମକତାର ମଧୁକୋଷ ଭିତରେ ? ନା, ତା' ମଧ୍ୟ ନୁହେଁ । କବିତା ଶିକ୍ଷକ ନୁହେଁ, କିମ୍ବା ଶିକ୍ଷା ପାଇଁ କବିତାର ଜନ୍ମ ନୁହେଁ । କିନ୍ତୁ ଅଶିକ୍ଷା ଅପସାରଣର ଏକ ଆୟୁଧ ହୋଇପାରେ ଏଇ କବିତା । ଏଥିପାଇଁ ଦାୟୀ ଆନନ୍ଦ ଓ ଆହ୍ଲାଦର ବ୍ୟଞ୍ଜିତ ସ୍ଫୁଲିଙ୍ଗ । ଏହି ଆନନ୍ଦ-ଆହ୍ଲାଦ ପାପରେ ଅଛି, ପୁଣ୍ୟରେ ବି ଅଛି, ଦୁଃଖରେ ଅଛି, କରୁଣାରେ ବି ଅଛି । ଶୃଙ୍ଖଳା ଉପଦେଶ, ନୀତି ପାଇଁ ନିର୍ମାଲ୍ୟ ହୋଇପାରେ, କିନ୍ତୁ ଜୀବନର ବିରୋଧଭାସର ସତ୍ୟତା ପ୍ରତି ତାହାର ପ୍ରେରଣା କେତେ ? ଉପଦେଶର ଗମ୍ଭୀରା ଭିତରୁ କବିତାକୁ ଜୀବନର ମହାବେଦୀ ଉପରକୁ ଘେନିଆସିବା ଲାଗି ଫରାସୀ କବି ବଦ୍‌ଲେୟାର (୧୮୨୧-୬୭)ଙ୍କ ପ୍ରଯତ୍ନକୁ ଆମେ ଏଠାରେ ସ୍ମରଣ କରିପାରୁ । Flowers of Evil (୧୮୫୭) ହେଉଛି ଏଇ ଉଦ୍ୟମର ପ୍ରତିଧ୍ୱନି । Didactismରୁ କବିତାକୁ ଦୂରେଇ ନେଇ ମଣିଷର କ୍ଳେଶ ଓ ନିପୀଡ଼ନକୁ ପ୍ରତୀକର ଭାଷାରେ ବା Suggestive Magic ବଳରେ ସହାନୁଭୂତିର ସହ ମୂର୍ତ୍ତିମାନ କରି, ଅପର ପ୍ରାଣରେ object-lessonsର ଉପଲବ୍ଧି ଜନ୍ମାଇବା

Digitized by srujanika@gmail.com

ଏବଂ ମଣିଷର ଦ୍ୱୈତ-ସତ୍ତା (Duality) ପ୍ରତି ସଚେତନ ସମ୍ବେଦନା ସଂଚାର କରାଇବା ହିଁ କବି-ଧର୍ମ ଓ କବିତାର ତାତ୍ପର୍ଯ୍ୟ । ଜୀବନର ଉଭୟ ପକ୍ଷକୁ ଗ୍ରହଣୀୟ ବାସ୍ତବ ବିଚାରି ବାସ୍ତବର ରମଣୀୟତାକୁ ବିଧାନ ପାଇଁ ମନର ମାଳଞ୍ଚକୁ ପ୍ରସ୍ତୁତ କରାଇବା ହିଁ ପ୍ରକୃତରେ କବିତାର ଦେୟ; ଏହି କାରଣରୁ କବିତାର ମୂଲ୍ୟ ଅଛି । ପେଟ ଭୋକ ଥାଇ ସୁଦ୍ଧା କବିତା, ମରମରେ ତରଙ୍ଗ ଭାଙ୍ଗୁଛି, ଅପରାପର ମରମରେ ଦୋଳନ ତୋଳୁଛି । କବିତା କାହିଁକିର ଉତ୍ତରରେ ଏଣୁ ଜୀବନବାଦୀ ଓ ସୌନ୍ଦର୍ଯ୍ୟବାଦୀ– ଉଭୟ ପକ୍ଷର କାରଣ ନିର୍ଦ୍ଦେଶ କରାଯାଇପାରେ ।

କବିଗୁରୁ ରବୀନ୍ଦ୍ରନାଥ ବୁଝିଥିଲେ, 'ଜୀବନ ହିଁ ମହାଶିଳ୍ପୀ' । ଜୀବନର ସୃଷ୍ଟି-କର୍ମ ଦେଶ ଦେଶାନ୍ତରର ମାନବ-ଚରିତ୍ରକୁ ମୂର୍ତ୍ତିମାନ କରିଛି– ସାହିତ୍ୟର ଉପକରଣରେ କବିତାର ଅକ୍ଷରରେ କିମ୍ବା କାରୁ ଶିଳ୍ପରେ । କବିତା ମଧ୍ୟମରେ ମାନବର ମୂର୍ତ୍ତି ଓ ଭାବର ଆକୃତିର ପ୍ରକାଶ, ତେଣୁ କବିତା ଆବଶ୍ୟକ ମାନବ ମୂର୍ତ୍ତି ଓ ଭାବ-ମୂର୍ତ୍ତି ଉଭୟର ସଂଯୁକ୍ତ ପ୍ରକାଶ ପାଇଁ । ଆଶ୍ରମ-ବିଦାୟୀ ଶକୁନ୍ତଳାଙ୍କ ଅଧୀର ମାନସିକତାର ଚିତ୍ରରୂପଟି ବହୁ ପୁରାତନ ଏକ କାବ୍ୟିକ ପ୍ରକାଶ ହେଲେ ମଧ୍ୟ ଆଜି ସେହି ମାନବ-ମୂର୍ତ୍ତିଟିର ଆବେଦନ ପ୍ରାଣେ ପ୍ରାଣେ ସହାନୁଭୂତି ଉଦ୍ରେକ କରେ । "ଅର୍ଦ୍ଧେକ ମାନବୀ ଭୂମି ଅର୍ଦ୍ଧେକ କଳ୍ପନା"– ଉଚ୍ଚାରଣଟି ଏକ କ୍ଲାସିକ୍ ଭାବ-ମୂର୍ତ୍ତିର ଉଦ୍‌ବୋଧକ । ଉଭୟର ସମ୍ବେଦନ ଏବେ ବି ମଣିଷର ଅନ୍ତର୍ଲୋକକୁ ଉଦ୍‌ଭାସିତ କରୁଛି; କବିତା ଲୋଡ଼ା ହେଉଛି, ଅନୁଭୂତିରୁ ଅନୁଭୂତିର ସଂକ୍ରମଣ ଲାଗି । ଏଇ କାରଣରୁ କଳା ଓ କବତାକୁ ଅଭିପ୍ରାୟସିଦ୍ଧ ଏକ ମାନବୀୟ ବ୍ୟାପାର ବୋଲି ଟଲଷ୍ଟୟ ଅଭିହିତ କରିଥିଲେ । ଏଜରା ପାଉଣ୍ଡ ମନେକରିଥିଲେ; କବିତା ବା ସାହିତ୍ୟ ହେଉଛି, ମାନବତାକୁ ସଭ୍ୟତା-ଭୂମିରେ ବଂଚାଇ ରଖିବାର ଏକ ଶକ୍ତି– to incite humanity to continue living ଆବେଗର ପୋଷକତା ବଳରେ ଏଇ ଲକ୍ଷ୍ୟ ସାଧନ ସମ୍ଭବ । ତେଣୁ କବିତା କାହିଁକି, କହିଲେ, ତା'ର ଉତ୍ତରରେ କୁହାଯିବ, କବିତା ଆମ ଆବେଗର ପୁଷ୍ଟିସାଧକ ଉପାଦାନ । Nutrition of Impulse ବୋଲି ତାହା ଆମର ଜୀବନସାଥି । ଏହା ଏକ ମାନବୀୟ ଅଭିପ୍ରାୟ; ଅଭିପ୍ରାୟଟି ସ୍ଥୁଳ ଓ ସୂକ୍ଷ୍ମ ଉଭୟ ଉପାୟରେ ବେଦନାର ସ୍ରୋତକୁ ପରିବହନ କରି ଅଂଚଳ ପରେ ଅଂଚଳ ପ୍ଲାବିତ କରିବ । ଫଳତଃ ବେଦନାରୁ (feeling) ବେଦନାର ସଂକ୍ରମଣ ଦ୍ୱାରା ମଣିଷ ଅଜଣା ମଣିଷ ସହ ସଂପୃକ୍ତ ହୋଇପାରିବ ।

ଆମେ ଜାଣୁ, ବ୍ୟକ୍ତିଗତ ଦୁଃଖ, ଦୁଃଖରେ ହିଁ ରହିଯାଏ । କବିତାର ଅକ୍ଷରରେ ଏହି ଦୁଃଖର ଅଭିବ୍ୟକ୍ତି ଅପର ପ୍ରାଣରେ ସହାନୁଭୂତିର ଗୁଞ୍ଜରଣ ସୃଷ୍ଟି କରେ । ତାହାକୁ ଆମେ କହୁଁ କରୁଣା । କରୁଣାର ବନ୍ଧନ ଘେନି ମଣିଷ ହୁଏ ମଣିଷର

Digitized by srujanika@gmail.com

ନିକଟବର୍ତ୍ତୀ । 'ମା ନିଷାଦ' ଉଚ୍ଚାରଣ ମୂଳରେ ଥିଲା ଏଇ କରୁଣା; କରୁଣା ସେତୁ ବାନ୍ଧିପାରେ, ବିଭେଦର ପ୍ରାଚୀରକୁ ଭାଙ୍ଗିପାରେ, ଅବେଦନଟିକୁ ବିଶ୍ୱମୟ କରିପାରେ । ଅବେଦନର ବିଶ୍ୱମୟ ପରିମାଣଟିକୁ ବୁଦ୍ଧଦେବଙ୍କର ଉପଦେଶରେ କଥିତ 'ବ୍ରହ୍ମବିହାର' ସହିତ ତୁଳନା କରାଯାଇପାରେ । 'ବ୍ରହ୍ମବିହାର'– କଥାଟିର ତାତ୍ପର୍ଯ୍ୟ ହେଲା– ଏକମାତ୍ର ପୁତ୍ର ପ୍ରତି ମାତାର ମମତା, ସ୍ନେହ ଓ କରୁଣା ସେଇ ବ୍ୟକ୍ତିଗତ ସ୍ତରରେ ନ ରଖି, ପ୍ରେମର ଆବେଦନଟିକୁ ବିଶ୍ୱଆଡ଼କୁ ପ୍ରସାରିତ କରିବା, ସେହି ପ୍ରେମ ଦୃଷ୍ଟି ଦ୍ୱାରା ବିଶ୍ୱକୁ ଆପଣାର କରି ଦେଖିବାର ଅଭିପ୍ରାୟକୁ ବୁଦ୍ଧବେ 'ବ୍ରହ୍ମବିହାର' ବୋଲି କହିଛନ୍ତି । କବିତାର, କାବ୍ୟାନନ୍ଦ ଠିକ୍ ଏଇ କଥା କରେ, ତାହାକୁ 'ବ୍ରହ୍ମାନନ୍ଦ ସହୋଦର' ବୋଲି ଆମ ଶାସ୍ତ୍ରରେ କୁହାଯାଇଛି । ସୁତରାଂ କବିତା କାହିଁକିର ଉତ୍ତର ଏଇଠୁ ମିଳିବ, ଭାବମୂର୍ତ୍ତି ଓ ମାନବ-ମୂର୍ତ୍ତି ଉଭୟକୁ ଆବେଦନ ବଳରେ ଏକ କରି ବିଶ୍ୱ ମିଣିଷ ପାଇଁ କୁଳବନ୍ଧନର ଡୋରିକୁ ଶକ୍ତ କରିବା ମୂଳରେ ଅଛି ଏଇ କବିତା । କବିତା, ଆଖି ଖୋଲିଦେଇପାରେ, ଆଖିର ଆୟତନ ଭିତରେ ଥିବା ଅଭିପ୍ସାଟିକୁ ଉପରକୁ ଉପରକୁ ଉଠାଇ ନେଇପାରେ । ଅଭୀପ୍ସାର ଉତ୍ତରଣ ମୂଳରେ କବିତାର ଶକ୍ତି- ମନ୍ତ୍ରଶକ୍ତି ତୁଲ୍ୟ, ଶ୍ରୀ ଅରବିନ୍ଦ (୧୮୭୨-୧୯୬୦) ଏହାକୁ କଳା ଓ କବିତାର ଅସାମାନ୍ୟ ଦେୟ ବୋଲି ଆପଣା କାବ୍ୟ-ଜିଜ୍ଞାସାରେ ବୁଝିଥିଲେ ଓ ବୁଝାଇଥିଲେ । କହୁଥିଲେ, ଯଦି ମଣିଷର ଜୀବନଚର୍ଯ୍ୟାରେ ରୁଚି ଓ ସୌନ୍ଦର୍ଯ୍ୟ ଫୁଟେ, ସଙ୍ଗତି ଅନୁରଣିତ ହୋଇପାରେ ତେବେ; it is inevitable that the habits, thoughts and feelings of the people should be raised, ennobled, harmonised, made more sweet and dignified.

ଏଇ ଯୁକ୍ତି ଓ ସିଦ୍ଧ ଅନୁଭୂତିର ଇସାରାକୁ ମାନିନେଲା ବେଳେ ଆଉ ଏକ ବିଖ୍ୟାତ ଘଟଣା ଆମର ମନେପଡ଼େ । ତାହା ହେଉଛି ଗାନ୍ଧୀ (୧୮୬୯-୧୯୪୮)- ରବୀନ୍ଦ୍ରନାଥଙ୍କ ପତ୍ରାଳାପ । ବାସ୍ତବବାଦୀ ଓ ଆନନ୍ଦବାଦୀର ପତ୍ରାଳାପ; ସଂଳାପ-ସମୀକ୍ଷଣ । ଯେତେବେଳେ ଜଠରାଗ୍ନି ହୁ ହୁ ଜଳୁଛି, ସେତେବେଳେ କେଉଁ ବୀଣାର ସଂଗୀତ ତାକୁ ସ୍ତିମିତ କରିପାରିବ ? ରବୀନ୍ଦ୍ରନାଥ କହିଥିଲେ- ପ୍ରଭାତ ପରଶରେ ନିଦ୍ରାଦେବୀ କୋଳରୁ ଓହ୍ଲାଇ ଆସିଥିବା ପକ୍ଷୀ କ'ଣ କେବଳ ଅନ୍ନ ଚିନ୍ତାରେ ଦିନ ବିତାଏ । ନୀଳ ଆକାଶର ଆମନ୍ତ୍ରଣ ତାକୁ କେତେ ଭଲଲାଗେ, ଚଞ୍ଚୁ ଖୋଲି ସେ ପ୍ରଭାତକୁ କାକଳିର ଲହରରେ ସ୍ୱାଗତ ଜଣାଏ, ପବନର ପୁଲକରେ ଆମୋଦିତ ହୁଏ, ନୀଡ଼ ଛାଡ଼ି ଖେଳିଯାଏ, ପ୍ରାନ୍ତରେ ପ୍ରାନ୍ତରେ କିନ୍ତୁ ଗାନ୍ଧୀଙ୍କର ଉତ୍ତର ଭିନ୍ନ– ଯୁଦ୍ଧବେଳେ କ'ଣ ବୀଣାବାଦନର ଅବସର ମିଳେ, ଯୁଦ୍ଧ ପରେ ତାହା ହୁଏ ଓ ହୋଇପାରେ । ଏ ଦୁଇଟି ମତ ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ ମତ । ନିଦ ଭାଙ୍ଗି ଉଠିଥିବା

Digitized by srujanika@gmail.com

ପକ୍ଷୀ, ତମିସ୍ରାରୁ ଉଠିଥିବା ମଣିଷ, ଆତ୍ମଉନ୍ମୀଳିତ ସ୍ତରରେ ଜୀବନ ସଂଗ୍ରାମର ଦାଉ କାଟେ ନାହିଁ– ଯୁଦ୍ଧବେଳେ ବୀଣା ନ ବାଜିଲେ, ବୀଣାର ସଂଗୀତ ଏପରି ଏକ ଉତ୍ତୀର୍ଣ୍ଣ ସ୍ତରକୁ ମଣିଷର ମନକୁ ଘେନିଯାଇପାରେ ଯେଉଁଠିକି ସେ ଯୁଦ୍ଧର ନୃଶଂସତାକୁ ଭୁଲିଯାଏ, ସେଇ ମାନସିକ ଅବସ୍ଥାରେ ଆମକୁ ପହଞ୍ଚାଇ ଦେଇପାରେ କବିତା, କଳା ଓ ସଂଗୀତ । ତେଣୁ କବିତା ଲୋଡ଼ା କେବଳ ଅନ୍ନ ପାଇଁ ନୁହେଁ, ଆନନ୍ଦ ପାଇଁ ।

ଅନ୍ନ ଓ ଆନନ୍ଦର ବିଶ୍ଳେଷଣ କରି ଶ୍ରୀ ଚିତ୍ତରଂଜନ ଦାସ କହନ୍ତି– 'ଏ ଜୀବନ ଯାହାଦ୍ୱାରା ବଂଚେ, ତାକୁ ଶାସ୍ତ୍ରରେ ଅନ୍ନ ବୋଲି କୁହାଯାଇଚି ଏବଂ ଏ ଜୀବନ ଯାହାଲାଗି ବଂଚେ ତାକୁ ଶାସ୍ତ୍ରରେ ଆନନ୍ଦ ବୋଲି କୁହାଯାଇଛି । ଏଠାରେ ଅନ୍ନ କହିଲେ, ଆମେ କେବଳ ପ୍ରତ୍ୟହ ଖାଉଥିବା ଖାଦ୍ୟପଦାର୍ଥକୁ ହିଁ ବୁଝାଏ ନାହିଁ । ଠିକ୍ ସେହିପରି ଆନନ୍ଦ କହିଲେ ମଧ୍ୟ ଆମର ଜୀବନଟାକୁ ଅନେକ ଓ ବହୁଳ ବିଳାସମୟତା ଦ୍ୱାରା ଭରି ରଖିଥିବା ଏକ ଆରାମ ସର୍ବସ୍ୱ ଲାସ୍ୟକୁ ମଧ୍ୟ ବୁଝାଏ ନାହିଁ । ଅନ୍ନ ହେଉଛି ଏକ ଆବଶ୍ୟକତା, ଆନନ୍ଦ ହେଉଛି ଏକ ଆକାଂକ୍ଷା ।' (ମା ନିଷାଦ ୨୭ ପୃଷ୍ଠା)

ଅନ୍ନ ବଢ଼ିଲେ, ଆନନ୍ଦ ବଢ଼େ ନାହିଁ । ଅନ୍ନ ବଢ଼ିଲେ ବିଳାସ ବଢ଼େ, ମଣିଷ ଅଧିକରୁ ଅଧିକ ବିଳାସର ବେଢ଼ା ଭିତରେ ବନ୍ଦୀ ହୁଏ, ଆକାଂକ୍ଷାର ଉତ୍ତୋଳନ ଘଟେ ନାହିଁ, ମଣିଷ ପଥର ପାଲଟେ, ଶ୍ରୀକୃଷ୍ଣ ଆଉ ଶ୍ୟାମସୁନ୍ଦର ହୁଅନ୍ତି ନାହିଁ, ବେଣୁ ସ୍ୱନ କଦମ୍ବ ଫୁଟାଏ ନାହିଁ । ତେଣୁ ଅନୁଭୂତି ହୁଏ ନିର୍ବାକ, ଉତ୍ତରଣ ମଳିନ । ମୈତ୍ରୀ ଉପନିଷଦରେ କୁହାଯାଇଛି – 'ଅନୁଭୂତିଂ ବିନା ମୂଢ଼ୋ ବୃଥା ବ୍ରହ୍ମଣି ମୋଦତେ' । କିନ୍ତୁ କବିତା ଥିଲେ ଏ ଅବସ୍ଥା ଆଦୌ ହୁଅନ୍ତା ନାହିଁ ।

ଏଣୁ ଅନୁଭୂତିଶୀଳ ମଣିଷ, ଭାଷା ଜରିଆରେ ଭାବର କଥା ଓ ଜ୍ଞାନର କଥା ହିଁ କହିଥାଏ । କହିବାର ଅନ୍ୟତମ ମାଧ୍ୟମ ହେଉଛି ଏଇ କବିତା । ଫଳରେ ମଣିଷର ସମ୍ପର୍କସୂତ୍ର ବଢୁଛି, ସମାଜର ଦୂରତ୍ୱ କମୁଛି । ଜ୍ଞାନର ବିଭୂତି ଘେନି ସଂସ୍କୃତିର ଇଲାକା ବୃଦ୍ଧି ପାଉଛି । ଭାବର ସୂର୍ଯ୍ୟତାପରେ କିଏ ଦଗ୍ଧ ହେଉଛି ତ କିଏ ପୁଣି ଜ୍ୟୋତ୍ସ୍ନାର ସ୍ନିଗ୍ଧ ପ୍ରଲେପରେଉଲ୍ଲସି ଉଠୁଛି । ଭାବ ହିଁ ତିଆରୁଛି, ନୂଆ ନୂଆ ଚିତ୍ରମୂର୍ତ୍ତି । ଜୀବନର ନୂଆ ସଂସ୍କାର ପରିଚୟ ମିଳୁଛି ଏଇଠୁ । କେତେବେଳେ ହୁଏତ ବୋଧର ବିଳୟ ଘଟୁଛି, କେତେବେଳେ ବା ଭଂଗା ଦୁର୍ଗର ପ୍ରତିଧ୍ୱନି ଭଳି ଖଣ୍ଡବିଖଣ୍ଡିତ ଆତ୍ମବୋଧର ସୂକ୍ଷ୍ମ ରତ୍ନକଣିକାଗୁଡ଼ିକ ପୁଣି ସଜାଡ଼ି ହେଇଯାଉଛି କାଳପୁରୁଷର ଆଗାମୀ ଅବସ୍ଥା ପାଇଁ । ଏଇ ଅଭିଜ୍ଞାନର ସଂଚାରକ ହେଉଛି କବିତା । ଏହାର ପ୍ରାପ୍ତିରେ ମଣିଷ ଆପଣାର ସୀମିତ ଅବସ୍ଥାକୁ ଅତିକ୍ରମ କରିପାରେ । ଏହାକୁ ଲୌକିକ ବା ସୁଖଦାୟୀ ଅର୍ଥରେ ବୁଝିଲେ ଭୁଲ୍ ହେବ ଏବଂ ପ୍ରଶ୍ନ ଉଠିବ ଯଦି

Digitized by srujanika@gmail.com

ଏହା ଲୌକିକ ସୁଖଦାୟୀ ନୁହେଁ, ତେବେ ଭାବ ଓ ଜ୍ଞାନର ପ୍ରାପ୍ତି ପାଇଁ ମଣିଷ ଅଭିପ୍ରାୟ ପୋଷିବ କାହିଁକି ?

ଏହି ବିଚାର ଆସିଥିଲା ବୋଲି ଓସ୍କାର ୱାଇଲଡ୍ (୧୮୫୪-୧୯୦୦), Oxford Aesthetic movement (୧୮୭୪) ଜରିଆରେ ସଂପୂର୍ଣ୍ଣତଃ କଳା ବା କବିତାକୁ କବିତାଜଗତ ଭିତରେ ସିଂହାସନାରୂଢ଼ କରି ରଖିଥିଲେ । ଅର୍ଥାତ୍ ଲୌକିକତାର ସକଳ ମିଥ୍ୟା ଆଟୋପକୁ ଅସ୍ୱୀକାର କରିଥିଲେ । କବିତା ପାଇଁ କବିତାର ଉଚ୍ଚାରଣ ଶ୍ରେୟ- ଏହି ଦର୍ଶନଟିକୁ ଦୃଢ଼ କରି ଦେଖାଇ ଦେଇଥିଲେ । କବିତା ଭାତ ପାଇଁ ନୁହେଁ, ସିଂହାସନ ପାଇଁ ନୁହେଁ, ମନ୍ଦିର ପାଇଁ ନୁହେଁ, ସାମ୍ରାଜ୍ୟ ପାଇଁ ନୁହେଁ, ରତ୍ନ ପାଇଁ ନୁହେଁ, ଆଭିଜାତ୍ୟ ପାଇଁ ନୁହେଁ– ତଥାପି ଏହା କୁଳିନ, ଅଭିଜାତ ଏବଂ ନିଜେ ହିଁ ନିଜ ସାମ୍ରାଜ୍ୟର ସ୍ରଷ୍ଟା । କବିତାର ସାମ୍ରାଜ୍ୟରେ ସହୃଦୟ ହିଁ କରଦାନୀ ଭୋକ୍ତା । କବିତାର ଏଇ ନିଷ୍କାମ ଦାନର ମହତ୍ତ୍ୱକୁ ରବିଠାକୁରଙ୍କର 'ପୁରସ୍କାର' କବିତାର ଉପଲକ୍ଷ୍ୟରେ ବୁଝାଯାଇପାରେ । 'କଳ୍ପଧେନୁ ଦୁଗ୍ଧ ଦୋହନକାରୀ କବି, କବି-ପତ୍ନୀଙ୍କ ତାଡ଼ନାରେ ଦିନେ ରାଜଦରବାରକୁ ଯାଇଛନ୍ତି । କବି-ପତ୍ନୀଙ୍କ ଇଚ୍ଛା, ରାଜଦରବାରରୁ କେହି କେବେ ଶୂନ୍ୟ ହସ୍ତରେ ଫେରେ ନାହିଁ, ଯାଚକର ରତ୍ନ ମାଗୁଣି ହସ୍ତ ପୂର୍ଣ୍ଣ ହୋଇଯାଏ, କବି ସମାଦର ପାଇବେ, କବି-ପତ୍ନୀଙ୍କ ଘରସଂସାର ରତ୍ନରେ ପୂରିଯିବ । ରାଜଦରବାର ଅଭିମୁଖୀ କବି, ରାଜାଙ୍କ ସହିତ କାବ୍ୟ ବିନୋଦନରେ ମଜ୍ଜିଛନ୍ତି– ଉଭୟ ଆନନ୍ଦମଗ୍ନ, କାବ୍ୟଚର୍ଚ୍ଚା ସରିଛି । ଆସ୍ୱାଦନ-ତୃପ୍ତ ରାଜା କବିଙ୍କ ନିକଟରେ ନିବେଦନ କରିଛନ୍ତି–

'ଧନ୍ୟ କବି ଗୋ ଧନ୍ୟ-
ଆନନ୍ଦେ ମନ ସମାଚ୍ଛନ୍ନ
ତୋମାରେ କି ଆମ କହିବ ଅନ୍ୟ,
ଚିରଦିନ ଥାକ ସୁଖେ ।
ଭାବିୟା ନା ପାଇ କି ଦିବ ତୋମାରେ,
କରି ପରିଶେଷ କୋନ୍ ଉପହାରେ,
ଯାହା କିଛୁ ଆଛେ ରାଜଭାଣ୍ଡାରେ,
ସବ ଦିତେ ପାରି ଆନି ।
ପ୍ରେମୋଚ୍ଛ୍ୱାସିତ ଆନନ୍ଦ ଜଲେ
ଭରି ଦୁନୟନ କବି ତାଁରେ ବଲେ
'କଣ୍ଠ ହଇତେ ଦେହୋ ମୋର ଗଲେ
ଓଇ ଫୁଲମାଲାଖାନି ।'

Digitized by srujanika@gmail.com

ଫୁଲମାଳାଠାରୁ ରତ୍ନ କେଡ଼େ ନ୍ୟୂନ, ଭାବଠାରୁ ବିଭବ କେଡ଼େ ଦୀନ କହନ୍ତୁ ତ ।

ପାର୍ଥିବ ପାରିତୋଷିକ ଆକର୍ଷଣରେ କବିତାର ଉଚ୍ଚାରଣ । ଏପରି ବିଚାର ଅଳୀକ । ଜୀବନର ବ୍ୟାବହାରିକ ଅଭିପ୍ରାୟ ସହିତ କଳାର ଅଭିପ୍ରାୟକୁ ମିଶାଇ ଦେଲେ ପ୍ରମାଦ ଘଟିବ । ସୌନ୍ଦର୍ଯ୍ୟବାଦୀମାନେ କବିତା କାହିଁକି ପ୍ରଶ୍ନଟିର ଉତ୍ତର ଦେଲାବେଳେ ପାର୍ଥିବ ମୂଲ୍ୟକୁ ଖାତିର କରନ୍ତି ନାହିଁ । ସେମାନେ ତାଙ୍କ ଧାରଣାରେ ଦୃଢ଼ ଯେ– ଆବେଗ ଜରିଆରେ ଆବେଗର ଉଦ୍‌ବୋଧନ ହେଉଛି ଶିଳ୍ପକଳାର ଲକ୍ଷ୍ୟ । କିନ୍ତୁ ଅପର ପକ୍ଷରେ ଆବେଗକୁ କୌଣସି କାର୍ଯ୍ୟ ଉତ୍ପତ୍ତି ଲାଗି ବିନିଯୋଗ କରିବା ହେଉଛି ଜୀବନର ଲକ୍ଷ୍ୟ- 'Emotion for the sake of emotion is the aim of Art and emotion for the sake of action is the aim of Life.'

ତେଣୁ ନନ୍ଦନ ତତ୍ତ୍ୱ ଦୃଷ୍ଟିରୁ କବିତା କାହିଁକିର ସମାଧାନ ସୌନ୍ଦର୍ଯ୍ୟର ଅବରୋଧରେ ହିଁ ନିହିତ । ସୌନ୍ଦର୍ଯ୍ୟକୁ ସତ୍ୟର ଇନ୍ଦ୍ରିୟଗ୍ରାହ୍ୟ-ରୂପ ଅର୍ଥରେ ସେମାନେ ବୁଝିଥିଲେ । ଯେତେବେଳେ କୌଣସି ଏକ ସାର୍ବଜନୀନ ଚିନ୍ତା ପରିଚ୍ଛନ୍ନ ଏକ ଅସ୍ତିତ୍ୱ ଘେନି ଉଭାହୁଏ, ସେତେବେଳେ ତାହା କେବଳ ସତ୍ୟ ହୋଇ ରହେନାହିଁ, ସୁନ୍ଦର ହୋଇଯାଏ । ଏକ ଦୃଷ୍ଟାନ୍ତ ଜରିଆରେ କଥାଟିକୁ ସ୍ପଷ୍ଟ କରି ବୁଝାଯାଇପାରେ । କବି ରାଧାନାଥଙ୍କର ଚନ୍ଦ୍ରଭାଗା କାବ୍ୟରେ ଗୋଟିଏ ଛତ୍ରରେ ବର୍ଣ୍ଣନା କରାଯାଇଛି ଯେ ଚନ୍ଦ୍ରଭାଗା ସାଗର ଗର୍ଭରେ ଆପଣାକୁ ମିଶେଇ ଦେଇଛି, ଯେପରି ପ୍ରଭାତୀ ତାରା ରବିକିରଣରେ, ଜୀବାତ୍ମା ବିଶ୍ୱଆତ୍ମାରେ, ଚପଳା ଜଳଦ ଅଙ୍ଗରେ ନିଜକୁ ମିଶେଇ ଦିଅନ୍ତି । ଏହି ଉପଲକ୍ଷ ଗୁଡ଼ିକ ସାର୍ବଜନୀନ ସତ୍ୟ, ଏହାକୁ ଭିତ୍ତିକରି କବି ଚନ୍ଦ୍ରଭାଗାର ଆତ୍ମସମର୍ପଣ ଘଟଣାକୁ ଇନ୍ଦ୍ରିୟ-ଗ୍ରାହ୍ୟ ରୂପର ଆଭାସରେ ଆମକୁ ପ୍ରତ୍ୟକ୍ଷ ଗୋଚର କରାଇଛନ୍ତି । ଏହା ସତ୍ୟର ସୀମା ଡେଇଁ ସୁନ୍ଦରର ଇଲାକାରେ ମୂର୍ତ୍ତିମାନ ହୋଇ ଉଠିଛି ଏବଂ ପ୍ରମାଣ କରୁଛି Truth is idea ଏବଂ ସୌନ୍ଦର୍ଯ୍ୟ ବା Beauty is the sensible appearance of the Idea । ଅତଏବ ସମ୍ବନ୍ଧ ସୂତ୍ରରେ ବନ୍ଧା ସତ୍ୟ ଓ ସୁନ୍ଦରର ଆସ୍ୱାଦନ ପାଇଁ କବିତା ଆମର କାମ୍ୟ ।

ତଥାପି ପ୍ରଶ୍ନ ଉଠୁଛି– ସତ୍ୟ-ସୁନ୍ଦରର ଅବଧାରଣା ପରି ବିମୂର୍ତ୍ତ ଉପଲବ୍ଧିକି ମଣିଷ ଲୋଡ଼ିବ କାହିଁକି ? ଫରାସୀ Parnassians ବା କଳା-ପ୍ରାଣ କବିପୁରୁଷଗଣ (ଥିଓଫିଲଗୋଓଟିର, ଚାଲର୍ସ ଲେକୋଣ୍ଟିଦି ଲିସ୍‌ଲ, ଚାଲର୍ସ ବଦଲେଶୟାର ପଲ୍‌ଭେରଲେନ୍ ଇତ୍ୟାଦି) ସମାଜର ସାମଗ୍ରିକ ଅଗ୍ରଗତି ସଙ୍ଗେ କବିତାର ତାତ୍‌କାଳିକ କୌଣସି ସଂପର୍କ ନାହିଁ ବୋଲି ମନେ କରୁଥିଲେ ଏବଂ ଇଉରୋପରେ ଏଇ

Digitized by srujanika@gmail.com

ମତର ପ୍ରତିଧ୍ୱନି ବିଭିନ୍ନ ସ୍ଥଳରେ ଉଚ୍ଚାରିତ ହୋଇଥିଲେ ସୁଦ୍ଧା ଯୁକ୍ତି ହେଲା– କବିତାର କ'ଣ ସାମାଜିକ ଫଳଶ୍ରୁତି କିଛି ନାହିଁ ? କବି ପୁଷ୍କିନ୍ (୧୭୯୯-୧୮୩୭) ପୂର୍ବରୁ ଅବଶ୍ୟ ପହିଲୁ ପହିଲୁ କବିତାର ଉଦ୍ଦେଶ୍ୟ ଘେନି ସୌନ୍ଦର୍ଯ୍ୟବାଦୀ ସିଦ୍ଧାନ୍ତରେ ପହଞ୍ଚିଥିଲେ । The Poet and the Crowd କବିତାରେ କବି ପୁଷ୍କିନ୍ ଜଣାଇଥିଲେ ।

No, not for worldly agitation
Nor worldly greed,
Nor worldly strife
But for seet song,
for inspiration
For prayer the poet comes
to life.

ଏହି ଉଚ୍ଚାରଣଟି 'କବିତା ପାଇଁ କବିତାର ସୃଷ୍ଟି' ଏହି ମତ ସପକ୍ଷରେ ଯାଉଥିଲେ ମଧ ସାମାଜିକ ମୂଲ୍ୟବୋଧର ଉଦ୍ଦୀପନ ପ୍ରତି କବି ଯେ ନିସ୍ପୃହ ଥିଲେ ତାହା ନୁହେଁ ।

ସୋଭିଏତ କାବ୍ୟତତ୍ତ୍ୱରେ ବିଶ୍ୱାସ କରାଯାଉଥିଲା ଯେ, କବିତା ପାଇଁ କବିତାର ସ୍ଫୁରଣ ଏବଂ ଏଥିପ୍ରତି ବିଶେଷ ଅନୁରାଗ ସେତିକିବେଳେ ପ୍ରକାଶ ପାଏ, ଯେତେବେଳେ କଳାକାର ବା କବି ତା'ର ସାମାଜିକ ପରିବେଶରେ ସଂକଟ ଓ ପ୍ରତିବନ୍ଧକର ସମ୍ମୁଖୀନ ହୁଏ– Wherever the artist is of odds with his social environments. କିନ୍ତୁ ମୂଳ କଥା ହେଉଛି, ପ୍ରତ୍ୟେକ ଶିଳ୍ପ-ବିଦ୍ୟା ମାନବର ସଜ୍ଞାନ ଚିତ୍ତରେ ବାସ୍ତବତାର ପ୍ରତିଫଳନ ଘଟାଇବା ପାଇଁ ଉଦ୍ଦିଷ୍ଟ । ମାନବର ସଚେତନ ପ୍ରାଣ, ବସ୍ତୁ-ଜଗତକୁ ଅଙ୍ଗୀକାର କରି କେବଳ ପ୍ରତିଫଳିତ କରେ ନାହିଁ, ବରଂ ତାହାର ପୁନଃ ସୃଷ୍ଟିର କାରଣ ହୋଇଥାଏ । ଏପରି ଉପାୟରେ ସୃଷ୍ଟି ହୋଇଥିବା ବାସ୍ତବତାକୁ ଆମେ ପ୍ରଜ୍ଞା ଓ ରସଦୃଷ୍ଟି ବଳରେ ଆବିଷ୍କାର କରିଥାଉଁ । ସେଇଥିପାଇଁକୁହାଯାଏ "Society is not made for Artist but the Artist for society. The function of Art is to assist the development of man's consciousness to improve the social system." (Art and social life, Plekhavov, P. 5 Moscow) ଏହି କାରଣରୁ କୁହାଯାଇଥାଏ ଯେ– ପ୍ରତ୍ୟେକ ମାନବୀୟ ଅଭିପ୍ରାୟ ମାନବ ସମାଜର ସେବା ପାଇଁ ଉଦ୍ଦିଷ୍ଟ ।

ତେଣୁ ମାର୍କସ (1818-1883) Art କୁ Humanised nature ଅର୍ଥରେ ଗ୍ରହଣ କରିଥିଲେ । Humanisation of nature କଥାଟିକୁ ସେ ଯେପରି ବୁଝାଇଥିଲେ, ତାହାର ମର୍ମାର୍ଥ ଏଇପରି, ସେ କହୁଥିଲେ – "ବାସ୍ତବତାର ପଟ୍ଟଭୂମିରେ

Digitized by srujanika@gmail.com

ସମାଜକୁ ପ୍ରକାଶ କରିବା, ବୌଦ୍ଧିକତାର ଆଲୋକରେ ସମାଜକୁ ଦେଖିବା, ମରମୀ ପ୍ରବଣତା ନେଇ ସମାଜ ସହିତ ସମ୍ବନ୍ଧ ଯୋଡ଼ିବା ହେଉଛି– କବିତାର ଲକ୍ଷ୍ୟ ।'' କବିତା କାହିଁକିର ଉତ୍ତର ଏଇଠି, ଏଇ ଗୁଣ ଥିଲେ କବିତା ସାମାଜିକ ମୂଲ୍ୟବୋଧ ତିଆରି କରିପାରେ ।

ସାମାଜିକ ମୂଲ୍ୟବୋଧ ସୃଷ୍ଟି ପାଇଁକିଛି ଆଲୋକ ଓ କିଛି ଉତ୍ତାପ ଦରକାର । ସେଇ ଆଲୋକ ଓ ଉତ୍ତାପର ବିକିରଣ ଲାଗି ଏକ ମାଧ୍ୟମ ହେବ କବିତା । କବି ହେବେ, ଦେଶ ତଥା ସମାଜ ଶ୍ରେଣୀର ମୁଖପାତ୍ର; ଦେଶ ଓ ସମାଜର ଚକ୍ଷୁ, କର୍ଣ୍ଣ ଓ ହୃଦୟ । ଏହି ଲକ୍ଷଣ ଥାଇ, କବିତା ହେବ ସମାଜ ଜୀବନର ସ୍ୱର, ସଭ୍ୟତାର ଆଲୋକ ଶିଖା, ସାମାଜିକ ଉଦ୍ଦୀପନାର ସ୍ୱର Voices of enlightenment । କବିତା-ସମ୍ଭୋଗରୁ ଏହି ଫଳ ପ୍ରାପ୍ତି ଏକ ସାମାଜିକ ଆବଶ୍ୟକତା ।

ସମାଜର ବିଚିତ୍ର ଗତିଧାରା ମଧ୍ୟରେ ସାମଞ୍ଜସ୍ୟ ପ୍ରତିଷ୍ଠାର ଉଦ୍ଦୀପକ ଶକ୍ତି ହେଉଛି ଏହି କବିତା । ଉଦ୍ଦୀପକ ଶକ୍ତି ବିନା ମାନବ ମନର ହୃଦୟ ସଂବେଦୀ ଅଭିସାର ଏକ ବିଡ଼ମ୍ବନା । କବିତା ଯେହେତୁ, ମଣିଷର ସାମାଜିକ ଅଭିପ୍ରାୟକୁ ଏବଂ ନାନ୍ଦନିକ ଲୀଳାବୃତ୍ତିକୁ ନାନାଦି ବୈଚିତ୍ର୍ୟ ମଧ୍ୟରେ ସୁ-ସମନ୍ୱିତ ଓ ସାମଞ୍ଜସ୍ୟପୂର୍ଣ୍ଣ ଅବସ୍ଥାରେ ପହଞ୍ଚାଇ ଦିଏ, ତେଣୁ ସେଇଥିପାଇଁ ଲୋଡ଼ା ହୁଏ କବିତା ।

ଆମେ କବିତା କାହିଁକିର ପ୍ରଶ୍ନ ଉଠାଇଲାବେଳେ ଯେତେ ପ୍ରକାର ଦ୍ୱନ୍ଦ୍ୱ ଓ ବିପକ୍ଷ ଯୁକ୍ତିର ସମ୍ମୁଖୀନ ହେଉନା କାହିଁକି କେହି ହଲପ କରି କହିପାରିବା ନାହିଁ ଯେ କବିତା ମଣିଷ ଜାତିକି ନଷ୍ଟ କରିଛି । ସମସ୍ତେ କବିତା ପ୍ରେମରେ ପଡ଼ିଛନ୍ତି; କିବା ଅମୀର କିବା ଫକୀର, .ଆଉ ମଝିରେ ରହିଲେ ଯେଉଁମାନେ, ସମସ୍ତେ ଆପଣା ଜୀବନରେ ଊଣାଅଧିକ କବିତାକୁ ଭେଟିଛନ୍ତି, ତାହାର ସାନିଧ ଲୋଡ଼ିଛନ୍ତି । କେହିକେହି କବିତାକୁ ମଧ୍ୟବିତ୍ତର ବିଳାସ ବୋଲି କହୁଥିବାର ଶୁଣାଯାଏ, କିନ୍ତୁ ସେମାନଙ୍କର ଯୁକ୍ତି ଏକଦିଗଦର୍ଶୀ ।

କେହି ହୁଏତ ପ୍ରଶ୍ନ କରିପାରନ୍ତି– କବିତା ଯଦି ଧାନ କ୍ଷେତରେ ଅଧିକ ଶସ୍ୟ ଫଳାଇବ ନାହିଁ, ଦୁର୍ଭିକ୍ଷ ଦାଉରୁ ଆମକୁ ରକ୍ଷା କରିବ ନାହିଁ, ତେବେ କବିତା କାହିଁକି ? କିନ୍ତୁ ଏହା କ'ଣ ସତ କି କବିତା ନ ଥିଲେ ଅଧିକ ଶସ୍ୟ ଫଳିବ, ଦୁର୍ଭିକ୍ଷ ହେବ ନାହିଁ, ବନ୍ୟାବ୍ୟୁତ୍ପାତ ଲୋକ– ସମାଜକୁ ଭୟଭୀତ କରିବ ନାହିଁ ? କବିତାକୁ ଯଦି ଏ ସବୁର ପ୍ରତିରୋଧକ ଶକ୍ତି ରୂପେ ବ୍ୟବହାରବାଦୀମାନେ ଚିହ୍ନିବାକୁ ଚେଷ୍ଟା କରୁଥାନ୍ତି, ତାହାହେଲେ ସେ ଚେଷ୍ଟା ନିଷ୍ଫଳ, ଅବାନ୍ତର ମଧ୍ୟ । ଧାନ କ୍ଷେତରେ ଶସ୍ୟ ଫଳାଉଥିବା ଶ୍ରମିକଟି ଯେଉଁ ଉନ୍ମାଦନାବଶତଃ ହୋଇ ଫୂର୍ତ୍ତିରେ କାର୍ଯ୍ୟ କରିପାରେ, ତାହାର ଅନ୍ତରାଳରେ ଥାଏ ଏକ ସୂକ୍ଷ୍ମ ଶକ୍ତି– ତା' ହେଲା ଛନ୍ଦ ବା ଧ୍ୱନି ।

Digitized by srujanika@gmail.com

Rhythm, ପ୍ରତି-ପଦପାତରେ ଶ୍ରମିକର Labourକୁ ପ୍ରରୋଚିତ କରିଥାଏ । ବିଭିନ୍ନ ଶ୍ରେଣୀର ଶ୍ରମିକମାନଙ୍କ ତୁଣ୍ଡରୁ ଉଚ୍ଚାରିତ ଗୀତ ସବୁ ସେମାନଙ୍କର ଲୌକିକ ବିଶ୍ୱାସ ଓ ଶକ୍ତିର ପ୍ରତୀକ । Labour songs ଏକ ପ୍ରକାର ଆଦିମ ଉଚ୍ଚାରଣ । ଏଥିରେ ଅଛି ଉନ୍ମାଦନାର ଲକ୍ଷଣ, ଏବଂ ଅଛି ଐନ୍ଦ୍ରଜାଲିକ ଶକ୍ତି । Magicର ନିକଟବର୍ତ୍ତୀ ବୋଲି ଏହାକୁ ମଧ୍ୟ ଗ୍ରହଣ କରାଯାଇଛି ।

କବିତା ବିପ୍ଳବ ବା କ୍ରାନ୍ତିର ପ୍ରେରକ । ଏହା ଠିକ୍ ଭାବରେ ଏକ ପ୍ରକାର ସାଂଗଠନିକ ବିପ୍ଳବ ନୁହେଁ । ପଟୁଆର, ଶୋଭାଯାତ୍ରା, ବା ଅନ୍ୟାନ୍ୟ ଆନ୍ଦୋଳନର ଛାଇପରି, କବିତାର ବିପ୍ଳବ- ଧର୍ମକୁ ଚିହ୍ନିବା ଭୁଲ । କବିତାର ଆବେଦନରୁ ଏଇ ବିପ୍ଳବହିଁ ଜନ୍ମନିଏ । କବିତା ଭିତରୁ ପାଠକ ଯେତେବେଳେ ଆପଣା ବିଶ୍ୱାସର ପ୍ରତିଧ୍ୱନି ଶୁଣେ, ସେତିକିବେଳେ ସେ ଚେତନାରେ ଶିହରି ଉଠେ, ମନ-ପ୍ରାଣରେ ଏହାର କ୍ରିୟା-ପ୍ରତିକ୍ରିୟା ଦେଖାଦିଏ । ନୂତନ ଆକାଂକ୍ଷାରେ ତାହାର ବ୍ୟକ୍ତି-ସତ୍ତା ଆଲୋକିତ ହୋଇଯାଏ । ଏହି ଆକାଂକ୍ଷା ହେଉଛି– ନୂତନ ଜୀବନର ସ୍ରଷ୍ଟା, ନୂଆ ସମାଜର ନିର୍ମାତା । ଏପରି ଆଶା ଓ ଆକାଂକ୍ଷାର ଆଲୋକଶିଖା ଜାଳି ପାରୁଥିବା କବିତା, ଆମ ସମସ୍ତଙ୍କର ଅବବୋଧକୁ ବଦଳାଇଦିଏ । ତେଣୁ କୁହାଯାଏ– Poetry means hope । ଏହି ଆଶା ଓ ଆକାଂକ୍ଷାଟିର ଭୂମିକା ଯଦି ତୀକ୍ଷ୍ଣ ଓ ଅଖଣ୍ଡ, ତେବେ ଏହା ଲୋକ-ଚିତ୍ତରେ ପ୍ରତ୍ୟୟ-ବୃଦ୍ଧିର କାରଣ ହୋଇଥାଏ । ସୋଭିଏତ କାବ୍ୟ-ତତ୍ତ୍ୱରେ; କବିତାର ଏହି ପରିଣାମକୁ ସାମାଜିକ ମୂଲ୍ୟବୋଧ ଜାଗରଣ ଓ ସଂରକ୍ଷଣର ବିଶେଷ ଲକ୍ଷଣ ହିସାବରେ ପ୍ରାୟ ଗ୍ରହଣ କରାଯାଇଛି । ସେମାନେ ମଧ୍ୟ ଆମ ଭଳି ଅନୁଭବ କରିଛନ୍ତି ଯେ କବିତାର ଅନ୍ତିମ ଲକ୍ଷ୍ୟ ହେଉଛି– ଆତ୍ମ-ବିମୋଚନ ଏବଂ ଏହି ବିମୋଚନର ପରିଣତି ହେଉଛି ସାମାଜିକ ବିବର୍ତ୍ତନ । ବୋରିସ ପାଷ୍ଟରନାକ୍ (୧୮୯୦-୧୯୬୦) ଗୋଟିଏ କବିତାରେ କହିଛନ୍ତି– 'The aim of art is self-discharge/And not the clap-trap of success.'

ଶ୍ରମ-ସଙ୍ଗୀତରେ ହେ, ହୋ ଇତ୍ୟାଦିର ଉଚ୍ଚାରଣ, ହାତୁଡ଼ିର ଆବାଜ୍, ନିହଣର ଧ୍ୱନି, ଆହୁଲାର ଶବ୍ଦ ଓ ଲଙ୍ଗଳର ଗତିସ୍ପନ୍ଦ ଇତ୍ୟାଦିକୁ ହିଁ ପ୍ରତିଧ୍ୱନିତ କରିଥାଏ । ଶ୍ରମିକର ଆବେଗ ତାହାର କ୍ରିୟା ସହିତ ସମତାଳ ରଖି ଏଇଠି ଗତିକରେ । ଏହି ଶ୍ରମ ସଙ୍ଗୀତରେ ଭରି ରହିଥାଏ ଆତ୍ମକେନ୍ଦ୍ରୀ ଅଭିନିବେଶର ଗଭୀରତା । ଗୋଟିଏ ବିନ୍ଦୁରେ ଆମେ ଏଇଠି, ନୃତ୍ୟ, ସଙ୍ଗୀତ ଓ କବିତାର ଏକତ୍ର ଅବସ୍ଥାନ ଲକ୍ଷ୍ୟ କରିଥାଉଁ ।

କଳାର ବିଶେଷ ବିଶେଷ ଅଂଶ ନୃତ୍ୟ, ସଙ୍ଗୀତ ଓ କବିତା-ପହିଲୁ କହିଲୁ ଏମାନେ ଏକ ଆଧାରରେ ଅଭେଦ ଏକକରେ ପ୍ରତିଫଳିତ ହେଉଥିଲେ ଏବଂ ଏସବୁର

Digitized by srujanika@gmail.com

ଉଦ୍ଭ ଥିଲା, ଶ୍ରମ-ନିଯୁକ୍ତ ମଣିଷର ଛନ୍ଦାୟିତ ଅଙ୍ଗନ୍ୟାସ ଓ ଉଚ୍ଚାରଣ । କଳା ସଚେତନତାର ଅନୁପ୍ରବେଶ ଶିଳ୍ପ ବିଦ୍ୟାର ସ୍ପର୍ଶ ହେତୁ ଏ ସବୁରେ ଅଳଙ୍କରଣର ପ୍ରଦର୍ଶନ ପରିଲକ୍ଷିତ ହେଲା । କବିତା ନୃତ୍ୟ ଗୀତର ସମାବେଶରୁ ବାହାରି ଆସି ସ୍ୱତନ୍ତ୍ର ନାନ୍ଦନିକ ସ୍ୱରୂପ ଘେନିଲା ପରେ ମଧ୍ୟ କବିତାରୁ ପୂରାପୂରି ସଙ୍ଗୀତ ଯେ ବିଦାୟ ନେଲା, ତା'ନୁହେଁ । ଏହା Symphony ବା ସ୍ୱରର ଅନୁଦାନରୁ ଐନ୍ଦ୍ରଜାଲିକ ଆମୋଦ ପାଇବା ସାଧାରଣଙ୍କ ପକ୍ଷରେ ଅସମ୍ଭବ ହେଲା ନାହିଁ । କବିତାକୁ Magic ନ୍ୟାୟରେ ଗ୍ରହଣ କଲା ମଣିଷ ଆପଣାର ସକଳ ଅହେତୁକ ଜିଜ୍ଞାସାର ପରିତୃପ୍ତି ପାଇଁ । ତେଣୁ କବିତା ବା ପରିତ୍ୟକ୍ତ ହେବ କାହିଁକି ? ପ୍ରାଚୀନ ମଣିଷର ଏହି ଚିନ୍ତା କ୍ରମଶଃ ବଦଳିଥିଲେ ମଧ୍ୟ ଆଜି ସବୁ ପ୍ରକାର ତାତ୍ତ୍ୱିକ ପ୍ରଶ୍ନ ବୈଜ୍ଞାନିକ ବିଶ୍ଳେଷଣ ଓ ଯୁକ୍ତିବାଦୀ ମନନ ସତ୍ତ୍ୱେ, ବିଶ୍ୱର ସାରସ୍ୱତ ମାନଚିତ୍ରରୁ କବିତାର ବିଦାୟ ଘଟିନାହିଁ ।

ମନର ମାଳାଞ୍ଚଳରେ କବିତାର ଫୁଲ ଫୁଟୁଛି; ଏହାକୁ ଅବୁଝା ଲୋକେ 'ଅକାର୍ଯ୍ୟର କାର୍ଯ୍ୟ' ବୋଲି କହୁଥାଆନ୍ତୁ ପଛକେ, କବିତା, ଆମ ପାଇଁ ନିତି ନିତି ଶତ ଶତ ଆନନ୍ଦର ଆୟୋଜନ' ବାଢ଼ୁଛି । କବି କହୁଛି ତା' କବିତା 'ବିରାଟ ଚୁମ୍ବକ' କେବେ ପୁଣି 'ସୁଦର୍ଶନ ଚକ୍ର' (ଦୀପକ ମିଶ୍ର-୧୯୩୯) । 'କବିତା ଭିତରେ' କବିର ସ୍ଥାୟୀ ନିବାସ । କବି କଣ୍ଠରୁ ଆମେ ଶୁଣୁଛୁ– 'କବିତା ମୋହର ପ୍ରତି ଶୋଣିତର ରକ୍ତ-ସ୍ରୋତ। କବିତା ଭିତରେ ବଞ୍ଚି ରହିଛି ମୁଁ ଅବିରତ ଛାଡ଼ି କବିତାରେ, ଯିବି କେଉଁ ଆଡ଼େ ?/ କେତେ ଜନମରୁ ବାଛି ମୁଁ ନେଇଛି ସେଇ ସୁନ୍ଦର ସ୍ୱର୍ଣ୍ଣ ପଥ/ କବିତା ଭିତରେ ବଞ୍ଚି ରହିଚି ମୁଁ ଅବିରତ'– କବି କୃଷ୍ଣଚନ୍ଦ୍ର ତ୍ରିପାଠୀ (୧୯୧୧) । କବି-କୁଳଙ୍କର ନିଜକଥା ପ୍ରାୟ ଏଇଆ ।

'କବିତା କ'ଣ ସାରା ଜୀବନ' ? କୋକିଳା ଦେଈଠାରୁ ଏ ପ୍ରଶ୍ନର ଉତ୍ତର ଖୋଜିଛନ୍ତି କବି ରାଜେନ୍ଦ୍ର କିଶୋର ପଣ୍ଡା, ତାକୁଇ ଶୁଣେଇ ନିଜେ ଉତ୍ତର ଦେଇଛନ୍ତି– 'କୋକିଳା ଦେଈ କବି ନୁହେଁ, ତଥାପି/ କବିତାରେ ଅଗ୍ନିରେ, ଶତାନି ପତାନିରେ ତୋର/ କୋକିଳା ଦେଈ ବ୍ୟାପିଯାଏରେ କବି !/ ବ୍ୟାପିଯାଏ ।' କବିର ଏଇ ବ୍ୟାପ୍ତି, ଆକାଶ-ପୃଥ୍ୱୀ-ସଂକ୍ରମିତ କବିର ଛାଇକି ଆମେ ଯଦି ପୁଣି ପ୍ରଶ୍ନ କରୁଁ– କି ଦାୟ ତୁମରରେ କବି ! ଉତ୍ତର ମିଳିବ– 'ଅଦୃଶ୍ୟ ଅନୁଭବ୍ୟ ଅଗଣନ/ ଇଚ୍ଛା-ମେଳା ଦ୍ୱାରମାନଙ୍କୁ ସମ୍ମୁଖର ଏଇ ଗୋଟିଏ ଦ୍ୱାରରେ ଛୁଅଁ, ନିଘାକର/ପ୍ରଶ୍ନ ପଚାରନା କିଛି, ପ୍ରବେଶ ପ୍ରସ୍ଥାନ ଏଠି ଅବାନ୍ତର/କବି ଚୌକଠାରେ ବିରକାଳ ।' ତଥାପି କବି କଥା ଯଦି ଆପଣଙ୍କୁ ବ୍ୟଥା ଦେଉଥାଏ, କବିର ନଗ୍ର-ବିଜୟ ଯଦି ଆପଣଙ୍କ ମନରେ ପରାସ୍ତ-ପଣ ଖେଳେଇ ଦେଉଥାଏ ତେବେ କବି କମଳାକାନ୍ତ ଲେଂକା (୧୯୩୦)ଙ୍କ ଉଚ୍ଚାରଣ ମାନି 'ଜିଭ କାଟିଦିଅ । ଖଣ୍ଡିଆ କରିଦିଅ । ଆଉ ଥିବ ନା ତୁମ ଚଉଦ

Digitized by srujanika@gmail.com

ପୁରୁଷଙ୍କୁ ହକାଳିବ ।' କିନ୍ତୁ ବନ୍ଧୁ ! ଜିଭ କଟିଗଲେ ବି ତା' ତୁଣ୍ଡରୁ ଶୁଭୁଥିବ କବିତାର ଗୁଞ୍ଜରଣ । କବି ବାସନାର ମୃତ୍ୟୁ ବା କାହିଁ ?– କବି ଉଚ୍ଚାରଣର ଶେଷ ବା କାହିଁ ? 'ସବୁରି ଲୁହରେ ସବୁରି ଲହୁ/ଅନ୍ତରେ ଆଣି କରଇ ମହୁ ! ସେଇତକ ମୋର ବୁକୁର ତାତି । କବି ହେବା ପାଇଁ ବାସନା ମୋର ଦିବସ ରାତିରେ ଦିବସ ରାତି ।' –କବି ଗଡ଼ନାୟକ (୧୯୧୧) ।

ଏକ ବାସନାର ବ୍ୟାପ୍ତି ହିଁ ଆମ ଜୀବନର ଶେଷ କଥା, ଆମ ପ୍ରଗତିର ମୂଳ ସ୍ୱର, ଆମ ସଂସ୍କୃତିର ଆଧାର ।

ଆମ ଖୋଜା-ଲୋଡ଼ା ପର୍ଯ୍ୟଟନ ଏଇଠି ସରିଲା । କବିତା କାହିଁକିର ଉତ୍ତର ଆମେ ଖୋଜିଲେ । କବିଙ୍କୁ ପଚାରିଲେ, ପଣ୍ଡିତଙ୍କୁ ପଚାରିଲେ, ନେତାଙ୍କୁ ପଚାରିଲେ, ସହୃଦୟଙ୍କୁ ପଚାରିଲେ । ଉତ୍ତର ପାଇଲେ ତ ନିଶ୍ଚୟ । ତଥାପି ଯଦି କେହି କୌଣସି କାରଣରୁ କବିତାକୁ ଅମଳ ଦେଉ ନ ଥାନ୍ତି, ତାଙ୍କୁଇ ଆମର ନମ୍ର ନିବେଦନ, ବନ୍ଧୁଗଣ ! 'ଯେତେକାଳ ଥିବ ମାନବ ହୃଦୟ/କବିତାର କେବେ ହେବ ନାହିଁ ଲୟ ।'
(ସମାବେଶ, ଫେବୃଆରୀ, ମାର୍ଚ୍ଚ, ଏପ୍ରିଲ-୮୪)



Digitized by srujanika@gmail.com

# ପ୍ରାଚୀନ କବିଙ୍କ କାବ୍ୟତତ୍ତ୍ୱ

ଶାସ୍ତ୍ର ସମ୍ମତ କାବ୍ୟକଳାର ପ୍ରୟୋଗ ଷୋଡଶ ଶତାବ୍ଦୀର ଉତରାର୍ଦ୍ଧରୁ ଓଡ଼ିଆ କାବ୍ୟ ସୃଷ୍ଟିରେ ପରିଲକ୍ଷିତ ହେଲା । ବହୁ କବି ସଂସ୍କୃତ କାବ୍ୟ ତତ୍ତ୍ୱର ଆଦର୍ଶରେ ଆପଣା କବି କୃତିକି ଗଢ଼ିବାର କୁଳିନ ପ୍ରୟାସ ପୋଷଣ କଲେ । ରସ ଓ ଅଳଂକାର ବିନ୍ୟାସରେ ସେମାନଙ୍କର କବିଶକ୍ତି ବିନିଯୁକ୍ତ ହେଉଥିଲା ।

କବିତ୍ୱ ସ୍ଫୂର୍ତ୍ତି ପାଇଁ କାବ୍ୟକଳା ବିଷୟକ ଜ୍ଞାନ ଓ ଦୈବୀ ପ୍ରେରଣା ଯେ ଅପରିହାର୍ଯ୍ୟ ଏପରି ଧାରଣା ସେକାଳର କବି ମନକୁ ଆଦରି ଯାଇଥିଲା । ପଣ୍ଡିତ ପଣ ସହିତେ କବିପଣର ସହୋଦର ଯୋଗ ଘଟିଲେ ପ୍ରତ୍ୟେକ କାବ୍ୟ ଶକ୍ତିଶାଳୀ ଅଭିବ୍ୟକ୍ତି ଘେନି ଉଚ୍ଚମାନ ସଂପନ୍ନ ହୋଇଥାଏ । ଏହି ବିଶ୍ୱାସ କବିମାନଙ୍କୁ ଢ଼େର ଅଧିକେ ପରିଚାଳିତ କରୁଥିଲା । ମୋଟ ଉପରେ ପ୍ରଜ୍ଞା ବା ପାଣ୍ଡିତ୍ୟର ବଳିଷ୍ଠ ଭୂମିକା ଉପରେ ହିଁ ସୁକୁମାର କବି ପ୍ରତିଭାର ବିଳାସ– ଏହା ହିଁ ଥିଲା ପ୍ରାଚୀନ କବି ଚଳଣି ।

ନବାଗତ କବିମାନେ ପରଂପରାରୁ କାବ୍ୟ କଳାର ବିଧି ବିଧାନ ଶିକ୍ଷା ଲାଗି ମଧ ଯତ୍ନ କରୁଥିଲେ । ରାଜ ଦରବାର ମାନଙ୍କରେ ପଣ୍ଡିତ ଓ କବିମାନଙ୍କୁ ଆଶ୍ରୟ ଦେଇ କାବ୍ୟ ଶାସ୍ତ୍ର ଏବଂ ବିବିଧ ବିଦ୍ୟା ଚର୍ଚ୍ଚାର ସୁଯୋଗ ରାଜପୁରୁଷଗଣ ସୃଷ୍ଟି କରୁଥିଲେ । ଶାସ୍ତ୍ରଜ୍ଞ କବିମାନେ, କାବ୍ୟ ରଚନା-କଳାର ନାନା ପ୍ରସଂଗ ଶିକ୍ଷା ଦେଇ କାବ୍ୟ ଗୁରୁର ସମ୍ମାନ ପାଉଥିଲେ । ବାଣପୁରର ସାମନ୍ତ ରଘୁନାଥ ହରିଚନ୍ଦନଙ୍କ ରାଜଦରବାରରେ କବି ବିଷ୍ଣୁ ଦାସଂକର ଅବସ୍ଥିତି ଏବଂ ହରିଚନ୍ଦନଂକର କବି ଜୀବନକୁ ଗଢ଼ି ତୋଳିବାରେ ତାଂକର ଅବଦାନ, କାବ୍ୟ କଳା ଶିକ୍ଷାର ପରଂପରା ସଂପର୍କରେ ସୂଚନା ଦିଏ । ଯେପରି–

''ତାଂକଠାରୁ ମୁଁ, କଲି ଶିକ୍ଷାବିଧି / ଯେଉଁ ପ୍ରକାରେ ଗୀତପଦ ସିଧି ।
ଅଳଂକାରାଦି ଗୀତ ଦୋଷ ଗୁଣ / ପଦ ସଂଦର୍ଭାଦି ଯେତେ ଲକ୍ଷଣ ।

Digitized by srujanika@gmail.com

ଯେଉଁ ପ୍ରକାରେ କଲେ ଏହି ଗୀତ / ଯେଉଁ ପ୍ରକାରେ ହୁଅଇ କବିତ୍ୱ ।
ପଦ ସମାସ ବାକ୍ୟ ଅର୍ଥ ସିଦ୍ଧି / ଏହି ବାକ୍ୟର ଏ ଅର୍ଥ ପ୍ରସିଦ୍ଧି ।
ସାହିତ୍ୟରୁ ଏହା ପରି କଳିଲି / ସଂଗୀତରୁ ଭାଗ ରଂଗ ଜାଣିଲି ।
ବାଦ୍ୟ ନୃତ୍ୟହିଁ କଲି ଆକଳନ / ସ୍ୱର ପ୍ରବଂଧାଦିରେ ତତ୍ତ୍ୱମନ ।
ତେଣୁ ହୋଇଲା ଅତି ବିତପତ୍ତି / ଗୀତ କରିବା ବାଟେ ଗଲା ମତି ।
ବିଷ୍ଣୁଦାସ ବାକ୍ୟ ରଚନା ଗ୍ରହ / ବଳାତ୍କାରେ ମୁଁ କଲି କତି ପତିଗ୍ରହ ।°

ରଘୁନାଥ ରାଜ ହରିଚନ୍ଦନ ଆପଣା କାବ୍ୟ ରଚନା ବ୍ୟାପାରରେ ସେ କାଳର ପ୍ରତିଷ୍ଠିତ କବି ବିଷ୍ଣୁ ଦାସ (୧୭ଶ ଶତକ)ଙ୍କ ଠାରୁ ରଚନା ବିଧି ଶିକ୍ଷା କଳାପରେ କେହି କେହି ନାନା ଶ୍ରମ ବଳରେ କାବ୍ୟ ରଚନାକୁ ଆୟତ୍ତ କରିଥିବାର ସ୍ୱୀକୃତି ମଧ୍ୟ ମିଳିଥାଏ । ଅଗ୍ରଜ କବିକୁଳଂକ କରୁଣା ଘେନି ଅଳ୍ପ ଶ୍ରମରେ କାବ୍ୟ ରଚନା କରିବା ଲାଗି ଅନୁଜ-କବିଗଣ ଆଶା ପୋଷିଥିବାର ଦୃଷ୍ଟାନ୍ତ ମଧ୍ୟ ଏହାକୁ ସମର୍ଥନ କରେ । ଯଥା–

କବିମାନେ କରୁଣାକର ମୋରେ / କରିବି ମୁଁ କାବ୍ୟ ଅଳ୍ପ ଶ୍ରମରେ ।
କାମିନୀର ପ୍ରାୟେ ଏହୁ ହୋଇବ / କାମ ଜଳଧିକି ଉଚ୍ଛୁଳାଇବ ।
କିଣିବ ଏ ରସିକ ଜନ ମନ / କିଛି ଅଳଂକାରେ ହୋଇ ମଣ୍ଡନ ।
କୀର୍ତ୍ତି ଏଥୁଁ ବଡ଼ କେବା ସଂସାରେ / କିଛିଷାଦ ହରେ କହେ ବେଦରେ ।°°

ପ୍ରାଚୀନ କବିଂକ ଦୃଷ୍ଟିରେ କାବ୍ୟ ରଚନା ଏକ ଶ୍ରମ ସାପେକ୍ଷ କଳା ବୋଲି ବିବେଚିତ ହେବାର କାରଣ ହୁଏତ ଏଇୟା ଯେ, ଏଥିରେ ଅନୁଭୂତିର ମୁକ୍ତ ନିଃସରତା ଅପେକ୍ଷା ଲବ୍‌ଧ ଜ୍ଞାନର ଲୀଳାଖେଳା ବେଶି । କାବ୍ୟ କୃତିରେ ବିବିଧ ଅଳଂକାର ଓ ବହୁ ଶାସ୍ତ୍ରର ମୁଦ୍ରାଂକ ବିଦ୍ୟମାନ । କବି ମଧ୍ୟ ସ୍ୱୀକାର କରନ୍ତି ଯେ କାବ୍ୟ ନାନାବିଧ ଉପାଦାନରେ ଗଠିତ । ଏଥିରେ ବ୍ୟବହୃତ ଶବ୍ଦ ସମ୍ଭାର କୋଷ ଗ୍ରନ୍ଥରୁ ଗୃହୀତ ପଦ ସମୂହ ବ୍ୟାକରଣ ସମର୍ଥିତ । ଛାଂଦରେ ଚମତ୍କାରିତା ଓ ବାକ୍‌ବୈଦଗ୍ଧ୍ୟ ଲାଗି ଲୋଡ଼ା ଅଳଂକାର । ପୁନଶ୍ଚ ଏହା କିପରି ଶ୍ରୁତି ମଧୁର, ଶିକ୍ଷାପ୍ରଦ, ଜ୍ଞାନ ସଂଚାରୀ ଏବଂ ଉପାଖ୍ୟାନ ମନୋହାରୀ ହେବ, ସେଥିଲାଗି ଦରକାର ଶ୍ରୁତି, ପୁରାଣ, ସ୍ମୃତି, ନୀତିଶାସ୍ତ୍ର, ଭାଗବତ, ସଂଗୀତ ଶାସ୍ତ୍ର, ଛଂଦ ଶାସ୍ତ୍ର, ଜ୍ୟୋତିଷ ଆୟୁର୍ବେଦ ପ୍ରଭୃତି ବିଷୟର ବିନ୍ୟାସ ।

କୋଷାନ୍ତରୁ ଶବ୍‌ଦ ବ୍ୟାକରଣ ପଦସିଦ୍ଧି / ଅଳଂକାରୁ ଅଳଂକାର କାବ୍ୟ ମାର୍ଗ ସିଦ୍ଧି ହେ । ଜ୍ୟୋତିଷୁ ଗ୍ରହ ସଂଚର ସଂଗୀତରୁ ରାଗ / ଶାସ୍ତ୍ରୁଂ ଉତପତ୍ତି ସ୍ମୃତିର ଧର୍ମ ମାର୍ଗ ହେ ।

---

° ରଘୁନାଥ ରାଜ ହରିଚନ୍ଦନ–ଲୀଳାବତୀ (କାବ୍ୟ-ପୋଥି-୩ୟ ଛାଂଦ)

°° ସଦାନଂଦ କବିସୂର୍ଯ୍ୟ ବ୍ରହ୍ମା– ଯୁଗଳ ରସାମୃତ ଲହରୀ– ୨ୟ ଛାଂଦ ।

Digitized by srujanika@gmail.com

ନୀତି ଶାସ୍ତ୍ରଂନୀତି ପୁରାଣରୁ କଥାନ୍ତର ହେ /
ଶାଳୀ ହୋତ୍ରୁଂ ଅଶ୍ୱରୀତି ହୋଇଲା ଗୋଚର ହେ ।
ବୈଦ୍ୟଶାସ୍ତ୍ରରୁ ଚିକିତ୍ସା ଶ୍ରୁତି ମାର୍ଗୁଂ ତତ୍ତ୍ୱ / ବଇଷ୍ଣବ ଗ୍ରନ୍ଥ ଭାଗବତ୍ରୁଂ ଭକ୍ତି ଜାତ ହେ । ପିଂଗଳରୁ ଛଂଦ ଅଷ୍ଟାଦଶ ବିଦ୍ୟା ଶିକ୍ଷା / କରିଥିବାରୁ ବର୍ଣ୍ଣନା ବାଟେ କଳି କକ୍ଷା ହେ ।

ଏପରି ବିଧିବିଧାନ ଓ ଶାସ୍ତ୍ରାଦିର ସଂକେତ ଘେନି ଯଦି କାବ୍ୟଟି ରଚିତ ହୋଇଥାଏ, ତେବେ ତାହା ସଫଳ କାବ୍ୟର ଗୌରବ ଭୋଗ କରିବ । ଏହାହିଁ ହେଉଛି ପ୍ରାଚୀନ କାବ୍ୟ ରଚନାର ପରଂପରା ସମ୍ମତ ବିଧାନ ଲିପି । ଏଣୁ କାବ୍ୟ ରଚନା କଳା ଏପରି ସ୍ଥଳେ ଶ୍ରମ ସାପେକ୍ଷ ବା ନ ହେବ କିପରି ?

କିଂତୁ କାବ୍ୟ-ରଚନାରେ ଇଚ୍ଛାକୃତ ଅଳଂକରଣ କିଂବା ଅଭିବ୍ୟକ୍ତିରେ ଆଡଂବର ଅନେକାଂଶରେ ସହଜ ଭାବ ପ୍ରକାଶର ପ୍ରତିବଂଧକ ହେଲେବି ପ୍ରାଚୀନ କବି ସମାଜ ଏଥିପ୍ରତି ବିଶେଷ ଧ୍ୟାନ ଦେଉଥିଲେ । ଏହା ଉଚ୍ଚାଂଗ କାବ୍ୟର ସୌଂଦର୍ଯ୍ୟ ବିଧାୟକ ଲକ୍ଷଣ ବୋଲି ପରବର୍ତ୍ତୀ କାଳର କାବ୍ୟ ଶାସ୍ତ୍ରୀମାନଂକ ଦ୍ୱାରା ବିବେଚିତ ହେଲା ନାହିଁ । କାରଣ ସାହିତ୍ୟ ସର୍ଜ୍ଜନାର ମୌଳିକ ବ୍ୟାପାରରେ ଅନୁଭୂତିର ସ୍ୱତଃସ୍ଫୂର୍ତ୍ତ ପରିପ୍ରକାଶ ହିଁ ବଡ଼ କଥା, ଅଳଂକରଣ ଏକ ଉପଚାର ମାତ୍ର ।

ମଧ୍ୟଯୁଗୀୟ କାବ୍ୟତତ୍ତ୍ୱରେ ଅଳଙ୍କାର ଓ ରସର ବିଳାସ ପାଇଁ କାବ୍ୟ ସର୍ଜ୍ଜନାର ଉପଯୋଗୀତା ଉପରେ ଗୁରୁତ୍ୱ ଆରୋପିତ ହେଉଥିଲା । କାବ୍ୟକୁ ଉଦ୍ଦୀପନାର ସାମଗ୍ରୀ ରୂପେ ଗ୍ରହଣ କରାଯାଉଥିଲା । କାମ ସାହିତ୍ୟର ଦାୟ ପୂରଣ କରି ଏହା ମନୋରଂଜକ ହେଲେ, ସଫଳ ହେଲା– ଏପରି ଧାରଣା ମଧ୍ୟ କବି ମନରେ କାର୍ଯ୍ୟ କରୁଥିଲା । କବିମାନେ ସାହିତ୍ୟ ଅର୍ଥରେ କାବ୍ୟକୁ ଗ୍ରହଣ କରିଥିଲେ, ଯେପରି–

ସପ୍ରେମେ ପଢ଼ଇ ଯେବେ ସାହିତ୍ୟର ରସେ
ପୁଲକ କୁଶଳ ତନୁ ପ୍ରବଳ ଉଲ୍ଲାସେ ।°
ରସ ବା ରସଗୀତ ନାମରେ ମଧ୍ୟ କାବ୍ୟ /
ସାହିତ୍ୟକୁ ସେକାଳର ଲୋକେ ବୁଝୁଥିଲେ ।

କବି, ବିଷ୍ଣୁଦାସ (୧୭ଶ ଶତାବ୍ଦୀ) ଆପଣା କାବ୍ୟ 'ପ୍ରେମଲୋଚନା'କୁ ବିଳାସ ରସ ନାମରେ ଅଭିହିତ କରିଛନ୍ତି:-

ଶରଣ ପଶି ମୁଁ ବିଷ୍ଣୁ ଦାସପ୍ରେମ / ଲୋଚନା ବିଳାସ ରସ
କହଇ କଥା ଲହସ ଏକରସ / ପଣ୍ଡିତ ଜନେ ନଧର ଦୋଷ ।

x x x x x x

---

କୁଞ୍ଜବିହାରୀ ଭ୍ରମରବର ରାୟ (୧୭ଶ ଶତକ) ପ୍ରେମଶୀଳା କାବ୍ୟ ପୋଥି-୧ମ ଛାଂଦ ।
° ବିଷ୍ଣୁ ଦାସ-ପ୍ରେମଲୋଚନା-୩ୟ ଛାନ୍ଦ / ୪ ପଦ ।

Digitized by srujanika@gmail.com

ରସିକ ଜନଙ୍କ ସୁରସ ଆଶେ / କହିବି ଗୀତ ଛାନ୍ଦ ପ୍ରକାଶେ ।

ଏଥିରୁ ସ୍ପଷ୍ଟ ଯେ 'ବିଳାସ ରସ' ସଂଚାର ହେଉଛି 'ପ୍ରେମଲୋଚନା' କାବ୍ୟର ଉଦ୍ଦେଶ୍ୟ । ତେବେ ଏଇ 'ବିଳାସ ରସ' ଅଭିଧାଟିର ତାତ୍ପର୍ଯ୍ୟ କ'ଣ ? କାବ୍ୟର କଥାଭାଗରୁ ଅନୁଭୂତ ହୁଏ ଯେ, ବିଳାସ ଏଠି ଶୃଂଗାରୀ ଅଭିଳାଷର ପ୍ରତିପାଦକ : ଏଇ ଶୃଂଗାର ଭୂମିରୁ ଉତ୍ପନ୍ନ ଯାବତୀୟ ରସବୋଧ । ରସ ହେଉଛି ଆସାଦ୍ୟ ବସ୍ତୁ । ରସବୀଜରୁ କାବ୍ୟର ଉତ୍ପତ୍ତି; ପରିସମାପ୍ତିରେ ପୁଣି ସେଇ ରସନାଭୂତିର ଚର୍ବଣା । କାବ୍ୟର ଆଦି ଅନ୍ତ– ସର୍ବତ୍ର ରସର ପ୍ରବାହ ଯଦି ସ୍ୱାଭାବିକ ଓ ସ୍ୱଚ୍ଛଳ ତେବେ ସିନା କାବ୍ୟର ମର୍ଯ୍ୟାଦା ।

ରସ ପୁଷ୍ଟି ଲାଗି ଉଣାଧିକେ ଲୋଡ଼ା କବି ବଚନ ଚାତୁରୀ । କବି ବିଷ୍ଣୁ ଦାସ ଏଇ ପରଂପରାର ଅନୁଗାମୀ– ବହୁଳ ବର୍ଣ୍ଣନା ପରିବର୍ତ୍ତେ ପରିମିତ ଅଭିବ୍ୟକ୍ତି ପ୍ରତି ସେ ସଚେତନ ! ତାଂକର ବକ୍ତବ୍ୟ ହେଉଛି– 'ବହୁଳ ଭାବରୁ ତିନିଛନ୍ଦ କଲିଗୁଣ / କବି ବଚନ ଚାତୁରୀ ପରଂପରା ଗୁଣ (ପ୍ରେମଲୋଚନା– ୭ମ / ୧୦ ପଦ) ବସନ୍ତ ବର୍ଣ୍ଣନାକୁ କବି ଅଳ୍ପରେ ପ୍ରକାଶ କରିଛନ୍ତି, ଏଥିପାଇଁ ଅବଲମ୍ବନ ହେଉଛି, ବଚନଚାତୁରୀ ଅଭିବ୍ୟକ୍ତିରେ ଚାତୁରୀ ଓ ସଂକ୍ଷିପ୍ତି ହିଁ କବି ପରମ୍ପରା ବୋଲି ବିଷ୍ଣୁ ଦାସଙ୍କ ବିଶ୍ୱାସ ।

ଏହି ବିଶ୍ୱାସ ପରବର୍ତ୍ତୀ କାଳର ବହୁ କାବ୍ୟକାରଙ୍କ କାବ୍ୟ ଗଠନ କଳାର ମୂଳସୂତ୍ର ରୂପେ ଗୃହୀତ ହୋଇଥିଲା; ବଚନ / ଚାତୁରୀକୁ ପ୍ରଧାନ ଅବଲମ୍ବନ କରି ସଂସ୍କୃତ କାବ୍ୟ କୌଶଳର ବିବିଧ ଲକ୍ଷଣକୁ ଓଡ଼ିଆ କାବ୍ୟରୀତିରେ ପ୍ରୟୋଗ କରିବାର ଚେଷ୍ଟା ପ୍ରାଚୀନ କବିକୁଳ ପ୍ରାୟ କରିଥିଲେ । ରସ, ରୀତି, ଧ୍ୱନି, ବକ୍ରୋକ୍ତି ଓ ଅଳଙ୍କାର ଇତ୍ୟାଦିର ପ୍ରୟୋଗ ପରୀକ୍ଷା କବିମାନଙ୍କର ଇଚ୍ଛା ମତେ ପ୍ରାଚୀନ କାବ୍ୟକୃତିରେ କରାଯାଉଥିଲା । ଭାରତୀୟ କାବ୍ୟତତ୍ତ୍ୱର ବିଭିନ୍ନ ବିଭାଗ ପ୍ରତି ଏପରି ଆନୁଗତ୍ୟ ମୂଳରେ ଥିଲା ବ୍ୟୁତ୍ପତ୍ତିପ୍ରାଣ କବି ମନର ତତ୍ପରତା । କବିତାର ସ୍ୱାଭାବିକ ନିଃସରତା ଅପେକ୍ଷା ଗଠନ କାରୁତାର ବନ୍ଧନରେ କବିତାକୁ ବାନ୍ଧିବାର ପ୍ରଯତ୍ନପ୍ରାୟତା ବଢ଼ିଯାଇଥିଲା । ଏହି କାରଣରୁ ଅଳଙ୍କାରିକ କାବ୍ୟଧାରାର ପ୍ରସାର କାବ୍ୟକାରମାନଙ୍କ ଲେଖନୀରେ ଷୋଡ଼ଶ ଶତାବ୍ଦୀରୁ ଉନବିଂଶ ଶତାବ୍ଦୀର ପୂର୍ବାର୍ଦ୍ଧ ପର୍ଯ୍ୟନ୍ତ ନିର୍ବାଧରେ ସଙ୍ଘଟିତ ହୋଇଥିଲା । ଏଥିରୁ ସ୍ପଷ୍ଟ ସୂଚନା ମିଳେ ଯେ ପ୍ରାଚୀନ ଓଡ଼ିଆ କାବ୍ୟ କୌଶଳ କହିଲେ ସଂସ୍କୃତ କାବ୍ୟ କୌଶଳର ପ୍ରତିରୂପକୁ ହିଁ ବୁଝାଏ । ତେବେ ଓଡ଼ିଆ କବିଗଣ ସଂସ୍କୃତ କାବ୍ୟତତ୍ତ୍ୱର ଅନୁସରଣ ସତ୍ତ୍ୱେ ନିଜସ୍ୱ କାବ୍ୟତତ୍ତ୍ୱ ସୃଷ୍ଟିଲାଗି କୌଣସି ସ୍ୱତନ୍ତ୍ର ଆଭିମୁଖ୍ୟ ପୋଷଣ କରିନଥିଲେ କି ?



---

° କବି ବିଷ୍ଣୁ ଦାସ– ପ୍ରେମ ଲୋଚନା-୧ମ ଛନ୍ଦ / ୭ ଓ ୯ ପଦ ।

Digitized by srujanika@gmail.com

# ଜୀବନ-ସତ୍ୟ ଓ କାବ୍ୟ-ସତ୍ୟ

ଜୀବନ ସହିତ କାବ୍ୟର ସଂପର୍କ ଅତି ଗଭୀର, ଯେପରି ପୂର୍ଣ୍ଣ ଏକ ବ୍ୟକ୍ତିତ୍ୱକୁ ଘେନି ଜୀବନ, ସେହିପରି କାବ୍ୟ । କାବ୍ୟଠାରେ ସଜୀବ ସତ୍ତାର ବିଦ୍ୟମାନତା ହେତୁ ଏହାକୁ କୁହାଯାଏ ବାଙ୍‌ମୟ ପୁରୁଷ ବା କାବ୍ୟ-ପୁରୁଷ । ରକ୍ତମାଂସର ମଣିଷ ଆପଣାର ଅସ୍ତିତ୍ୱରେ ଚାରୋଟି ଅପରିହାର୍ଯ୍ୟ ବସ୍ତୁର ସମାବେଶ ଦେଖେ, ତାହା ହେଉଛି – ଦେହ, ପ୍ରାଣ, ମନ, ଆତ୍ମା । ସ୍ଥୂଳ ଶରୀର, ଅଙ୍ଗପ୍ରତ୍ୟଙ୍ଗ, ମେଦ, ପ୍ରଭୃତି ଜଡ଼ ଉପକରଣକୁ ନେଇ ଦେହ, ସର୍ବାଙ୍ଗ ଶରୀରରେ ପ୍ରବାହିତ ଜୀବନୀଶକ୍ତି ଯାହାକି ଜଡ଼କୁ ସଜୀବ କରେ, ଅଙ୍ଗପ୍ରତ୍ୟଙ୍ଗକୁ ସଚଳ କରେ, ତାହା ପ୍ରାଣ; ଯିଏ ଚିନ୍ତାରୂପରେ, ବିଜ୍ଞାନ ରୂପରେ ଜୀବନୀ ଶକ୍ତିର ଚକ୍ଷୁ ହୋଇ ମଣିଷକୁ ପଥ ଦେଖାଉଛି, ଲକ୍ଷ୍ୟସାରୀ କରୁଛି, ଉଦ୍ଦେଶ୍ୟକୁ ପ୍ରକଟ କରୁଛି, ସିଏ ହେଲା ମନ ଏବଂ ଅନ୍ତରର ଗହନ ସ୍ଥଳରେ ସ୍ଥିତି, ସେଇ ଅଦୃଶ୍ୟ ବସ୍ତୁ ଯାହାଙ୍କ ସବୁଥିର ମୂଳସୂତ୍ର, ଯାହାକୁ ଧରି ଘୂରୁଛି ଦେହ ମନ ଓ ପ୍ରାଣ, ସର୍ବୋପରି ଯାହାର ନିଗୁଢ଼ ଚେତନାକୁ ପରିସ୍ଫୁଟ କରିବା ହେଉଛି ଦେହ, ମନ, ପ୍ରାଣର କର୍ମ ଓ ଧର୍ମ– ତାହାହିଁ ଆତ୍ମା । ଏଇ ଚାରୋଟି ମୂଳ ଅବଲମ୍ବନକୁ ଆଧାର କରି ଜୀବନର ସ୍ଥିତି ବା ମଣିଷର ସମଗ୍ର ସତ୍ତା । ମଣିଷ ତୁଲ୍ୟ; ମଣିଷର ଅଭିବ୍ୟକ୍ତି ଯେଉଁ କାବ୍ୟ, ତାହାର ମଧ୍ୟ ଅଛି ଚାରୋଟି ଅଙ୍ଗ । କାବ୍ୟ ବା କଥା, କାବ୍ୟର ଦେହ, ଛନ୍ଦପ୍ରାଣ, ଅର୍ଥ ହେଉଛି ମନ ଏବଂ ଭାବହିଁ ଏହାର ଆତ୍ମା । ଅର୍ଥ-ଶକ୍ତି, କାବ୍ୟର ମନଶ୍ଚକ୍ଷୁ ଓ ଭାବ ହେଉଛି ଅର୍ଥର ଅନ୍ତରାଳରେ ଥିବା ମୂଲ୍ୟବୋଧ ବା ଉପଲବ୍ଧି-ବୀଜ । ଭାବ ମଧ୍ୟରେ ଅଛି, ଏକ ବିଶେଷ ସତ୍ୟର ରସ-ସ୍ୱରୂପ, ଏକ ଆନନ୍ଦଘନ ଉପଲବ୍ଧିର ସୂକ୍ଷ୍ମ ସତ୍ତା । ଏଇ ବିଶେଷ ସତ୍ୟ ସହିତ, କବିର ମିଳନ ଓ ପୂର୍ବରାଗରୁ କାବ୍ୟର ଜନ୍ମ ଏବଂ କାବ୍ୟରେ ଏହା କାବ୍ୟ-ସତ୍ୟ ଅଭିଧାରେ ପରିଚିତ ।

Digitized by srujanika@gmail.com

କାବ୍ୟ-ସତ୍ୟ ଓ ଜୀବନ-ସତ୍ୟ ଏକା କଥାନୁହେଁ । ଜୀବନ-ସତ୍ୟ ହେଉଛି ତଥ୍ୟଗତ ସତ୍ୟର ସାମଗ୍ରୀ । ତଥ୍ୟଗତ ସତ୍ୟ ଯେତେବେଳେ ଅନୁଭୂତି-ଗତ ସତ୍ୟରେ ପରିଣତ ହୁଏ ଓ ସୁନ୍ଦରତର ହୋଇ କାବ୍ୟରେ ପ୍ରକାଶ ପାଏ, ସେତେବେଳେ ତାହା କାବ୍ୟ-ସତ୍ୟର ମର୍ଯ୍ୟାଦା ଲାଭ କରେ । କାବ୍ୟ-ସତ୍ୟ କହିଲେ ମୋଟ ଉପରେ ବୁଝାଯାଏ, ସମ୍ଭାବ୍ୟ-ସତ୍ୟ, ଆଦର୍ଶ-ସତ୍ୟ ବା ଔଚିତ୍ୟର ସତ୍ୟ । ଏଇ ସତ୍ୟର ଉପଲବ୍ଧି ଜନ୍ମେ ଅନୁଭୂତିର ଗଭୀରତା ଭିତରୁ । ତଥ୍ୟଗତ ସତ୍ୟକୁ ଅନୁଭୂତି ଦେଇ ଉପଲବ୍ଧି କରି ନ ପାରିଲେ ସୁନ୍ଦରତର ସତ୍ୟ ବା ଔଚିତ୍ୟ-ସତ୍ୟର ଇସାରା ପାଇବା ମୁସ୍କିଲ । କଳ୍ପନାରେ ଧରାଦେଉଥିବା ବସ୍ତୁ, ତା'ର ବାସ୍ତବ ସ୍ଥିତି ଥାଉ କି ନ ଥାଉ– କାବ୍ୟ ପାଇଁ ତାହା ହେଉଛି ସତ୍ୟ ।

କାବ୍ୟ ଜିନିଷଟି ଅନୁଭୂତି ଓ କଳ୍ପନାର ବ୍ୟାପାର, ଏଇ ଦୁଇଟିର ମିଶ୍ରଣରେ ଗଠିତ ସତ୍ୟ ହେଉଛି– କାବ୍ୟ-ସତ୍ୟ । କାବ୍ୟ-ସତ୍ୟର ସୀମା ଓ ସମ୍ଭାବନା ଘେନି କାବ୍ୟ ତତ୍ତ୍ୱରେ ଦୁଇଟି ଭିନ୍ନେ ଚିନ୍ତନର ସଙ୍କେତ ମିଳେ । ଆଦର୍ଶବାଦୀ ନନ୍ଦନତତ୍ତ୍ୱ ସ୍ୱୀକାର କରେ ଯେ, କଳା ରାଜ୍ୟରେ ଯାହା ସତ୍ୟ, ବାସ୍ତବ ରାଜ୍ୟର ସତ୍ୟଠାରୁ ତାହା ଭିନ୍ନ । ବାସ୍ତବ ସତ୍ୟର ନିଛକ ଅନୁସରଣ କଳାରେ ଘଟେ ନାହିଁ; ଶିଳ୍ପୀ, ଜୀବନ-ସତ୍ୟର ବନ୍ଧନରୁ ମୁକ୍ତ, ସ୍ୱେଚ୍ଛା-ବିହାରୀ ବିହଙ୍ଗ । ବସ୍ତୁବାଦୀ ସୌନ୍ଦର୍ଯ୍ୟ ତତ୍ତ୍ୱର ଜିଜ୍ଞାସାକୁ ସୂଚନା ମିଳେ ଯେ ଜୀବନ-ସତ୍ୟ ଓ କାବ୍ୟ-ସତ୍ୟ ବୋଲି ସତ୍ୟର କୌଣସି ଜାତିଭେଦ ନାହିଁ, ସତ୍ୟ ହେଉଛି ଏକ ଓ ଏକକ । ଜୀବନ-ସତ୍ୟର କଳାତ୍ମକ ପ୍ରକାଶ ହେଉଛି କାବ୍ୟ-ସତ୍ୟ ।[୨]

ଏହି ଦୁଇଟି ଦୃଷ୍ଟିକୋଣରେ ଭିନ୍ନତା ଅଛି ବୋଲି ଯଦିଓ ଜଣାଯାଉଛି, ତଥାପି ସେମାନେ ଗୋଟିଏ ବିନ୍ଦୁରେ ମିଶି ଯାଇଛନ୍ତି । ତାହା ହେଉଛି– ଅଭିବ୍ୟକ୍ତିରେ କଳାତ୍ମକତା । ଅଭିବ୍ୟକ୍ତିର ଚମତ୍କାରିତା ହିଁ ବାସ୍ତବ ଜୀବନ-ସତ୍ୟକୁ କଳାତ୍ମକ-ସତ୍ୟରେ ରୂପାନ୍ତରିତ କରିଦିଏ । ଏପରି କାରୁ-କରଣି ଏକାନ୍ତ ପ୍ରୟୋଜନ, କାରଣ ସତ୍ୟର ବିସ୍ତୃତି ଏତେ ଅସୀମ ଯେ ତାକୁ କୌଣସି ଭୂମିକାରେ ଥାଇ ଅବବୋଧର ଆୟତ୍ତ ଭିତରକୁ ଆଣିବା ସହୃଦୟ ବା ସାଧାରଣ ମଣିଷ ପକ୍ଷରେ ସହଜ ନୁହେଁ । ଏଥିପାଇଁ ଲୋଡ଼ା ଏକ ସାକାର ମୂର୍ତ୍ତି । ବାସ୍ତବ ଜୀବନ-ସତ୍ୟକୁ ଏଠି କଳା ବା କାବ୍ୟ-ଶକ୍ତି ବଳରେ ପୁନର୍ଗଠିତ କରି ମୂର୍ତ୍ତିମାନ କରାଯାଏ । ସତ୍ୟର ସକଳ ବାସ୍ତବ ସମ୍ଭାବନାକୁ ଘେନି ତାହା ହୁଏ ଜୀବନ-ସତ୍ୟର ପ୍ରତିରୂପ ବା କାବ୍ୟ-ସତ୍ୟ ।

ଏଇ ପ୍ରତିରୂପ ଅଙ୍କନ ପ୍ରକ୍ରିୟାଟିର ଅନ୍ୟନାମ ଅନୁକରଣ । କବି ବା ଶିଳ୍ପୀ ପ୍ରତ୍ୟେକ ବାହ୍ୟ ବସ୍ତୁ-ସମୂହର ଅନୁକାରୀ । ଏମାନଙ୍କର ଅନୁକରଣ, ପ୍ରାଣୀ ବା ବସ୍ତୁସତ୍ତାର ଅବିକଳ ଅନୁକୃତି ନୁହେଁ କି ପ୍ରତିଛାୟା ବି ନୁହେଁ । ବରଂ ଏକ ରୂପାନ୍ତର କିମ୍ବା ନୂତନ ସୃଷ୍ଟିର ସର୍ଜନା । ଭିନ୍ନ ଏକ ଆଧାରରେ ଏହି ବାସ୍ତବ

Digitized by srujanika@gmail.com

ଉପାଦାନ ଗୁଡ଼ିକ ସଂସ୍ଥାପିତ ଏବଂ ନୂତନ ଅବୟବ ଘେନି ସେମାନେ ପ୍ରକାଶିତ । କବିଙ୍କ ବିନ୍ୟାସରୀତିରେ ଏଗୁଡ଼ିକ ଇନ୍ଦ୍ରିୟଗ୍ରାହ୍ୟ ରୂପ ଘେନନ୍ତି । ଏବଂ ତହିଁରୁ ହିଁ ସତ୍ୟର ପ୍ରତୀତି ଜନ୍ମେ । ଏହି କାରଣରୁ ଆମେ ବୁଝିଥାଉଁ ଯେ କାବ୍ୟ-ପ୍ରକାଶରେ ଜୀବନ-ନିର୍ଭରତା ବା ଜୀବନ ପ୍ରତି ଆନୁଗତ୍ୟର ଶେଷ ନାହିଁ । ଜୀବନ ହିଁ ତ କାବ୍ୟର ପ୍ରଧାନ ଉପଜୀବ୍ୟ । ନର୍କରୁ ସ୍ୱର୍ଗ ପର୍ଯ୍ୟନ୍ତ ମାନବାତ୍ମାର ଯେଉଁ ତୀର୍ଥଯାତ୍ରା-ତା'ର ସକଳ ଭାବ-ଲିପି ଏଇ କାବ୍ୟ କଳେବରରେ ହିଁ ସଂଚିତ ହୋଇ ରହିଯାଏ । କଦାଚିତ୍ ଏହାର ବିଲୟ ନାହିଁ ।

ଅନୁକୃତିରୁ ହିଁ ସୂଚନା ମିଳେ ଜୀବନ ସଙ୍ଗେ କାବ୍ୟର ସମ୍ବନ୍ଧ କେତେ ଘନିଷ୍ଠ; ଉଭୟ ନିତ୍ୟ ସମ୍ବନ୍ଧଯୁକ୍ତ । କାବ୍ୟରେ ତିନି ପ୍ରକାର ଅନୁକରଣ ଲକ୍ଷିତ ହୁଏ । ବିବିଧ ଦୃଶ୍ୟ ଓ ବାତାବରଣର ବର୍ଣ୍ଣନା, ଯେଉଁଠିକି କବି, ମାତ୍ର ଜଣେ ଉପଭୋଗୀ ଦ୍ରଷ୍ଟାର ଭୂମିକାରେ ନିଜକୁ ସ୍ଥାପନ କରି ପ୍ରାକୃତିକୁ ରୂପାୟିତ କରନ୍ତି । କିମ୍ବା ନିଜେ ଆଖ୍ୟାନକାରୀ ସାଜି ବୃତ୍ତାନ୍ତ ସବୁ ଚରିତ୍ରମାନଙ୍କର କାର୍ଯ୍ୟକଳାପ ଜରିଆରେ ଉନ୍‌ମୋଚିତ କରି ଦେଉଥାନ୍ତି—ସେପରି ସ୍ଥଳେ ସେ ଭିନ୍ନ ଏକ ଅନୁକରଣ ରୀତି ସଂକେତ ଦିଅନ୍ତି । ପୁନଶ୍ଚ ଯେଉଁଠାରେ ବର୍ଣ୍ଣନା ଓ କବି-କଥନର ମିଶ୍ରଣ ଘଟେ, ତାହା ଅପର ଏକ ଶ୍ରେଣୀର ଅନୁକରଣକୁ ଚିହ୍ନିତ କରେ । ଏହି ଅନୁକରଣ ପ୍ରକ୍ରିୟାସବୁ ଅବିକଳ ପ୍ରତିବିମ୍ବନଠାରୁ ଉର୍ଦ୍ଧ୍ୱତର ସ୍ତରର । କବିର ଅନୁକରଣ ଶକ୍ତି ବାହ୍ୟ—ରୂପଜଗତ ସମେତ ମଣିଷର ଚରିତ୍ର, କ୍ରିୟା-ପ୍ରତିକ୍ରିୟା ଏବଂ ଅନ୍ତର୍ଲୋକର ସମ୍ଭାବ୍ୟ ଆଲୋଡ଼ନକୁ କାବ୍ୟାୟିତ କରିଥାଏ । ଅନୁକରଣର ଅର୍ଥ ଯଦି ପ୍ରତ୍ୟକ୍ଷ ପ୍ରତିକୃତି ନିର୍ମାଣ ହୁଏ ତେବେ, ତା'ର ପ୍ରକୃଷ୍ଟ ନିଦର୍ଶନ ଭାସ୍କର୍ଯ୍ୟ ଓ ଚିତ୍ରକଳା, ଏହାର ଅର୍ଥ ଯଦି ଆତ୍ମଗତ ଅନୁଭୂତି ଓ କ୍ରିୟାର ପ୍ରକାଶ ହୁଏ, ତେବେ ତା'ର ଶ୍ରେଷ୍ଠ ଦୃଷ୍ଟାନ୍ତ ହେଉଛି ସଂଗୀତ । ଏ ଦୁଇଟି ପରସ୍ପରରେ ଅଲଗା, ସତେଯେପରି ଦୁଇ ମେରୁରେ ଦୁହିଁଙ୍କର ସ୍ଥିତି । ମାତ୍ର କାବ୍ୟ ହେଉଛି– ଏଇ ଦୁଇ ଭିନ୍ନଧର୍ମୀ ଶିଳ୍ପ ସତ୍ତାର ସମନ୍ୱୟ ।

କାବ୍ୟରେ ଅଛି, ବାସ୍ତବର ସାଦୃଶ୍ୟ ସଙ୍କେତ, ଘଟଣାର ଚଳମାନ-ଶକ୍ତି, ପ୍ରବୃତ୍ତିର ପ୍ରତିଫଳନ । କାବ୍ୟର ଧର୍ମ ହେଲା, ସାଦୃଶ୍ୟର ସଙ୍କେତ ଦର୍ଶାଇ ଭିନ୍ନ ଉପାଦାନରେ ଜୀବନର ସ୍ୱରୂପ ଉଦ୍‌ଘାଟନ କରିବା । ଏଥିରୁ ଏତିକି ମାତ୍ର ପ୍ରତୀତ ହୁଏ ଯେ, ବାସ୍ତବ ଘଟଣାର ଯଥାର୍ଥ ଅନୁକରଣ ନୁହେଁ, ସମ୍ଭାବ୍ୟ ଘଟଣାର ଅନୁକରଣ ହିଁ କାବ୍ୟର କାମ । ପ୍ରସଙ୍ଗର ଅନୁସଙ୍ଗ ଥାଇ ପ୍ରତୀତିବୋଧର ପ୍ରତ୍ୟୟ ଜନ୍ମିଲେ ସେଥିରେ ସୂଚିତ ହୁଏ ସମ୍ଭାବ୍ୟତାର ପରିଚୟ । ସମ୍ଭବ-ଅସମ୍ଭାବ୍ୟତା ଅପେକ୍ଷା କାବ୍ୟରେ ଅସମ୍ଭବ ସମ୍ଭାବ୍ୟତା ହିଁ ଶ୍ରେୟ । କାରଣ କାବ୍ୟରେ ସତ୍ୟ ଅସତ୍ୟର ବିଚାର ବାସ୍ତବ ଅଭିଜ୍ଞାନର ମାପକାଠିରେ ହୁଏନାହିଁ । କବି ଯଦି ପାଠକ ମନରେ ପ୍ରତୀତି ଜାଗରଣରେ ସମର୍ଥ ହୁଅନ୍ତି, ତେବେ ଜୀବନରେ ଯାହା ଘଟେ ନାହିଁ, ତାହାରି ବର୍ଣ୍ଣନା ପ୍ରତି

Digitized by srujanika@gmail.com

କାବ୍ୟରେ ବିଶ୍ୱାସ ଜନ୍ମିପାରେ । ଏପରି ଅବସ୍ଥାର ସମ୍ଭାବନା କାବ୍ୟ ସୃଷ୍ଟିରେ ଦେଖାଯାଉଥିବାରୁ କାବ୍ୟ-ସତ୍ୟ ଓ ଜୀବନ-ସତ୍ୟର କଥାକୁ କୌଣସି ପ୍ରକାରେ ଏଡ଼େଇ ଦେଇ ହେବ ନାହିଁ ।

ସଂସ୍କୃତ କାବ୍ୟତତ୍ତ୍ୱରେ କାବ୍ୟସତ୍ୟକୁ ବସ୍ତୁସତ୍ୟଠାରୁ ଭିନ୍ନ ବୋଲି କୁହାଯାଇଛି । କାବ୍ୟରେ କଥିତ ବସ୍ତୁ ଗୁଡ଼ିକ ସ୍ୱାଭାବିକ ରୂପରେ ନୁହଁନ୍ତି, 'ପ୍ରତିଭାସ ରୂପ'xରେ ହିଁ ପ୍ରକାଶିତ ହୋଇଥାଆନ୍ତି । କୁଶଳୀ କବିଙ୍କ ଅଭିବ୍ୟକ୍ତି ହିଁ ଯେକୌଣସି ବସ୍ତୁକୁ ସୁଗୁଣ ବା ନିର୍ଗୁଣ ସ୍ୱରୂପ ପ୍ରଦାନ କରିଥାଏ । ଆଚାର୍ଯ୍ୟ ରାଜଶେଖର ଏବଂ ତାଙ୍କର ଧର୍ମପତ୍ନୀ ଅବନ୍ତିସୁନ୍ଦରୀଙ୍କର ଏହି ମତରୁ ସ୍ପଷ୍ଟ ସୂଚନା ମିଳେ ଯେ 'ପ୍ରତିଭାସ ରୂପ' ଅର୍ଥ ହୁଏତ ଅନ୍ୟକିଛି ନୁହେଁ, ତାହା ହେଉଛି କାବ୍ୟ-ସତ୍ୟର ନାମାନ୍ତର ମାତ୍ର । ଅତଏବ ସଂପର୍କ ଦୃଷ୍ଟିରୁ ଦେଖିଲେ କାବ୍ୟ-ସତ୍ୟ ଓ ଜୀବନ-ସତ୍ୟ ଅଭେଦ୍ୟ ନୁହଁନ୍ତି । ଅଥଚ କାବ୍ୟ ବରାବର ଜୀବନକୁ ଅନୁକରଣ କରେ । କାବ୍ୟ-ସ୍ଫୂର୍ତ୍ତି ମୂଳରେ ଅନୁକରଣର ସଂସ୍ଥିତି ହିଁ ଏପରି ସତ୍ୟ ଛାପର କାରଣ ।

ସତ୍ୟର ଛାପ ଲୌକିକ ହେଉ କି କାବ୍ୟିକ ହେଉ ଅନୁକରଣ ସୂତ୍ରରୁ ଆମ ଉପଲବ୍ଧି ଭିତରରୁ ଏହା ପ୍ରବେଶ କରିଥାଏ । ଜୀବନ ଓ କାବ୍ୟର ସଂପର୍କରେ ଦେଖାଯାଉଥିବା ସାରୂପ୍ୟ ଓ ପ୍ରଭେଦ, ନିକଟତ୍ୱ ଓ ଦୂରତ୍ୱ ବୋଧରୁ ବାସ୍ତବ ଜୀବନର ଅନୁଭବ ଏବଂ କାବ୍ୟ-ସଂଜାତ ଅନୁଭବ ଘେନି ନାନାଦି ପ୍ରଶ୍ନ ମନକୁ ଆଚ୍ଛନ୍ନ କରେ । ଆମେ ଉପଲବ୍ଧି କରୁ ଯେ, ବାସ୍ତବ ଜୀବନର କୌଣସି ଦୁଃଖଦାୟକ ଘଟଣା କାବ୍ୟର ବର୍ଣ୍ଣନା ଭୂମିରେ ଆନନ୍ଦ ସଂଚାରକ ହୋଇଯାଏ । ବାସ୍ତବ ବେଦନା ତେବେ କାହିଁକି ଓ କିପରି କାବ୍ୟରେ ଆନନ୍ଦର ପ୍ରେରକ ହୋଇ ଯାଉଛି ? ଏହାର ଏକମାତ୍ର ଉତ୍ତର ହେଲା– କାବ୍ୟିକ ଓ ଲୌକିକ ଅନୁଭବ ଏକପ୍ରକାର ନୁହଁନ୍ତି । ଏମାନଙ୍କର ସ୍ୱଭାବ କିପରି, କାବ୍ୟ ମାନଙ୍କରୁ ତାହାର ପରିଚୟ ମିଳିବ । ଗୋଟିଏ ଦୁଇଟି ଦୃଷ୍ଟାନ୍ତ ଜରିଆରେ କଥାଟିକୁ ଏଠି ସ୍ପଷ୍ଟ କରି ଦିଆଯାଇପାରେ । କବି ଗଙ୍ଗାଧର ତପସ୍ୱିନୀ କାବ୍ୟର ଗୋଟିଏ ସ୍ଥଳରେ ବର୍ଣ୍ଣନା କରିଛନ୍ତି ଯେ, ଭାଗୀରଥି ନଦୀ କୂଳରେ ପରିତ୍ୟକ୍ତା ସୀତା ପରିବେଶ ସମୟ କୋଳରେ ଯେପରି ଆଶ୍ରୟ ଘେନିଛନ୍ତି । ତହିଁରୁ ସୀତାଙ୍କ ପ୍ରତି ନିୟତିର କ୍ରୂର ଅବିଚାର ହିଁ ସୂଚିତ ହୋଇଛି ଏବଂ ଏଇ ଅବିଚାର ଲାଗି ନିୟତି ପ୍ରତି ପରିବେଶ ଅତ୍ୟନ୍ତ ପ୍ରତିକ୍ରିୟାଶୀଳ ହୋଇପଡ଼ିଛି । ଭାଗୀରଥି ତରଙ୍ଗ-ତୋପରେ ସୀନୁକ ଗୁଳିଭରି ନିୟତି କି ପ୍ରହାର କରୁଛି, କମଳ–ସକଳ ପଦ୍ମ-ବ୍ୟୁହ ରଚନା କରି ଅଳି-ଶର ଜରିଆରେ ଯୁଦ୍ଧ କରୁଛନ୍ତି । ବନଫୁଲ ଗୁଡ଼ିକ ବୃନ୍ତ-ଚ୍ୟୁତ ହୋଇ ଭୂମିତଳେ ପଡ଼ି ଧୂଳିମାଖି ମଲ୍ଲଯୁଦ୍ଧରେ ଲିପ୍ତ ଅଛନ୍ତି ଇତ୍ୟାଦି ଘଟଣାମାନ ପରିବେଶରେ ଘଟିଚାଲିଛି । ସମୟଠାରୁ ମଧ କିଛି ପ୍ରତିବାଦ ନାହିଁ ।

Digitized by srujanika@gmail.com

ତେବେ ପ୍ରଶ୍ନଉଠେ, ସମୟ ଓ ପରିବେଶର ତତ୍‌କାଳୀନ ଅବସ୍ଥା ପ୍ରକୃତରେ କ'ଣ ଏପରି ମନୋଭାବ ପ୍ରଦର୍ଶନ କରିଥିଲା ନା କବିଙ୍କର ଅନୁଭବ ହିଁ ଏଇ ପରିବେଶକୁ ଏପରି ରୂପ ଦେଇଥିଲା ? ବାସ୍ତବରେ ପ୍ରତୀତ ହୁଏ ଯେ କବିଙ୍କର କାବ୍ୟିକ ଅନୁଭବ ହିଁ ଏହାର ରୂପାୟନର ହେତୁ । ବନଫୁଲ ବୃନ୍ତଚ୍ୟୁତ ହୋଇ ତଳେ ପଡ଼ିଯିବା କିମ୍ବା ପଦ୍ମସକଳ ପବନ ପ୍ରବାହରେ ଇତସ୍ତତଃ ହୋଇଥିବାରୁ ଅଳିକୁଳ ପଦ୍ମ ନିବାସ ତ୍ୟାଗକରି ଅତ୍ୟନ୍ତ କ୍ଷିପ୍ରଗତିରେ ଉଡ଼ିଯାଇଥିବା ଘଟଣାହିଁ ସତ୍ୟ– ଏହା ହିଁ ଲୌକିକ ବା ବାସ୍ତବ-ସତ୍ୟ-ପ୍ରେରିତ ଅନୁଭବ । କବି କିନ୍ତୁ ତାହାକୁ କଳ୍ପନାତ୍ମକ ଅନୁକରଣ ବଳରେ ହିଁ ନୂଆ କରି ପ୍ରକାଶ କରିଛନ୍ତି । ତେଣୁ ଲୌକିକ ଅନୁଭବ କାବ୍ୟିକ ଅନୁଭବରେ ପରିଣତ ହେଲା ବେଳକୁ ଭିନ୍ନ ହୋଇଯାଇଛି । ବସ୍ତୁତଃ ଅନୁକରଣ ବା ରୂପାନ୍ତରିତ ପ୍ରତିବିମ୍ବନ ଯୋଗୁଁ ଏମାନେ ସମଗୋତ୍ରୀ ଜଣାପଡ଼ନ୍ତି ସତ, ଅଭିନ୍ନ ବୋଧ ହୁଅନ୍ତି ନାହିଁ । ତଥାପି ସକଳ ଭିନ୍ନତା ସତ୍ତ୍ୱେ ଏହାହିଁ ପ୍ରତିପାଦ୍ୟ ସମ୍ବାଦ ଯେ, ଲୌକିକ ବା ଜୀବନ-ସତ୍ୟ ହେଉଛି କାବ୍ୟର ଭିତ୍ତି, ଅନୁକରଣର ଅବଲମ୍ବନ ଘେନି ଏହା କାବ୍ୟ-ସତ୍ୟର ବିଶେଷ ଗୁଣରେ ଗୁଣୀ ହୋଇଥାଏ ।

ବିଦଗ୍ଧ ଭଣିତିଭଙ୍ଗି ନିବେଦ୍ୟଂ ବସ୍ତୁନୋ ରୂପଂ
ନିୟତ ସ୍ୱସବମ୍ ଇତି ଅବନ୍ତି ସୁନ୍ଦରୀ ।
(ଅର୍ଥାତ୍ ବସ୍ତୁର ସତ୍ୟରୂପ କାବ୍ୟରେ ନଥାଏ; ତାହା ପ୍ରତିଭାସ ରୂପମାତ୍ର ।
କବିଙ୍କ ଉକ୍ତିବଳରେ ବସ୍ତୁସଗୁଣ ବା ନିର୍ଗୁଣ ସ୍ୱରୂପ ଘେନେ ।
ରାଜଶେଖର– କାବ୍ୟ ମୀମାଂସା– ନବମ ଅଧ୍ୟାୟ, ଅର୍ଥବ୍ୟାପ୍ତି)

କାବ୍ୟ-ସତ୍ୟର ଇଙ୍ଗିତପୂର୍ଣ୍ଣ ଚମତ୍କାରିତା ବଳରେ ଯେ କୌଣସି କାବ୍ୟ ରଚନା ଉତ୍କୃଷ୍ଟମାନର ଅଧିକାରୀ ହୋଇପାରେ; କିନ୍ତୁ ଏକଥା ସତ ଯେ, ନାନାଦି ଅନୁଭବର ଆଲେଖ୍ୟ ଘେନି ପ୍ରକାଶିତ କାବ୍ୟ କୃତିଟି କବିତ୍ୱ ସ୍ଫୂର୍ତ୍ତିର ବିବିଧ ସୋପାନ ଅତିକ୍ରମ କରି ପରିଣତିରେ ଉପନୀତ ହେଲାବେଳକୁ ତାହାର ସମଗ୍ର-ସତ୍ତା ଯେଉଁ ବ୍ୟକ୍ତିତ୍ୱକୁ ଅଙ୍ଗୀକାର କରି ନେଇଥାଏ, ତାହାହିଁ ହେଉଛି କାବ୍ୟ-ପୁରୁଷ ଏବଂ କାବ୍ୟ ପୁରୁଷର ଜିଜ୍ଞାସାର ସଂକେତ ହେଉଛି କାବ୍ୟ-ସତ୍ୟ । ଏଇ କାବ୍ୟ ପୁରୁଷଟିର ସ୍ରଷ୍ଟା ହେଉଛନ୍ତି– ସମାଧି–ସାଧନା, ପ୍ରତିଭା–ବ୍ୟୁତ୍ପତ୍ତି–ପ୍ରେରଣା କଳ୍ପନା, ସ୍ମୃତି, ସ୍ୱପ୍ନ ଓ ଅନୁକରଣ ଆଦି କବି ମନୀଷାର ବିଭିନ୍ନ ଉପାଦାନ । ଏତେ ଉପାଦାନର ମିଳିତ ଯୋଗରୁ ଜନ୍ମ ଯଦି କାବ୍ୟର, ଏହା ଯଦି ଏତେ ପ୍ରଯତ୍ନ ସାପେକ୍ଷ, ତେବେ ପ୍ରଶ୍ନ ଉଠୁଛି– କେଉଁଥିପାଇଁ ଯୁଗ ଯୁଗ ଧରି କାବ୍ୟ-ପୁରୁଷର ନିରାଜନା ଲାଗି କବିର ନିତ୍ୟ ଆୟୋଜନ ?



---

(ଗୋଧୂଳି-ଶାରଦୀୟ ବିଶେଷାଙ୍କ-୧୯୧୦)

Digitized by srujanika@gmail.com

# କାବ୍ୟ-ପ୍ରୟୋଜନ ଓ ନନ୍ଦନତତ୍ତ୍ୱର କଥା

କାବ୍ୟର ପ୍ରୟୋଜନ ପ୍ରସଙ୍ଗରେ କାବ୍ୟ-ତତ୍ତ୍ୱ, ଆନନ୍ଦକୁ ଯେପରି ମୂଲ୍ୟ ଦେଇଥାଏ ସୌନ୍ଦର୍ଯ୍ୟ ଅବବୋଧ ପ୍ରତି ପ୍ରାୟ ସମଧର୍ମୀ ଧାରଣା ପୋଷଣ କରିଥାଏ । କାବ୍ୟର ଉଦ୍ଦେଶ୍ୟ ଏକପକ୍ଷରେ ଆନନ୍ଦ ବିତରଣ ତ ଅନ୍ୟପକ୍ଷରେ ସୌନ୍ଦର୍ଯ୍ୟାନୁଭୂତି ଜାଗରଣ । ଯେଉଁମାନେ କାବ୍ୟର ଏକ ବିଶିଷ୍ଟ ପ୍ରୟୋଜନ ରୂପେ ସୌନ୍ଦର୍ଯ୍ୟର ଉପଲବ୍ଧିକୁ ଗ୍ରହଣ କରନ୍ତି, ସେମାନେ ମୁଖ୍ୟତଃ କଳାବାଦୀ, ନାନ୍ଦନିକ ମୂଲ୍ୟବୋଧର ନିର୍ବାଧ ପ୍ରକଟ ଓ ସ୍ୱଚ୍ଛନ୍ଦ ପ୍ରବାହ ଉପରେ ସେମାନେ ବିଶେଷ ଦୃଷ୍ଟି ରଖିଥାନ୍ତି । ଏହି ବିଚାରଧାରା ସୌନ୍ଦର୍ଯ୍ୟବାଦୀ ବିଚାରଧାରା ନାମରେ କଥିତ । ଏବଂ ଏହାର ବିକଶିତ ରୂପ ଦେଇଛି ଏସ୍‌ଥେଟିକ୍‌ସ ବା ସୌନ୍ଦର୍ଯ୍ୟତତ୍ତ୍ୱ ।

ପାଶ୍ଚାତ୍ୟ ସାହିତ୍ୟ-ଶାସ୍ତ୍ରରେ ସୌନ୍ଦର୍ଯ୍ୟତତ୍ତ୍ୱ ବିଷୟକ ବିବିଧଚର୍ଚ୍ଚା ରୋମାଣ୍ଟିକ୍ ଭାବ-ବିପ୍ଳବ ସମୟରୁ ପ୍ରାୟ ଆରମ୍ଭ ହୋଇଥିଲା । ଜର୍ମାନୀ ଦାର୍ଶନିକ ବୋମ/ ଗାର୍ଟେନ୍ (Baumgarten) ପ୍ରଥମେ ଏସ୍‌ଥେଟିକ୍‌ସ ଶବ୍ଦଟିର ବ୍ୟବହାର ୧୭୩୫ ସାଲରେ କରିଥିଲେ ଏବଂ ୧୭୫୦ ବେଳକୁ 'ଏସ୍‌ଥେଟିକ୍‌ସ' ନାମକ ଏକ ଗ୍ରନ୍ଥ ମଧ୍ୟ ରଚନା କରିଥିଲେ । ବୋମଗାର୍ଟେନ୍ ଏହି ଶାସ୍ତ୍ରକୁ ସ୍ୱତନ୍ତ୍ର ଶାସ୍ତ୍ର ରୂପେ ବିଚାର କରୁଥିଲେ । ଇନ୍ଦ୍ରିୟ-ଲବ୍ଧ ରୂପର ଚର୍ଚ୍ଚା ତଥା ସୌନ୍ଦର୍ଯ୍ୟର ସ୍ୱରୂପ ନିରୂପଣ, କଳା-ତତ୍ତ୍ୱର ଅବଧାରଣା, ଇତ୍ୟାଦି ହେଉଛି ଏହି ଶାସ୍ତ୍ରର ଆଲୋଚ୍ୟ ବିଷୟ । କାବ୍ୟ ସୃଷ୍ଟିରେ କଳ୍ପନାର ଭୂମିକା କଣ, କାବ୍ୟଜ୍ଞାନାତ୍ମିକା ବ୍ୟାପାରର ସୃଷ୍ଟି କି ଭାବାବେଗର ସୃଷ୍ଟି-ପ୍ରଭୃତି ପ୍ରଶ୍ନର ମୀମାଂସା ଏହି ଶାସ୍ତ୍ରର ଆଧାରରେ କରାଯାଇଥାଏ । ଇତିହାସ ଓ ବିଜ୍ଞାନ ସହିତ କାବ୍ୟର ସମ୍ପର୍କ କିପରି– ଏହା ମଧ୍ୟ 'ଏସ୍‌ଥେଟିକ୍' ମାନଦଣ୍ଡରେ ଆଲୋଚକ-ମାନେ ପ୍ରଥମେ ପ୍ରଥମେ ବିଚାର କରୁଥିଲେ । ମୋଟ ଉପରେ ଶିଳ୍ପୀ, ଲେଖକ ଓ ଦାର୍ଶନିକମାନେ ଯେଉଁ ବିଦ୍ୟାର ଆଶ୍ରୟରେ ଶିଳ୍ପ-କଳାର ସନାତନ ଗୁଣ

Digitized by srujanika@gmail.com

ଏବଂ ମୂଳ-ସତ୍ୟର ନାନାଦି ଦିଗ ବିବେଚନା କରୁଥିଲେ ଇମାନୁଏଲ୍ କାଣ୍ଟ (୧୭୨୪-୧୮୦୪) ସୌନ୍ଦର୍ଯ୍ୟତତ୍ତ୍ୱ ବିଚାର ଅବସରରେ transcedental aestheticsର କଥା ଉଠାଇଥିଲେ । ଏହି ଉପଲବ୍ଧିର ଅବସ୍ଥା ଆସେ ସେତିକିବେଳେ ଯେତେବେଳେ, ବିଷୟ ସଙ୍ଗେ ବିଷୟୀର ସାନ୍ନିଧ ଘଟେ ଏବଂ ବିଷୟୀଠାରେ ବିଷୟର ପ୍ରତୀତି ଉଜ୍ଜ୍ୱଳ ହୋଇଦିଶେ । ଏହାକୁ କୌଣସି ଯୁକ୍ତିର ନିକଷରେ ପରୀକ୍ଷା କରାଯାଇପାରେ ନା । ପ୍ରୟୋଜନ ନିରପେକ୍ଷ ଏହାର ସ୍ଥିତି । ସାଧାରଣ ବାସନା-କାମନାର ଜଗତଠାରୁ ପୃଥକ୍ ଏବଂ କୌଣସି ସଂସ୍କାର ବନ୍ଧନରୁ ମୁକ୍ତ ଏପରି ଏକ ଇଲାକାରେ ସୌନ୍ଦର୍ଯ୍ୟର ସୃଷ୍ଟି ଓ ସଂଚାର ସମ୍ଭବ ହୋଇଥାଏ ।

ମଣିଷ ତିନୋଟି ବୃତ୍ତିଦ୍ୱାରା ଚାଳିତ ହୋଇ ସକଳ କର୍ମରେ ଆତ୍ମ ନିୟୋଗ କରିଥାଏ । ଏହି ବୃତ୍ତିଗୁଡ଼ିକ ହେଲେ ଜ୍ଞାନ ବୃତ୍ତି, ବେଦନା ବୃତ୍ତି ଏବଂ କାମନା ବୃତ୍ତି । ଏଥିଭିତରୁ ଅନୁଭବ ବୃତ୍ତି ହେଉଛି ଶିଳ୍ପ ସୃଷ୍ଟିର ଭିତ୍ତି । ଶିଳ୍ପ ସୃଷ୍ଟିର ଉତ୍‌କୀର୍ଣ୍ଣ ଯେଉଁ ବୋଧ ବା ବସ୍ତୁ ବିନା ପ୍ରୟୋଜନରେ ଆନନ୍ଦ ହୋଇପାରେ ଏବଂ ଯେଉଁ ଆନନ୍ଦ କୌଣସି ଯୁକ୍ତିତର୍କର ଆପେକ୍ଷରେ କଳୁଷିତ ହୁଏ ନାହିଁ– ତାହାହିଁ ବସ୍ତୁତଃ ସୁନ୍ଦର ।

କ୍ୟାଣ୍ଟଙ୍କର ବିଚାରଧାରା ସାମାନ୍ୟ ଅଦଳବଦଳ ସହ ଗୋଟେ (୧୭୪୯-୧୮୩୨), ଶିଲାର (୧୭୫୯-୧୮୦୫) ଶ୍ଳେଗେଲ୍ (୧୭୬୭-୧୮୪୫) ଏବଂ ଶେଲିଙ୍ଗ (୧୭୭୬-୧୮୪୬) ପ୍ରଭୃତି ଜର୍ମାନ ଦାର୍ଶନିକ ଓ କବିମାନଙ୍କ ଅନୁଶୀଳନରେ ପରେ ପରେ ପ୍ରକାଶ ପାଇଥିଲା । କେହି ନୂଆ ଦୃଷ୍ଟିରୁ ପ୍ରଶ୍ନଟିକୁ ବିଚାର କରିଥିଲେ ତ କେହି ପ୍ରଚଳିତ ମତର ଅନୁଗାମୀ ହୋଇ ଆପଣା ବିଚାର ମାତ୍ର ପ୍ରକଟ କରିଥିଲେ । କିନ୍ତୁ ଏ କଥା ସତ ଯେ ସୌନ୍ଦର୍ଯ୍ୟତତ୍ତ୍ୱ ବିଷୟକ ଭାବନାକୁ ଚିନ୍ତାବିତ୍‌ମାନେ ପ୍ରାୟ ଦର୍ଶନ ଓ ମନୋବିଜ୍ଞାନ କ୍ଷେତ୍ରରୁ ହିଁ ଚର୍ଚ୍ଚା କରୁଥିଲେ ।

ଶିଲାର (Schiller) ବିଚାର କରୁଥବଲେ ଯେ, ଶିଳ୍ପ ସୃଷ୍ଟି ଅନ୍ତରାଳରେ ମାନବ ଆତ୍ମାର ଦୁଇଟି ବୃତ୍ତି ନିରବଧି କାର୍ଯ୍ୟ କରୁଥାଏ । ଗୋଟିଏ ହେଉଛି ବିଷୟ ଅଭିମୁଖୀ ଓ ବସ୍ତୁ ଧାରଣ-ପ୍ରୟାସୀ ବୃତ୍ତି, ଅନ୍ୟଟି ରୂପ ଅଭିମୁଖୀ ବା ଭାବ ଧାରଣ ବିଳାସ ବୃତ୍ତି । ଏଇ ଦୁଇ ପ୍ରବୃତ୍ତି ମଧ୍ୟରେ ଐକ୍ୟ ସ୍ଥାପିତ ହେଲେ ସୃଷ୍ଟିର ଫୁଲ ଫୁଟେ । ଯେଉଁ ଶକ୍ତି ବଳରେ ଏପରି ଐକ୍ୟ ବିଧାନ ସଫଳ ହୁଏ ତାହାକୁ କୁହାଯାଏ ଲୀଳାବୃତ୍ତି (Play impulse)ଶିଲାରଙ୍କର ବିଶ୍ଳେଷଣ ଭିତ୍ତିରେ ଶିଳ୍ପ ସୃଷ୍ଟି ବ୍ୟାପାରରେ ଯେଉଁ ମତବାଦଟି ପ୍ରତିଷ୍ଠା ଅର୍ଜନ କରେ, ତାହା ହେଉଛି ଲୀଳାବାଦ (Play theory of Art)। ହାବାର୍ଟ, ସ୍ପେନସାର, ରବୀନ୍ଦ୍ରନାଥ ପ୍ରଭୃତି ସୌନ୍ଦର୍ଯ୍ୟସୃଷ୍ଟି କ୍ଷେତ୍ରରେ ଏହି ମତବାଦକୁ ବିଶେଷ ମୂଲ୍ୟ ଦିଅନ୍ତି ।

Digitized by srujanika@gmail.com

ପ୍ରୟୋଜନ ନିରପେକ୍ଷ ସୌନ୍ଦର୍ଯ୍ୟ ସୃଷ୍ଟି ହେଉଛି ଶିଳ୍ପ-ସୃଷ୍ଟିର ମୂଳ, ଏହା ଶିଲାର ସ୍ୱୀକାର କରନ୍ତି । ଏ କ୍ଷେତ୍ରରେ ଶିଳ୍ପ-ତତ୍ତ୍ୱର ପରିସୀମାରେ ସୌନ୍ଦର୍ଯ୍ୟକୁ ହିଁ ମୂଲ୍ୟ ଦିଆଯାଇଛି । ସୌନ୍ଦର୍ଯ୍ୟର ପ୍ରକାଶ ବିନା ଶିଳ୍ପର ମୂଲ୍ୟ ନଗଣ୍ୟ ବୋଲି ଧାରଣାଟି ଏଠି ବିଶେଷଭାବେ କାର୍ଯ୍ୟ କରୁଥିବା ମନେ ହେଉଛି । ଜଣା ଯାଉଛି ଶିଳ୍ପ-ତତ୍ତ୍ୱର ପ୍ରତିଷ୍ଠା ଏବଂ ବିଶେଷତ୍ୱ ମୁଖ୍ୟତଃ ସୌନ୍ଦର୍ଯ୍ୟ-ପ୍ରକାଶର ବିଚାର ଉପରେ ନିର୍ଭର କରେ । ଏଣୁ ଏହାଙ୍କ ଧାରଣାରେ ସୌନ୍ଦର୍ଯ୍ୟ-ପ୍ରକାଶ ପ୍ରସଙ୍ଗରେ ନାନାଦି ଚର୍ଚ୍ଚା ହେଉଛି ଶିଳ୍ପ-ତତ୍ତ୍ୱର ଏକ ଅଂଶ ବିଶେଷ ।

ମାତ୍ର ଶେଲିଙ୍ଗ (Schelling)ସୌନ୍ଦର୍ଯ୍ୟତତ୍ତ୍ୱ ଓ ଶିଳ୍ପତତ୍ତ୍ୱକୁ ଏକା ବିଷୟ ବୋଲି ବିଚାରୁଥିଲେ । ଯାବତୀୟ ଶିଳ୍ପ ବିଦ୍ୟାର ମୌଳିକ ଧାରଣା ଏହି ସୌନ୍ଦର୍ଯ୍ୟ-ତତ୍ତ୍ୱରୁ ହିଁ ଜନ୍ମିଥାଏ । ସ୍ଥାପତ୍ୟ, ଭାସ୍କର୍ଯ୍ୟ, ଏମାନେ ପ୍ରତ୍ୟେକ ସୌନ୍ଦର୍ଯ୍ୟର ଗୋଟିଏ ଗୋଟିଏ ଅଭିବ୍ୟକ୍ତି । ସାମାନ୍ୟ ଜରିଆରେ ବିଶେଷ-ସତ୍ତାକୁ ପ୍ରକାଶ କରିବା ଏମାନଙ୍କର ଲକ୍ଷ୍ୟ, ବିଶେଷସତ୍ତାର ସୂକ୍ଷ୍ମ ସ୍ୱରୂପ ହେଉଛି ପରମସତ୍ତା (The Absolute) । ଶିଳ୍ପ ଓ ଦର୍ଶନ– ଉଭୟ ପରମସତ୍ତାକୁ ପ୍ରକାଶ କରନ୍ତି । କିନ୍ତୁ ଦୁହିଁଙ୍କ ପ୍ରକାଶର ପଥ ଭିନ୍ନ । ତତ୍ତ୍ୱ ବା Idea ଆକାରରେ ଦର୍ଶନ ପରମ ସତ୍ତାକୁ ପ୍ରକାଶ କରେ । ରୂପ-କଳ୍ପନା ମାଧ୍ୟମରେ ଶିଳ୍ପ ପରମ ସତ୍ତାକୁ ବ୍ୟକ୍ତ କରେ । ରୂପ-କଳ୍ପନା ଅନ୍ତର୍ବେଦୀରେ ଚିନ୍ତାର ପ୍ରତିମୂର୍ତ୍ତି ବିରାଜମାନ । ଏଣୁ ସୌନ୍ଦର୍ଯ୍ୟ ବୋଇଲେ କଳ୍ପନା ଓ ଚିନ୍ତାର ଅଭିବ୍ୟକ୍ତିକୁ ହିଁ ବୁଝାଏ ।

ସୌନ୍ଦର୍ଯ୍ୟ ହେଉଛି ସତ୍ୟର ଇନ୍ଦ୍ରିୟ ଗ୍ରାହ୍ୟ ରୂପ । ଯାହା ସାର୍ବଜନୀନ ଚିନ୍ତା ସ୍ୱରୂପରେ ପ୍ରତିଭାତ ହୋଇପାରେ, ତାହା ସତ୍ୟ । ଅତଏବ ଯେତେବେଳେ ସାର୍ବଜନୀନ ଚିନ୍ତା ପରିଛିନ୍ନ ଭାବେ ଏକ ଅସ୍ତିତ୍ୱ ଘେନି ଉଭା ହୁଏ, ରୂପ ଭିତରେ ପ୍ରତ୍ୟକ୍ଷ ଦୃଷ୍ଟିଗୋଚର ହୁଏ, ସେତେବେଳେ ତାହା କେବଳ ସତ୍ୟ ହୋଇ ରହେ ନାହିଁ, ସୁନ୍ଦର ହୋଇଯାଏ । ଏକ ଉଦାହରଣ ଜରିଆରେ କଥାଟିକୁ ସ୍ପଷ୍ଟ କରି ବୁଝାଇ ଦିଆଯାଇ ପାରେ । କବି ରାଧାନାଥଙ୍କର 'ଚନ୍ଦ୍ରଭାଗା' କାବ୍ୟର ଗୋଟିଏ ଛତ୍ରରେ ବର୍ଣ୍ଣନା କରାଯାଇଛି ଯେ, ଚନ୍ଦ୍ରଭାଗା ସାଗର ଗର୍ଭରେ ଆପଣାକୁ ମିଶେଇ ଦେଇଛି, ସେପରି ପ୍ରଭାତୀ ତାରା ରବି କିରଣରେ, ଜୀବାତ୍ମା ବିଶ୍ୱାତ୍ମାରେ, ଚପଳା ଜଳଦ ଅଙ୍ଗରେ ନିଜକୁ ମିଶାଇ ଦିଅନ୍ତି । ଏହି ଉପଲକ୍ଷ୍ୟ ଗୁଡ଼ିକ ସାର୍ବଜନୀନ ସତ୍ୟ, ଏହାକୁ ଭିତ୍ତିକରି କବି ସାଗର ଗର୍ଭରେ ଚନ୍ଦ୍ରଭାଗାର ଆତ୍ମ ସମର୍ପଣ ଘଟଣାକୁ ଏଇ ଇନ୍ଦ୍ରିୟଗ୍ରାହ୍ୟ ରୂପର ଆଭାସରେ ଆମକୁ ପ୍ରତ୍ୟକ୍ଷ ଗୋଚର କରାଇଛନ୍ତି । ତାହା ସତ୍ୟର ସୀମା ଡେଇଁ, ସୁନ୍ଦରର ଇଲାକାରେ ମୂର୍ତ୍ତିମାନ ହୋଇ ଉଠିଛି । ଏ ଦିଗରୁ

Digitized by srujanika@gmail.com

ବିଚାରିଲେ, ସୁନ୍ଦରର ସଂଜ୍ଞା ହେବ ସତ୍ୟ ବା ସାର୍ବଜନୀନ ଭାବର ଇନ୍ଦ୍ରିୟଗ୍ରାହ୍ୟରୂପ । ହେଗେଲଙ୍କର ଏସ୍‌ଥେଟିକ୍‌ସରେ ଏଇ ବିଚାରଧାରା ପ୍ରକଟିତ । ତାଙ୍କ ବକ୍ତବ୍ୟର ମର୍ମ ହେଉଛି– Truth is Idea ଏବଂ ସୌନ୍ଦର୍ଯ୍ୟ ବା Beauty is the sensible appearance of the idea, ଏଣୁ ସତ୍ୟ ଓ ସୁନ୍ଦର ଏକା ସୂତ୍ରରେ ବନ୍ଧା ଓ ପରସ୍ପରରେ ' ନିର୍ଭରଶୀଳ ।

ତେବେ ପ୍ରଶ୍ନହେଉଛି ଏପରି ବିଚାର-ବିମର୍ଶର ଅବତାରଣା କାହିଁକି ? ଏହା କେଉଁ ଗୁଣରେ ଆମର ମୂଳ ସମସ୍ୟା–କାବ୍ୟ-ପ୍ରୟୋଜନ ବ୍ୟାପାରରେ ସୌନ୍ଦର୍ଯ୍ୟ ବାଦୀ ବିଚାରଧାରାକୁ ଆଲୋକିତ କରୁଛି ? ଏ ସଂପର୍କରେ ଏତିକି କହିଲେ ଯଥେଷ୍ଟ ହେବ ଯେ, –ଆର୍ଟ ବା ଶିଳ୍ପ-ସୃଷ୍ଟି କ୍ଷେତ୍ରରେ ସୌନ୍ଦର୍ଯ୍ୟର ଭିତ୍ତି କଣ, ଏହା କିପରି ଅନ୍ୟାନ୍ୟ ଭାବନା-ବସ୍ତୁ ସହିତ ସମ୍ବନ୍ଧଯୁକ୍ତ- ଇତ୍ୟାଦି ଉପଯୋଗ । ପ୍ରସଙ୍ଗକୁ ସୂଚାଇ ଦେଇ ମୂଳ କଥାଟିକୁ ଆଲୋଚନା କରିବା ସହଜ ଓ ସୁବୋଧ ହେବ ଭାବି ଏପରି କରାଯାଇଛି ।

ଆଲୋଚନା ଅବସରରେ ଆମେ ଲକ୍ଷ୍ୟ କରିଛୁଁ ଯେ, କାବ୍ୟର ମୌଳିକ ଉଦ୍ଦେଶ୍ୟ ହେଉଛି ସୌନ୍ଦର୍ଯ୍ୟ ସୃଷ୍ଟି । ସୌନ୍ଦର୍ଯ୍ୟହିଁ ସତ୍ୟ । ପରମ ସତ୍ୟର ସାକାର ରୂପ, ସୁନ୍ଦର-ପ୍ରକାଶ ଜରିଆରେ ପ୍ରତ୍ୟକ୍ଷ କରାଯାଇପାରେ । ବସ୍ତୁରୂପର ଅତୀତର କୌଣସି ସତ୍ତାକୁ ସୌନ୍ଦର୍ଯ୍ୟ ସ୍ପର୍ଶରେ ବା ପରିକଳ୍ପନା ବଳରେ ମୂର୍ତ୍ତିମାନ କରାଯାଇପାରେ । ସାଧାରଣତଃ ଯାହା ଆମ ମନରେ ମହତ ଆବେଗ ସଂଚାର କରେ, ଆମେ ତାକୁ ସୁନ୍ଦର ବୋଲି ଗ୍ରହଣ କରୁଁ । କାବ୍ୟରୁ ସାହିତ୍ୟର ଧର୍ମହେଲା, ମଣିଷ ପାଇଁ ମହତ ଚେତନା ପ୍ରକାଶ କରିବା । ଏହା ସମ୍ଭବ ହୁଏ ସୌନ୍ଦର୍ଯ୍ୟ ସୃଷ୍ଟି ଦ୍ୱାରା । ତେଣୁ ସୌନ୍ଦର୍ଯ୍ୟ ଉପଲବ୍ଧି ପାଇଁ ହିଁ କାବ୍ୟର ପ୍ରୟୋଜନ ।

ଏଇ ସୌନ୍ଦର୍ଯ୍ୟ ଭାବନା ହେଉଛି ମନୁଷ୍ୟତ୍ୱର ଏକ ଅଙ୍ଗ ବିଶେଷ । ମଣିଷ ମାତ୍ରେ ସୌନ୍ଦର୍ଯ୍ୟ ପିପାସୀ । କବି ହେଉଛନ୍ତି ଯଥାର୍ଥରେ ସୌନ୍ଦର୍ଯ୍ୟ-ମଧୁ ଅନ୍ୱେଷଣରେ ସଦା ରତ ଏକ ମଧୁଲିଟ । ତାଙ୍କର କାବ୍ୟ ସୂକ୍ଷ୍ମ ହେଉ ବା ସ୍ଥୂଳ ହେଉ ଯେ କୌଣସି ସୌନ୍ଦର୍ଯ୍ୟ ବୋଧ ଜାଗରଣର ନିମିତ୍ତ ହୋଇଥାଏ । ମଣିଷର ମନ ଏଥିରୁ ଯାହା ଧରି ରଖିବାକୁ ଚାହେଁ, ଯାହା ଲାଭ କରି ଆନନ୍ଦ ଅନୁଭବ କରେ, ଯାହାକୁ ଭୋଗ କରି ତୃପ୍ତି ବୋଧକରେ ତାହାହିଁ ସୁନ୍ଦର । ଏହା ଇନ୍ଦ୍ରିୟଗ୍ରାହ୍ୟ ସ୍ଥୂଳ ବସ୍ତୁବିଶେଷ ହୋଇପାରେ କିମ୍ବା ହୃଦୟଭେଦୀ ସୂକ୍ଷ୍ମବୃତ୍ତିର ପ୍ରକାଶ ବି ହୋଇପାରେ । କାବ୍ୟ ବା ସାହିତ୍ୟରେ ମାନବୀୟ ହୃଦୟବୃତ୍ତିର ଅଭିବ୍ୟକ୍ତି ଏକ ଦିଗରେ ଆତ୍ମପୁଷ୍ଟି ଓ ଅନ୍ୟଦିଗରେ ସମାଜ ପୁଷ୍ଟିର ସହାୟକ ହୋଇଥାଏ । ସମାଜ ପୁଷ୍ଟିକୁ କ୍ଷିପ୍ରତର ଓ ବହୁଗୁଣିତ କରୁଥିବା ବୃତ୍ତି ସମୂହ ଯଥା ଦୟା, ମମତା, ସ୍ନେହ ପ୍ରତ୍ୟୟ ଇତ୍ୟାଦି ଯେତେ ଅଧିକ

Digitized by srujanika@gmail.com

ପରିମାଣରେ ମାନବ ଚିତ୍ତରେ ପ୍ରକାଶପାଏ, ସମାଜର କଲ୍ୟାଣ ସେହି ପରିମାଣରେ ଅଧିକ ସାଧିତ ହୁଏ । ଯାହା ଅନେକଙ୍କ ମନରେ ସମାନ ସଂବେଦନା ସଂଚାର କରି ମନ ମନକୁ ଏକ କରିଦିଏ, ଜୀବନରେ ଭରସା ଭରିଦିଏ ପ୍ରତିକୂଳ ପ୍ରାକୃତିକ ଶକ୍ତିର ସମ୍ମୁଖରେ ଆତ୍ମାର ପରାଜୟକୁ ପ୍ରତିରୋଧ କରେ, ଏବଂ ପରାର୍ଥ-ପ୍ରବଣ ବୃତ୍ତି ସମୂହକୁ ଯିଏ ଜାଗ୍ରତ ଓ ଉତ୍ତେଜିତ କରି ସମାଜ-ଜୀବନକୁ ଅଗ୍ରସର କରାଏ ତାହା ସକଳ ଦିଗରୁ ଅତ୍ୟନ୍ତ ସୁନ୍ଦର ।

ଏ ଦୃଷ୍ଟିରୁ ବୁଝିଲେ ଜୀବନ ରକ୍ଷା ସହିତ ସୌନ୍ଦର୍ଯ୍ୟର ସମ୍ବନ୍ଧ ସମାଜ-ଜୀବନର ରୁଚି ବର୍ଦ୍ଧନ ସହିତ ଏହାର ସମ୍ବନ୍ଧ । ଏପରି ସଂପର୍କକୁ ବ୍ୟବହାରିକ ଇଉଟିଲିଟି ବା ଲାଭକ୍ଷତିର ନିକଷରେ କଳନା କରିହେବ ନାହିଁ । ପଣ୍ୟଜୀବୀ ପକ୍ଷରେ ଇଉଟିଲିଟିର ଅର୍ଥ ଯାହା କାବ୍ୟାମୋଦୀ କତିରେ ତାହାର ମୂଲ୍ୟ ଭିନ୍ନ । ରାଧାନାଥଙ୍କ କାବ୍ୟ କିମ୍ବା ଓଭିଡ୍‌ଙ୍କର ମେଟାମରଫୋସିସ୍ ପଢ଼ି ଆମେ କି ଇଉଟିଲିଟି ପାଉଁ ? ଏହାର ଏକମାତ୍ର ଉତ୍ତର ହେଉଛି– କବିଙ୍କର କାବ୍ୟ ପାଠ କଲାରୁ ଆମେ ପାଉଁ ସୌନ୍ଦର୍ଯ୍ୟାନୁଭୂତି ଏବଂ ତହିଁରୁ ଘଟେ ଚିତ୍ତଶୁଦ୍ଧି । ପୁଣି ସେଇ ସୌନ୍ଦର୍ଯ୍ୟ ଦିଏ ବାସନାହୀନ ଆନନ୍ଦ ଓ ତହିଁରୁ ଜନ୍ମେ ପବିତ୍ରତାବୋଧ ଓ ଅମୃତର ମାଦକତା । ଏହି ମର୍ମରେ ସୌନ୍ଦର୍ଯ୍ୟର ବିଶେଷତ୍ୱକୁ ମାନ୍ୟତା ଦେଇ କବି ବୈକୁଣ୍ଠନାଥ ପଟ୍ଟନାୟକ ବିୟେତ୍ରିଶ କବିତାରେ ସୂଚାଇଛନ୍ତି ଯେ,–

ରୂପ କଷଟିରେ ପ୍ରାଣ ପରଖିଲେ ଥରେ,  
ଅମୃତର ମାଦକତା ସ୍ଫୁରେ ମରମରେ ।  
ରୂପ ପ୍ରୀତି ଜୀବନର ପରମ ଗୌରବ,  
ଜୀବନ ମରୁରେ ରଚେ ନିତ୍ୟ ମହୋତ୍ସବ ।''

ଅତଏବ କବିତା- ରାଜ୍ୟରେ ସୌନ୍ଦର୍ଯ୍ୟର ରାଜପଣ ସାର୍ବଭୌମ । ସୂକ୍ଷ୍ମ ସୌନ୍ଦର୍ଯ୍ୟର ସୃଷ୍ଟି ହେଉଛି କାବ୍ୟ-କବିତା ବା ଆର୍ଟର ପ୍ରଧାନ ଅବଲମ୍ବନ ବିଷୟ । ଏଇଥିପାଇଁ ବାସ୍ତବ– ଜୀବନରେ ଯାହା ତୁଚ୍ଛ ଦିଶୁଥାଏ, କାବ୍ୟ ବା ଶିଳ୍ପ-କଳା ତାକୁ ମହିମା ମଣ୍ଡିତ କରିଦିଏ । ଯାହା ବାସ୍ତବ ଆଖିରେ କୁତ୍ସିତ ଓ ନୈତିକ ଅର୍ଥରେ ଭଲ ନୁହେଁ ବୋଲି ଜଣା ଯାଉଥାଏ, ତାହା କବିଙ୍କ କବିତାରେ ଅକ୍ଷରରେ ସୁନ୍ଦର ସୁରୁଚିଦୀପ୍ତ ହୋଇଥାଏ ନଚେତ୍ କବି ରାଧାନାଥଙ୍କର ଚିଲିକା କିମ୍ବା ପାର୍ବତୀ କିପରି କାଳଜୟୀ କାବ୍ୟ-କୃତିର ଗୌରବ ପାଇଥାନ୍ତା ।

କବିର କାର୍ଯ୍ୟ ହେଉଛି ସ୍ୱଭାବ ବା ପ୍ରକୃତିକୁ ସୁନ୍ଦରତର କରି ପ୍ରକାଶ କରିବା । ବାସ୍ତବକୁ ରମଣୀୟ ଓ ଆଦର୍ଶାୟିତ କରି ତୋଳିବା । ଏ କ୍ଷେତ୍ରରେ ଦୁଇଟି ବିଷୟର ସମ୍ଭାବନା ମନକୁ ଛୁଉଁଛି– ଆଦର୍ଶାୟିତ ବାସ୍ତବ (Hature Idealised) ଏବଂ

Digitized by srujanika@gmail.com

ସୁବିନ୍ୟସ୍ତ ବାସ୍ତବ (Nature methodised) ସ୍ୱଭାବର ଆଦର୍ଶାୟନ ବଳରେ ଯେଉଁ ଆଦର୍ଶର ପ୍ରତିଷ୍ଠା ହୁଏ, ତାହାର ଅନ୍ୟ ନାମ ସତ୍ୟ, ଏହା ମଧ୍ୟ ଔଚିତ୍ୟକୁ ବୁଝାଇପାରେ । କିନ୍ତୁ ସତ୍ୟକୁ ବୁଝିବାର ଉପାୟ ହେଉଛି ସୌନ୍ଦର୍ଯ୍ୟ । ତେଣୁ ଅଦର୍ଶାୟିତ ବାସ୍ତବର ଉପଲବ୍ଧି ଓ ଅନୁସରଣ ପାଇଁ ଲୋଡ଼ା ସୌନ୍ଦର୍ଯ୍ୟର ଅବଲମ୍ବନ ।

ତେବେ ପ୍ରଶ୍ନ ହେଉଛି–ଏଇ ଆଦର୍ଶାୟିତ ବାସ୍ତବର ଜନ୍ମ କିପରି ଓ କେଉଁଠି ହୁଏ ? କବିର ଦୃଷ୍ଟିରୁ ଏହାର ଜନ୍ମ, ହୃଦୟରେ ଏହାର ବିନ୍ୟାସ । ଆଖି ଦେଖା ସାମଗ୍ରୀକୁ ମନର ସାମଗ୍ରୀରେ ପରିଣତ କରିବାକୁ କୁହାଯାଏ ବାସ୍ତବର ଆଦର୍ଶାୟନ ବା ଆଦର୍ଶାୟିତ ବାସ୍ତବତା । ସାଧାରଣରେ ବାସ୍ତବକୁ ଆଖି ଦେଇ ସମସ୍ତେ ଦେଖନ୍ତି, କିନ୍ତୁ ବାସ୍ତବ ଭିତରୁ ସତ ଓ ସୌନ୍ଦର୍ଯ୍ୟକୁ ଦେଖିବାକୁ ହେଲେ ମନଦେଇ ଦେଖିବାକୁ ହୁଏ । ମନ ଦେଇ ଦେଖିବା ବେଳେ ବାସ୍ତବର ଅନେକ ସାଜକୁ ହୁଏତ ବାଦ ଦେବାକୁ ପଡ଼ିପାରେ । ତେଣୁ ବାସ୍ତବ ପ୍ରିୟ ହେବା କିମ୍ବା କିଂଚିତ ଶୃଙ୍ଖଳା ଓ ଅନୁଶାସନ ଭିତରେ ବାସ୍ତବର ବିନ୍ୟାସ ଘଟାଇବା ମୂଳରେ ଆର୍ଟ ବା କାବ୍ୟ-ଗୁଣର ମହତ ମିଳେ ନାହିଁ, ମିଳେ ସୌନ୍ଦର୍ଯ୍ୟ ଓ ସତ୍ୟର ନିଖୁଣ ଦର୍ଶନଦ୍ୱାରେ । ସୌଦାଗରୀ ମନ ଦେଇ ଆର୍ଟକୁ ଦେଖିବାରେ ତ୍ରୁଟି ଅଛି । ଆସକ୍ତିର ଆଲୁଅରେ ଦେଖିଲେ ଯାଇ ଫଳଭୋଗ ନିଷ୍କଳଙ୍କ ହୋଇପାରେ ।

ବିଶ୍ୱର ସୌନ୍ଦର୍ଯ୍ୟବାଦୀ କାବ୍ୟ ତତ୍ତ୍ୱବିଦମାନେ ମୂଳତଃ ଅନୁଭବ କରନ୍ତି ଯେ, କାବ୍ୟ ହିଁ କବିର ପ୍ରଧାନ ଉଦ୍ଦେଶ୍ୟ । କାବ୍ୟ ପାଇଁ ହିଁ କବିର ସାଧନା । କବିତ୍ୱ ଶକ୍ତିର ପରିପୂର୍ଣ୍ଣ ଓ ପରିପକ୍ୱବିନ୍ୟାସରେ ହିଁ କାବ୍ୟର ସିଦ୍ଧି । କବିତ୍ୱ ଶକ୍ତିର ମୌଳିକ ଅବଲମ୍ବନ ତିନୋଟି–ଦୃଷ୍ଟି, ମନୀଷା ଓ ପ୍ରାଣ-ଶକ୍ତି ବା ସ୍ଫୂର୍ତ୍ତି । ଦୃଷ୍ଟିରୁ ଘଟେ ବସ୍ତୁର ଆତ୍ମା ସଙ୍ଗେ ମିଳନ, ତାହାର ଅତୀନ୍ଦ୍ରିୟ ସତ୍ତା ସହ ପରିଚୟ, ମନୀଷା ଚିହ୍ନାଇ ଦିଏ ବସ୍ତୁର ମନୋଭାବ ବା ଭାବସତ୍ତା, ଏବଂ ପ୍ରାଣଶକ୍ତି ବା ସ୍ଫୂର୍ତ୍ତି ବସ୍ତୁକୁ ଶରୀର ସ୍ୱରୂପରେ ମୂର୍ତ୍ତିମାନ କରେ, ଯଥା ବିନ୍ୟସ୍ତ ଅଙ୍ଗ ପ୍ରତ୍ୟଙ୍ଗରେ ଶୋଭିତ ଓ ସଂଜ୍ଞାଯୁକ୍ତ କରି ଜାଗ୍ରତ, ଜୀବନ୍ତ ତଥା ବୀର୍ଯ୍ୟବାନ୍ କରି ତୋଳେ । ଏହି ତିନୋଟି ଅବଲମ୍ବନର ଅନ୍ତଃକରଣରେ ଛପି ରହିଥାଏ ସୌନ୍ଦର୍ଯ୍ୟ-ବୃତ୍ତିର ନିଶା । ତେଣୁ ପ୍ରତ୍ୟେକ ସ୍ରଷ୍ଟା ସୌନ୍ଦର୍ଯ୍ୟର ତପଶ୍ଚର୍ଯ୍ୟାରୁ କ୍ଷାନ୍ତ ହେବେ କିପରି ?

କ୍ଲାସିକ ଯୁଗରୁ ଅଦ୍ୟାବଧି କାବ୍ୟତତ୍ତ୍ୱର ବିବିଧ ଚର୍ଚ୍ଚାରେ ସୌନ୍ଦର୍ଯ୍ୟବାଦୀ ବିଚାରଧାରାର ନାନା ଦିଗନ୍ତ ଉନ୍ମୋଚିତ ହୋଇଛି ପଛକେ ଏହା ଯେଉଁଠି ଥିଲା ସେଇଠି ରହି ଯାଇନାହିଁ । କ୍ଲାସିକ ଯୁଗର ପାଶ୍ଚାତ୍ୟ କାବ୍ୟତତ୍ତ୍ୱରେ ମୋଟା ମୋଟି ସୂଚିତ ହୋଇଥିଲା ଯେ, ସୌନ୍ଦର୍ଯ୍ୟ ଓ ଆନନ୍ଦର ସ୍ଥାୟୀ ମୂଲ୍ୟବୋଧ ହିଁ କାବ୍ୟ ବିତରଣ କରିବ ଏବଂ ତାହାହିଁ ହେବ କାବ୍ୟର ଶ୍ରେଷ୍ଠ ଫଳଶ୍ରୁତି । ଆରିଷ୍ଟଟଲଙ୍କ

Digitized by srujanika@gmail.com

ମତରେ କାବ୍ୟର ଉଦ୍ଦେଶ୍ୟ ହେଉଛି ଜୀବନକୁ ସୁନ୍ଦର ତଥା ଆନନ୍ଦ-ଜନକ କରି ପ୍ରକାଶ କରିବା । କାରଣ ଜୀବନର ରୂପ କଳ୍ପନାକୁ ସାର୍ଥକ କରିବାକୁ ହେଲେ ସୁନ୍ଦର କରିବାକୁ ହେବ । ସୁନ୍ଦର ହୋଇ ପାରିଲେ ଲୋକେ ତାକୁ ଆନନ୍ଦ ଚିତ୍ତରେ ଗ୍ରହଣ କରିବେ । ଆନନ୍ଦରେ ତାହା ଗ୍ରହଣ କରୁଁ କରୁଁ ସେଥିରୁ ଯେଉଁ ଚେତନାର ସ୍ପର୍ଶମଣି ସେମାନେ ଲାଭ କରିବେ ତାହାହିଁ ତାଙ୍କ ସମ୍ବିତ୍‌କୁ ଆଲୋଡ଼ିତ କରିବ ଏବଂ ସମ୍ବିତ୍‌କୁ ଆଲୋଡ଼ିତ କଲେ ଯାଇ ଆଚରଣରେ ପରିବର୍ତ୍ତନର ଆଭାସ ପ୍ରତ୍ୟକ୍ଷ ହେବ । ଅତଏବ ଏହି ଯୁକ୍ତିକୁ ସୂତ୍ରଧରି ଏତିକି କୁହାଯାଇପାରେ ଯେ ସୌନ୍ଦର୍ଯ୍ୟର ପ୍ରକାଶକୁ କାବ୍ୟର ଅନ୍ୟତମ ଲକ୍ଷ୍ୟରୂପେ ମାନି ନେଲାବେଳେ କ୍ଲାସିକ୍ କାବ୍ୟ-ତତ୍ତ୍ୱବିଦମାନେ ଜୀବନନିରପେକ୍ଷ ଦୃଷ୍ଟିକୋଣ ପୋଷଣ କରି ନାହାନ୍ତି । ଜୀବନ ଲାଗି ସୌନ୍ଦର୍ଯ୍ୟବୋଧର ଉପଯୋଗିତାକୁ ପରୋକ୍ଷରେ ସ୍ୱୀକାର କରିଛନ୍ତି ।

କାବ୍ୟ ଆପଣା ଗୁଣରେ ପୂର୍ଣ୍ଣ ଓ ସ୍ୱତନ୍ତ୍ର । ଅନ୍ୟ ଯେ କୌଣସି ମୂଲ୍ୟର ସମାବେଶ ଏଠି ମୂଲ୍ୟହୀନ—ଏପରି ବିଚାର ସୌନ୍ଦର୍ଯ୍ୟବାଦୀମାନଙ୍କଠାରେ ପ୍ରକାଶ ପାଇଥିଲା । କଳା ପାଇଁ କଳାର ସୃଷ୍ଟି କିମ୍ବା ଅନ୍ୟ ପ୍ରକାରେ କହିଲେ, କାବ୍ୟ ପାଇଁ କାବ୍ୟର ସାଧନା- ଏଇ ମତବାଦର ଜନ୍ମଭୂମି ହେଉଛି ଫ୍ରାନସ । ଊନବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧରୁ ଦଳେ ସୌନ୍ଦର୍ଯ୍ୟବାଦୀ ସ୍ରଷ୍ଟା ଏହି ମତର ପ୍ରସାର ଓ ପ୍ରତିଷ୍ଠା ପାଇଁ ବିଶେଷ ତତ୍ପରତା ଦେଖାଇଥିଲେ । କାବ୍ୟର ସାର୍ଥକତା ଅନ୍ୱେଷଣ ବେଳେ ଏମାନେ କବିତ୍ୱର ଦେହଳି ଡେଇଁ ପଦାକୁ ଯିବାଲାଗି ଆଦୌ ଚାହୁଁନଥିଲେ । ସେମାନେ ବିଶ୍ୱାସ କରୁଥିଲେ— କାବ୍ୟ ସୃଷ୍ଟିର ମୂଳରେ ବିଦ୍ୟମାନ ପ୍ରକାଶର ବ୍ୟାକୁଳତା ମଧ୍ୟ ପ୍ରସ୍ଥରେ ପ୍ରକାଶ ଏବଂ ଅନ୍ତିମ ଭାଗରେ ସୁନ୍ଦର ପ୍ରକାଶର ବାଣୀ-ମୂର୍ତ୍ତି ସାକ୍ଷାତ ବିରାଜିତ । ଏପରି ସ୍ଥଳେ କାବ୍ୟର ଉଦ୍ଦେଶ୍ୟ ସୁନ୍ଦର ଅର୍ଥାତ୍ କଳା କମନୀୟ ପ୍ରକାଶ ନ ହୋଇ ହେବ ବା କ'ଣ ? ଏହି ପ୍ରକାଶର ପ୍ରବୃତ୍ତିରେ ସତ୍ୟ-ମିଥ୍ୟା, ନ୍ୟାୟ-ଅନ୍ୟାୟ, ଶ୍ଲୀଳ-ଅଶୀଳ ଇତ୍ୟାଦି ଚେତନ-ଅଚେତନ ଧାରଣାର ହିସାବ ଆଦୌ ବିଚାର୍ଯ୍ୟ ନୁହେଁ । କେବଳ ବିଚାର୍ଯ୍ୟ ହେଉଛି ସୌନ୍ଦର୍ଯ୍ୟର ମୂର୍ତ୍ତିମାନ ଅଭିବ୍ୟକ୍ତି ।

'କଳା ପାଇଁ କଳାର ସୃଷ୍ଟି (Art for Art' Sake)— ଏଇ ମତବାଦଟିର ସର୍ବ ପ୍ରଥମେ ସଂକେତ ଭୀକ୍‌ଟର କଁଜିନ୍ (Victor Cousin 1792-1867)ଙ୍କର ଲାଆର୍ଟ ପିଓର ଲା ଆର୍ଟ (L'art Piour L'art) ବିଷୟକ ଏକ ଅଭିଭାଷଣରୁ ମିଳିଥିଲା (୧୮୪୫) । କିନ୍ତୁ ଏହାର ପ୍ରସାର ଥିଓଫିଲ୍ ଗୋତିୟେ (Theophile Gautier)ଙ୍କର ଉଦ୍ୟମ ହେତୁ ବିଶେଷଭାବେ ଘଟିଥିବା ଇତିହାସରୁ ଜଣାଯାଏ । ଗୋତିୟେ Madmoiselle demaupin ନାମକ ଏକ ଗ୍ରନ୍ଥରେ ଏହାର କୈଫିୟତ ଦେବାକୁ ଯାଇ କହିଥିଲେ ଯେ, ଶିଳ୍ପୀ ସାହିତ୍ୟିକ ନୀତିର ପୋଷକତା କରେ ନାହିଁ ।

Digitized by srujanika@gmail.com

ସୌନ୍ଦର୍ଯ୍ୟ କେବଳ ସୌନ୍ଦର୍ଯ୍ୟ ପାଇଁ କବିର ଦୃଷ୍ଟି ଉନ୍ମୁକ୍ତ । ସବୁଥିକି ସେ ଅନ୍ଧ । ଗୋତିୟେଁଙ୍କର ସୌନ୍ଦର୍ଯ୍ୟବାଦୀ ସିଦ୍ଧାନ୍ତର ପ୍ରୟୋଗ କାବ୍ୟ-ସୃଷ୍ଟିରେ ପ୍ରାୟ ପରିଲକ୍ଷିତ ହୋଇଥିଲା, ଅବଶ୍ୟ ଅନମାନଙ୍କ ଦ୍ୱାରା ଅନୁସୃତ ହୋଇ ଏଇ ଆଭିମୁଖ୍ୟ କଥା ସାହିତ୍ୟକ୍ଷହ ପ୍ରତିଫଳିତ ହେଲା । ଗୁସ୍ତାଭ ଫ୍ଲୁବେୟାର (Gustave Flaubert) ଏମିଲ୍‌ଜୋଲା (Emile zola)ଇତ୍ୟାଦି ଶିଳ୍ପୀଗଣ ଏହାକୁ ଉପନ୍ୟାସ ରଚନା କ୍ଷେତ୍ରରେ ପ୍ରୟୋଗ କରିଥିଲେ କିନ୍ତୁ ଫରାସୀ କବି ବଦଲେୟାର (Baudelaire), ମାଲାର୍ମେ (Mallarme), ଭାର୍ଲେନ୍ (Verlaine)ପ୍ରଭୃତି ପ୍ରତୀକବାଦୀ ସ୍ରଷ୍ଟାଗଣ ଏହାର ଉଗ୍ର ସମର୍ଥକ ଥିଲେ । ଏମାନଙ୍କ ଧାରଣାରେ ଏହାହିଁ ବିଶେଷ ପ୍ରାଧାନ୍ୟ ଲାଭ କରିଥିଲା ଯେ– Poetry has no end beyond itself କବିତା ହେବା ବ୍ୟତୀତ କବିତାର ଅନ୍ୟ କୌଣସି ଲକ୍ଷ୍ୟ ନାହିଁ । ଏମାନେ ସୌନ୍ଦର୍ଯ୍ୟବାଦୀ ଚିନ୍ତନକୁ ଭିତ୍ତିକରି ଆପଣାର ସ୍ୱାତନ୍ତ୍ର୍ୟ ବଜାୟ ରଖିଥିଲେ ଏବଂ ସମକାଳୀନ କବିତା-ତତ୍ତ୍ୱର ପ୍ରତ୍ୟେକ ଚିନ୍ତକ-ଗୋଷ୍ଠୀଙ୍କ ସହିତ ବୌଦ୍ଧିକ ଯୋଗସୂତ୍ର ରକ୍ଷା କରିଥିଲେ ।

ଇଂରେଜୀ ସାହିତ୍ୟରେ 'କଳା ପାଇଁ କଳାସୃଷ୍ଟି' ମତବାଦଟିର ମୁଖ୍ୟ ପ୍ରବର୍ତ୍ତକ ଥିଲେ- ୱାଲ୍‌ଟର ପେଟର୍ (୧୮୩୪-୯୪) । ତାଙ୍କ ମତରେ କାବ୍ୟହିଁ କାବ୍ୟର ଏକମାତ୍ର ଫଳ । କାବ୍ୟରେ ପ୍ରତିଫଳିତ ଅନୁଭୂତି ସଂଚାରହିଁ କାବ୍ୟର ଅନ୍ତିମ. ଲକ୍ଷ୍ୟ । ରେନାସାଁସ୍ ଇତିହାସ ଅଧ୍ୟୟନ ପ୍ରସଙ୍ଗରେ ସେ ଘୋଷଣା କରିଥିଲେ ଯେ କୌଣସି ଶିକ୍ଷାଦାନ କିମ୍ୱା ନୈତିକ ମୂଲ୍ୟବୋଧର ଜାଗରଣ କାବ୍ୟର ଲକ୍ଷ୍ୟ ନୁହେଁ । ବରଂ ନିୟମବଦ୍ଧ ଜୀବନ ଭିତରୁ ଆମ ଆବେଗର ସହଗାମୀ କୌଣସି ଅନୁଭୂତି କି ବିଶ୍ୱସ୍ତ ଭାବେ ସୁନ୍ଦର ପ୍ରକାଶ ଦେବା ହେଉଛି କାବ୍ୟର ଲକ୍ଷ୍ୟ– Not the fruit of experience, but experience itself is the end, + ଏଇ ଚିନ୍ତନର ଏକ ପ୍ରସାରିତ ପକ୍ଷ ଉନ୍‌ମୋଚନ କରିଥିଲେ ଓସ୍କାର ୱାଇଲଡ (୧୮୫୪-୧୯୦୦) । ଅକ୍‌ସଫୋର୍ଡରେ ପ୍ରବେଶ କଲା ଉତ୍ତାରୁ (୧୮୭୪) ସେ ବହୁ ସାହିତ୍ୟ-ତତ୍ତ୍ୱବିଦ୍‌ଙ୍କର ସଂସର୍ଗରେ ଆସିଥିଲେ ଏବଂ ନିଜେ ମଧ ନନ୍ଦନତତ୍ତ୍ୱ ବ୍ୟାପାରରେ କ୍ରାନ୍ତିର ସୂଚନା ଦେଇଥିଲେ । ଏତେବେଳେ ମାଥ୍ୟୁ ଆର୍‌ନୋଲଡ୍, ଇନରସ୍କିନ୍, ୱାଲଟର ପେଟାର ପ୍ରଭୃତି ମନୀଷୀମାନଙ୍କର ପ୍ରତ୍ୟକ୍ଷ ପ୍ରଭାବ ତାଙ୍କ ଉପରେ ପଡ଼ିଥିଲା । Intentions (1891)ନାମକ ଏକ ଗ୍ରନ୍ଥ ଅନ୍ତର୍ଗତ କେତୋଟି ପ୍ରବନ୍ଧରେ ସେ ନନ୍ଦନତତ୍ତ୍ୱ ବିଷୟକ ଆପଣା ମତବାଦର ସୂଚନା ଦେଇଥିଲେ ।(ପ୍ରବନ୍ଧଟି ଅସଂପୂର୍ଣ୍ଣ)



---

\+ Walter Pater–The Renaissance, Studies in Art and poetry (1924) Page 249, London

Digitized by srujanika@gmail.com

# କବି ଉକ୍ତି : ବକ୍ରୋକ୍ତି

ଭାରତୀୟ କାବ୍ୟ-ତତ୍ତ୍ୱର ଐତିହ୍ୟ ଅନୁଶୀଳନ ଅବସରରେ ଆମେ ଯେଉଁ କେତୋଟି ମୌଳିକ ସିଦ୍ଧାନ୍ତର ସମ୍ମୁଖୀନ ହେଉ, ତାହା ମୋଟାମୋଟି ବାକ୍ୟ ବା ଶବ୍ଦ ଓ ଅର୍ଥର ପିନଦ୍ଧ ପ୍ରକାଶ ସୌନ୍ଦର୍ଯ୍ୟକୁ ବୈଶିଷ୍ଟ୍ୟ ରଚନାଟିକୁ କାବ୍ୟତ୍ୱ ଗୁଣରେ ଗୁଣୀ କରାଇଥିବା ଆମେ ଲକ୍ଷ୍ୟ କରିଥାଉଁ ।

'ବାକ୍ୟଂ ରସାତ୍ମକଂ କାବ୍ୟଂ'– ଏହି ସୁବିଦିତ ଉକ୍ତି ବା ସିଦ୍ଧାନ୍ତ ମଧ୍ୟରେ ବାକ୍ୟର ଗୌରବ ସ୍ୱୀକୃତ ହୋଇଛି । ରସାତ୍ମକ ବାକ୍ୟଟିଏ ମାତ୍ର କାବ୍ୟର ଯୋଗ୍ୟତା ହାସଲ କରିପାରିଛି । ରସାତ୍ମକ ବାକ୍ୟଟିଏ କାବ୍ୟ ଗୁଣରେ ଗୁଣୀ ହେବା ଅର୍ଥ ବାକ୍ୟର ରସଗୁଣ ଉପରେ ଶ୍ରେଷ୍ଠତା ପ୍ରଦାନ କରାଯାଉଛି । କାବ୍ୟର ସାମଗ୍ରିକ ସୌନ୍ଦର୍ଯ୍ୟ ସତେ ଯେପରି ରସଦୀପ୍ତ ବାକ୍ୟ ଉପରେ ନିର୍ଭରଶୀଳ ଏପରି ବୁଝାଯାଉଛି । କିନ୍ତୁ ଯଥାର୍ଥତଃ ଗୋଟିଏ ରସଦୀପ୍ତ ବାକ୍ୟ ସତେ କ'ଣ ସମଗ୍ର କାବ୍ୟର ଗୁଣ-ପରିଚାୟକ ? ସମଗ୍ରତାର ଅବବୋଧ ଲାଗି କାବ୍ୟରୁ ଯେଉଁ ସୌନ୍ଦର୍ଯ୍ୟ ଉକ୍ତି ସମ୍ଭବ ତାହା ରସାତ୍ମକ ବାକ୍ୟଟିଏ ମାତ୍ର ଦେଇପାରେ କି ?

କାବ୍ୟର ଗୁଣ ବିଚାରରେ ରସାତ୍ମକ ବାକ୍ୟକୁ ମୂଳ ବୋଲି ଗ୍ରହଣ କଲାବେଳେ ଭାରତୀୟ ଆଳଂକାରିକମାନେ ବାକ୍ୟର କାରୁକମ ଉପରେ ଜୋର ଦେଇ କାବ୍ୟର ସାମଗ୍ରିକ ସୌନ୍ଦର୍ଯ୍ୟ ଓ କବିଙ୍କ ସ୍ରଷ୍ଟାପଣର ଭୂମିକାକୁ ସେପରି ଗହନ ଦୃଷ୍ଟିରେ ଦେଖିନାହାନ୍ତି । ମନେକରାଯାଉ, 'ଉପମା କାଳିଦାସସ୍ୟ' କହିଲା ବେଳେ ଧାରଣା ହୁଏ ଯେ, ଉପମା ପ୍ରୟୋଗ ପାଇଁ କାଳିଦାସ ଶ୍ରେଷ୍ଠ । କିନ୍ତୁ ଉପମାଗୁଡ଼ିକ କାଳିଦାସଙ୍କ ପାଇଁ ଶ୍ରେଷ୍ଠ ନୁହଁନ୍ତି ଏ ବିଚାର ମନକୁ ଆସେ ନାହିଁ । ଏହି ଉକ୍ତିଟିକୁ ବିଚାର କଲାବେଳେ ଆମେ ଭୁଲିଯାଉଁ, କାଳିଦାସଙ୍କ କବି-ବ୍ୟକ୍ତିତ୍ୱ ସହ ଉପମା ପ୍ରୟୋଗ ବୈଷିଷ୍ଟ୍ୟର କିଛି ସମ୍ପର୍କ ଅଛି କି ? ସେହିପରି 'ରସାତ୍ମକ ବାକ୍ୟ ହିଁ କାବ୍ୟ' କଥାଟି

Digitized by srujanika@gmail.com

କହିଲା ବେଳେ ବିନ୍ୟାସ ଚାତୁରୀ ଯେପରି ବଡ଼ ହୋଇ ଦିଶେ ତା'ର ଅନ୍ତରାଳରେ ଲୁଚି ରହିଥିବା କବି-ସତ୍ତାର ଠିକଣା ଓ କାବ୍ୟର ସାମଗ୍ରିକ ସୌନ୍ଦର୍ଯ୍ୟ ପ୍ରକଟନରେ ଏହାର ଭୂମିକାକୁ ଆମେ ସେହି ପରିମାଣରେ ବିଚାରକୁ ନେଇ ନ ଥାଉ । ତେଣୁ ଭାରତୀୟ କାବ୍ୟ-ତତ୍ତ୍ୱକୁ ଏପରି ସଂକୀର୍ଣ୍ଣ ପୃଷ୍ଠଭୂମିରୁ ମୁକ୍ତ କରି, ଏହାର ଐତିହ୍ୟକୁ ଅଧିକ ପ୍ରଶସ୍ତ ଓ ସୌନ୍ଦର୍ଯ୍ୟ ଅବଗାହୀ କରିବା ଲକ୍ଷ୍ୟରେ ଆଚାର୍ଯ୍ୟ କୁନ୍ତକ କାବ୍ୟକୁ କାବ୍ୟ ବା ଶବ୍ଦର ଗଠନ ନୈପୁଣ୍ୟରେ ସୀମିତ ନ ରଖି ଭିନ୍ନ ଏକ ମତର ଉପସ୍ଥାପନା ଉପରେ ଜୋର୍ ଦେଇଥିଲେ । ସେହି ମତଟି ହେଉଛି, 'ବକ୍ରୋକ୍ତି' ମତ । ତାଙ୍କର ଯୁକ୍ତି ହେଲା ବକ୍ରୋକ୍ତି ହିଁ କାବ୍ୟର ଜୀବନ । ସେ ଚାହିଁଥିଲେ ପରମ୍ପରାକୁ ସମ୍ମାନ ଦେଇ 'ବକ୍ର ବାକ୍ୟ କାବ୍ୟଂ'– ଏ କଥା ନିଃସଂକୋଚରେ କହିପାରିଥାନ୍ତେ । କିନ୍ତୁ ବାକ୍ୟ ପରିବର୍ତ୍ତେ 'ଉକ୍ତି' ଶବ୍ଦଟି ସେ ବ୍ୟବହାର କଲେ । ତାଙ୍କର ଧାରଣା ହୁଏତ ଏହା ଯେ, ଗୋଟିଏ ମାତ୍ର ବାକ୍ୟ ବା ଶବ୍ଦରୁ କାବ୍ୟତ୍ୱ ଜଣାଯାଏ ନାହିଁ । କାବ୍ୟରେ ଉଚ୍ଚାରିତ କବିଉକ୍ତି ମଧ୍ୟରୁ କାବ୍ୟ-ଗୁଣର ଲକ୍ଷଣା-ଲକ୍ଷଣ ବୁଝାଯାଇପାରେ । ତାଙ୍କ ମତରେ କାବ୍ୟର କାବ୍ୟତ୍ୱ ନିର୍ଭର କରେ କବି ଉକ୍ତି ଉପରେ । ଯାହା ବକ୍ରୋକ୍ତି ନୁହେଁ କେବଳ ମାତ୍ର ଉକ୍ତି ତାହା କାବ୍ୟ ନୁହେଁ । ବକ୍ରୋକ୍ତି ସାଧନ ହିଁ କବିତ୍ୱ ।

ଭଙ୍ଗୀ, ଭଣିତି, ରମ୍ୟତା ସମ୍ପାଦନା କରିବା ହିଁ କବିର ପ୍ରଧାନ କର୍ମ । ଭଙ୍ଗୀ ଓ ରମ୍ୟତା ଉଭୟଙ୍କ ଭିତରେ ଥିବା ସମ୍ବନ୍ଧ ସୂତ୍ରରୁ କାବ୍ୟର ଯୋଗ୍ୟତା ବୁଝାଯାଇପାରେ । ଭଙ୍ଗୀର ଅର୍ଥ ରୀତି ନୁହେଁ । ରୀତିବାଦୀ ଆଳଂକାରିକମାନେ ଯେଉଁ ରୀତିର ଉଲ୍ଲେଖ କରନ୍ତି, ତାହା ବିଭିନ୍ନ ଅଞ୍ଚଳରେ ବ୍ୟବହୃତ ଭାଷା-ବନ୍ଧର ଅଲଗା ଅଲଗା ନାମ ମାତ୍ର; ଯେପରି ବୈଦର୍ଭୀ, ଗୌଡ଼ୀ, ପାଞ୍ଚାଳୀ ଇତ୍ୟାଦି । କୁନ୍ତକଙ୍କ ମତରେ– ଭଙ୍ଗୀ ହେଉଛି କାବ୍ୟ-ବନ୍ଧ (Poetic Diction) । ଏହି କାବ୍ୟ-ବନ୍ଧ ଅଭିଜ୍ଞାତ ଓ ବିଦଗ୍ଧମାନଙ୍କର ହୃଦୟ ଆହ୍ଲାଦକରକ– କାବ୍ୟ ବନ୍ଧୋହିଭିଜାତାନା ହୃଦୟହ୍ଲାଦ କାରକଃ ।' ବନ୍ଧ ଅର୍ଥ ଶିଳ୍ପ ସମ୍ମତ କୌଣସି ଫର୍ମରେ ଆବଦ୍ଧ କାବ୍ୟର ଏକକତ୍ୱ (Unit)କୁ ହିଁ ବୁଝାଏ । କୁନ୍ତକଙ୍କର ପରିଭାଷା ହେଲା– 'ବନ୍ଧୋବାକ୍ୟ ବିନ୍ୟାସଃ' । ଅର୍ଥାତ କାବ୍ୟରେ ବ୍ୟବହୃତ ସମସ୍ତ ବାକ୍ୟ ସାମଗ୍ରିକ ଭାବେ ଯେପରି ସଜାପାଇଛି, ସେଇ ଗଠନ ରୂପ (Structure) ହିଁ ହେଉଛି 'ବନ୍ଧ' ବା ବାକ୍ୟବିନ୍ୟାସ । ବନ୍ଧକୁ ଶିଳ୍ପ ସମ୍ମତ ଗୋଟିଏ ଫର୍ମ ବୋଲି ମାନିନେଲା ପରେ ବର୍ତ୍ତମାନ ପ୍ରଶ୍ନଉଠୁଛି ଏହି ବନ୍ଧର ସଂରଚନା କାହା ଉପରେ ନିର୍ଭର କରେ । ଏହା ନିର୍ଭର କରେ 'ବକ୍ରକବି ବ୍ୟାପାର' ଉପରେ । ବକ୍ର ଏଇଥିପାଇଁ ଯେ ଶାସ୍ତ୍ର କଥିତ ବା ଅଭିଧାନିକ ପ୍ରଚଳିତ ଅର୍ଥଠାରୁ ଏହା ପୃଥକ୍ । କବିକୃତ ବା କବି ବ୍ୟାପାର

Digitized by srujanika@gmail.com

ଜଣାଶୁଣା ଆଭିଧାନିକ∙ଅର୍ଥ ବ୍ୟତିରେକେ ଯାହା ସୃଷ୍ଟି କରେ, ଅଥବା ଯାହା ପ୍ରୟାଗ କରେ, ତହିଁରେ ବକ୍ରତାହିଁ ବିଦ୍ୟମାନ । ତେଣୁ କୁନ୍ତକ କବି ବ୍ୟାପାରକୁ 'ଶାସ୍ତ୍ରାଦି ପ୍ରସିଦ୍ଧ ଶବ୍ଦାର୍ଥୋପନିବନ୍ଧ ବ୍ୟତିରେକୀ' ବୋଲି ବୁଝିଥିଲେ । ସେ ସ୍ପଷ୍ଟତଃ ସୂଚାଇଥିଲେ ଯେ, କବି ବ୍ୟାପାର ହେଉଛି ଏକ ଅଭିନବ ପ୍ରକ୍ରିୟା, ଯାହା ଶବ୍ଦ ଓ ଅର୍ଥ ଗୁଣରେ ପ୍ରଚଳିତ ଓ ପ୍ରସିଦ୍ଧତାକୁ ଅତିକ୍ରମ କରିବା ହିଁ ଏହାର ଲକ୍ଷ୍ୟ ।

କୁନ୍ତକଙ୍କ ବିଚାରରେ ଶବ୍ଦ ଓ ଅର୍ଥ ଏକତ୍ର ମିଶି କାବ୍ୟରେ ଯେଉଁ ସୌନ୍ଦର୍ଯ୍ୟ ସୃଷ୍ଟି କରନ୍ତି ତାହାକୁ ବାହ୍ୟ, ଔପଚାରିକ ଏକ ଅଳଙ୍କାର ବୋଲି ଗ୍ରହଣ କରିବା ଠିକ୍ ନୁହେଁ । ଏହା ଜୀବନ୍ତ ଦେହକୋଶତୁଲ୍ୟ; ଏହାର ସୌନ୍ଦର୍ଯ୍ୟ ଅଭ୍ୟନ୍ତରରୁ ଫୁଟି ଦିଶେ । କାବ୍ୟର ସମଗ୍ର କଳେବର ଭିତରେ ଏହା ପୂରି ରହିଥାଏ । ଏଥିରୁ କୌଣସି ଅଂଶକୁ ବାଦଦେଲେ କାବ୍ୟଶ୍ରୀ ବିକଳାଙ୍ଗ ହୋଇଯାଏ । ଶବ୍ଦ ଓ ଅର୍ଥର ଐକ୍ୟତାନରେ ଯେଉଁ ସୌନ୍ଦର୍ଯ୍ୟ ନିହିତ, ତାହା କାବ୍ୟର ଆତ୍ମଗାଠନିକ ବା Organic ସୌନ୍ଦର୍ଯ୍ୟ ନାମରେ କଥିତ ।

ଆଚାର୍ଯ୍ୟ କୁନ୍ତକ ଶବ୍ଦକୁ ସାଧାରଣ ପଦ ଅର୍ଥରେ ଘେନି ନାହାନ୍ତି । ତାହା ହେଉଛି 'ସମୁଚିତ ସମସ୍ତ ସାମଗ୍ରିକଃ' । ଅର୍ଥାତ କାବ୍ୟରେ ବ୍ୟବହୃତ ସବୁ ବାକ୍ୟର ସମାହାର ହିଁ ଶବ୍ଦ, ଯାହାକି ସହୃଦୟାହ୍ଲାଦକାରୀ ସ୍ୱସ୍ପନ୍ଦ ସୁନ୍ଦରଃ' । ଏହା ସହୃଦୟ ହୃଦୟ ଆହ୍ଲାଦକାରୀ ଏବଂ ସ୍ୱସ୍ପନ୍ଦ ସୁନ୍ଦର । ସ୍ୱସ୍ପନ୍ଦ ସୁନ୍ତର କଥାଟିଏ ଅର୍ଥ ହେଲା କାବ୍ୟରେ ସୌନ୍ଦର୍ଯ୍ୟର ଏକ ସହାଜାତ ସ୍ଫୂର୍ତ୍ତି ଓ କବି କଳ୍ପନାର ସାମଗ୍ରିକ ଫଳଶ୍ରୁତି । କାବ୍ୟର ସମଗ୍ର ସତ୍ତା ସହିତ ସମନ୍ୱିତ ହୋଇ ପ୍ରତ୍ୟେକ ଅଂଶର ଅର୍ଥଗୌରବ ଯେଉଁଥିରୁ ପ୍ରକଟିତ ହୁଏ, ତାହାରି ଅନ୍ୟନାମ 'ସ୍ପନ୍ଦସୁନ୍ଦର' (Rhythmic Beauty) । କୁନ୍ତକ ମୂଳତଃ ଶବ୍ଦକୁ କାବ୍ୟର ସାମଗ୍ରିକ ଏକକଦ୍ୱର ସୂଚକ ହିସାବରେ ଗ୍ରହଣ କରିଛନ୍ତି ଏବଂ ଅର୍ଥକୁ ଅର୍ଗାନିକ ସୌନ୍ଦର୍ଯ୍ୟର ପ୍ରତିପାଦକ ରୂପେ ସ୍ୱୀକାର କରିଛନ୍ତି । ଏମାନେ ସାଧାରଣ ଭାବରେ ବୁଝାଯାଉଥିବା ପଦ ଓ ଅର୍ଥ ହିସାବରେ ଗୃହୀତ ହୋଇନାହାନ୍ତି । ପ୍ରଚଳିତ ଅର୍ଥଜ୍ଞାନକୁ ଅତିକ୍ରମ କରି ନୂତନ ନୂତନ ବୈଚିତ୍ର୍ୟ ସୃଷ୍ଟି, ସାର୍ଥକ କାବ୍ୟର ଗୁଣ ହୋଇଥିବାରୁ ଏହା ଯାହା ଦ୍ୱାରା ସମ୍ପନ୍ନହୁଏ କୁନ୍ତକ ତାହାକୁ 'ବକ୍ରୋକ୍ତି' ବୋଲି ବୁଝିଥାନ୍ତି । ତାଙ୍କ ମତରେ 'ବକ୍ରୋକ୍ତି' ହେଉଛି 'ଭଣତି ପ୍ରକାର' ବା ବୈଦଗଧ ଭଙ୍ଗୀ ଭଣତି । ଅନ୍ୟ ପ୍ରକାରେ କହିଲେ, ଉକ୍ତି ବୈଚିତ୍ର୍ୟ ହିଁ ବକ୍ରୋକ୍ତି । ବୈଦଗଧପୂର୍ଣ୍ଣ ଭଙ୍ଗୀଯୁକ୍ତ ଉକ୍ତିକୁ ବକ୍ରୋକ୍ତି ବୋଲି କୁନ୍ତକ ଗ୍ରହଣ କରିଛନ୍ତି:- ''ବକ୍ରୋକ୍ତିରେବ ବିଦଗଧଭଙ୍ଗୀ ଭଣତିରୁଚ୍ୟତେ' ।

ବୈଦଗଧ କଣ ? ଯାହା ବିଦଗ୍ଧଭାବର ସୂଚକ ବା ଯାହା ଅଭିଜାତ କବି-କର୍ମ କୌଶଳ ତାହାହିଁ ଭଙ୍ଗୀ । ବକ୍ରୋକ୍ତି ମଧ୍ୟରେ ଦୁଇଟି ଲକ୍ଷଣ ବିଦ୍ୟମାନ ।

Digitized by srujanika@gmail.com

ଗୋଟିଏ ହେଉଛି କବି କର୍ମ କୌଶଳ, ଅନ୍ୟଟି ସେହି କୌଶଳର ପରିପୂରକ ଭଙ୍ଗୀ ବା ଚମତ୍କାରିତ୍ୱ ବକ୍ରୋକ୍ତି, କାବ୍ୟର ଶବ୍ଦ ଓ ଅର୍ଥକୁ ଚମତ୍କାର କରି ତୋଳେ । ବକ୍ରୋକ୍ତି ଦ୍ୱାରା କାବ୍ୟର ଅଳଂକୃତି ଫୁଟୁଥିବାରୁ କୁନ୍ତକ ଏହାକୁ କାବ୍ୟର ସାର୍ବଭୌମଗୁଣ ରୂପେ ଗ୍ରହଣ କରିଛନ୍ତି । ବକ୍ରୋକ୍ତି ମତର ଉଲ୍ଲେଖ କଲାବେଳେ ଆଚାର୍ଯ୍ୟ କୁନ୍ତକ ପୂର୍ବସୂରୀଙ୍କର ପ୍ରସିଦ୍ଧ ମତକୁ ଅସ୍ୱୀକାର କରିନାହାନ୍ତି । ରସ ଓ ଧ୍ୱନି ପ୍ରଭୃତି ପ୍ରସିଦ୍ଧ ମତ ଗୁଡ଼ିକର ଉପଯୋଗିତା ପ୍ରତି ସେ ସଚେତନ । ତାଙ୍କ ଧାରଣାରେ ବକ୍ରୋକ୍ତି ଗର୍ଭରେ ଧ୍ୱନି ଓ ରସର ଲୀଳା ଲକ୍ଷ୍ୟ କରାଯାଇପାରେ । ଧ୍ୱନିକୁ ସେ ଏକ ପ୍ରକାର ବକ୍ରତା ବୋଲି ଗ୍ରହଣ କରିଛନ୍ତି । ଏହାର ନାମ ହେଉଛି 'ଉପଚାର ବକ୍ରତା' ସେହିପରି ସେ 'ଅର୍ଥବକ୍ରତା' ଓ 'ଭାବ ବକ୍ରତା'ର କଥା ଉଠାଇଛନ୍ତି । ଭାବ ବକ୍ରତାକୁ ରସର ସୂଚନା ମିଳିଥାଏ । ଅର୍ଥ ବକ୍ରତାରୁ ଅନ୍ୟାନ୍ୟ ଶବ୍ଦ ବୈଭବ ଓ ଆଳଂକାରିକ ସୁଷମାର ସଙ୍କେତ ଜଣାଯାଏ । ଅତଏବ ଏହା ସ୍ପଷ୍ଟ ଯେ, ଆଚାର୍ଯ୍ୟ କୁନ୍ତକ ବକ୍ରୋକ୍ତି ମତବାଦର ପ୍ରତିଷ୍ଠା କଲାବେଳେ ଏକପ୍ରକାର ସମନ୍ୱୟବାଦୀ ଆଦର୍ଶର ପୋଷକତା କରିଛନ୍ତି । କିନ୍ତୁ ଯୁକ୍ତି ବିଶ୍ଳେଷଣ ଦୃଷ୍ଟିରୁ ନୂତନ ଦିଗନ୍ତର ସୂଚନା ଦେଇଛନ୍ତି ।

କୁନ୍ତକଙ୍କ ପୂର୍ବରୁ ଆଚାର୍ଯ୍ୟ ଭାମହ (୭ମ-୮ମ ଶତାବ୍ଦୀ) ବକ୍ରୋକ୍ତିର ପ୍ରଯୋଜନୀୟତା ଉପଲବ୍ଧି କରିଥିଲେ । ସେ ମନେ କରୁଥିଲେ ବାକ୍ୟରେ ଥିବା ଇଙ୍ଗୀତାତ୍ମକ ଅର୍ଥ ପ୍ରକାଶ କ୍ଷମତାହିଁ କାବ୍ୟତ୍ୱର ନିୟାମକ । ବକ୍ରୋକ୍ତି ଦ୍ୱାରା ଏହା ସମ୍ପନ୍ନ ହୋଇଥାଏ । ଯେଉଁସବୁ ଅଳଙ୍କାର କାବ୍ୟର ଶୋଭାବର୍ଦ୍ଧକ, ତହିଁରେ ବକ୍ରୋକ୍ତିର ବୀଜ ନିହିତ– 'ସୈଷା ସର୍ବୈବ ବକ୍ରୋକ୍ତିରନାୟାର୍ଥୋ ବିଭାବ୍ୟତେ', ବକ୍ରୋକ୍ତି ବିନା କାବ୍ୟରେ ଅଳଂକୃତି ଅସମ୍ଭବ ବୋଲି ଭାମହ ବିଚାରୁଥିଲେ । କାବ୍ୟାଳଙ୍କାର ଗ୍ରନ୍ଥରେ ସେ ସୂଚାଇଥିଲେ ଯେ, ଶବ୍ଦ ଓ ଅର୍ଥର ଆତ୍ମଗତ ସଂଯୋଗ ଯେଉଁ କାବ୍ୟରେ ପରିଦୃଷ୍ଟ ହୁଏ, ତାହାହିଁ ଯଥାର୍ଥ କାବ୍ୟ । ଏପରି ଆତ୍ମିକ ଯୋଗ ଫଳରୁ ଯେଉଁ ନୂତନ ଅର୍ଥ ଓ ବ୍ୟଞ୍ଜନାର ସୃଷ୍ଟି ହୁଏ, ତାହା ଶବ୍ଦ ଓ ଶବ୍ଦ-ବିନ୍ୟାସର ପ୍ରାକୃତିକ ସୀମାଛାଡ଼ି ବହୁଦୂର ବ୍ୟାପିଯାଏ । ଏହି ବିଶିଷ୍ଟ ପ୍ରକାଶ କୌଶଳ ହିଁ କାବ୍ୟକୁ ବୈଶିଷ୍ଟ୍ୟ ପ୍ରଦାନ କରିଥାଏ । ଯେଉଁଠି ବ୍ୟଞ୍ଜନା ନାହିଁ, ସେଠି କାବ୍ୟ ଗୁଣ-ଶୂନ୍ୟ । ଏହି ମର୍ମରେ ଆଚାର୍ଯ୍ୟ ଭାମହ, ବକ୍ରୋକ୍ତି ମତର ଆଦ୍ୟ ପ୍ରବର୍ତ୍ତକ ଥିଲେ, କହିଲେ ଚଳେ ।* କୁନ୍ତକ କିନ୍ତୁ ବକ୍ରୋକ୍ତି ବିନ୍ୟାସକୁ ଅଳଙ୍କାର ବା କାବ୍ୟ-ଶରୀର ଅର୍ଥରେ

* S.K. De– History of Sanskrit Poetics (1976)-Vol.II-Fima KLM Pvt. Ltd. Calcutta, Page-50.

Digitized by srujanika@gmail.com

ଗ୍ରହଣ ନକରି, କାବ୍ୟର ପ୍ରାଣ ବୋଲି ବିଚାର କରିଥିଲେ । କାବ୍ୟର ସାମଗ୍ରିକ ପ୍ରକାଶ ନୈପୁଣ୍ୟକୁ ମୂଲ୍ୟ ଦେଇଥିଲେ । କୁନ୍ତକଙ୍କର ଚିନ୍ତାଧାରା ଏବଂ ଆଲୋଚନାରେ ଆଭିମୁଖ୍ୟ ଅଧିକ ପ୍ରଶସ୍ତ ଓ ସୂକ୍ଷ୍ମ । ଯାହା ବହୁ କଥିତ, ଚର୍ବିତ ତାକୁ ପରିହାର କରି ନୂତନକୁ ଆବାହହନ କରିବାହିଁ କବିତ୍ୱର ଅଗ୍ରଗାମୀ ଲକ୍ଷଣ । ଏହି ଭାବନାରେ ଥାଇ କୁନ୍ତକ କହୁଥିଲେ 'ପୂର୍ବାବୃତ୍ତ ପରିତ୍ୟାଗ ନୂତନାବର୍ତ୍ତନୋଜ୍ଜ୍ୱଳା' । 'ବକ୍ରୋକ୍ତି' ମତରେ ଅଳଙ୍କାର ସୀମିତତାକୁ ସେ ପରିହାର କରିଥିଲେ । କବି-ଦୃଷ୍ଟିକୁ ପ୍ରାଧାନ୍ୟ ଦେଇଥିଲେ ।

ଅବଶ୍ୟ କେତେକ ଆଳଙ୍କାରିକ ବକ୍ରୋକ୍ତିକୁ ସାଧାରଣ ଅଳଙ୍କାର ସ୍ତରରେ ରଖି ଆପଣାର ବିଚାରକୁ ଭାରତୀୟ କାବ୍ୟତତ୍ତ୍ୱର ଇତିହାସରେ ସାଇତି ଯିବାର ଯତ୍ନ କରିଥିଲେ ।

ସେମାନଙ୍କ ଭିତରୁ ଆଚାର୍ଯ୍ୟ ଦଣ୍ଡୀ (ନବମ ଶତାବ୍ଦୀ) ଅନ୍ୟତମ । ସେ ଏଇ ବକ୍ରୋକ୍ତି କୌଶଳକୁ ଶବ୍ଦ-ରୀତି ହିସାବରେ ଗ୍ରହଣ କରିଥିଲେ । ଏକ ପ୍ରକାର ଶବ୍ଦାଳଂକାର ବୋଲି ସୂଚାଇଥିଲେ । ଯେଉଁସବୁ ବାକ୍ୟ ବିନ୍ୟାସରେ ଦ୍ୱିଅର୍ଥ ବୋଧକ ଉକ୍ତି ଦେଖିବାକୁ ମିଳେ, ତାହା ବକ୍ରୋକ୍ତି ପଦବାଚ୍ୟ । ବାମନ ନବମ ଶତାବ୍ଦୀ ଓ ରୁଦ୍ରଟ (ନବମ-ଦଶମ ଶତାବ୍ଦୀ) ମଧ୍ୟ ଦଣ୍ଡୀଙ୍କ ମତାନୁଯାୟୀ ବକ୍ରୋକ୍ତିକୁ ଅଳଙ୍କାର ବିଶେଷ ବୋଲି ଗ୍ରହଣ କରିଛନ୍ତି । ଶବ୍ଦ-ଶ୍ଳେଷ ବା କାକୁ ଯୋଗୁଁ ବକ୍ତା ଯେଉଁ ଅର୍ଥରେ ଶବ୍ଦ ପ୍ରୟୋଗ କରିଥାନ୍ତି, ଶ୍ରୋତା ତାହାର ବିପରୀତ ଅର୍ଥ ଗ୍ରହଣ କଲେ ସେ କ୍ଷେତ୍ରରେ ବକ୍ରୋକ୍ତି ଅଳଙ୍କାର ହୁଏ । ଏହା ଏମାନଙ୍କ ମତରେ କେବଳ ଅଳଙ୍କାର ଗୁଣରେ ଗୁଣୀ । ଆଚାର୍ଯ୍ୟବାମନ ପ୍ରଥମେ ବକ୍ରୋକ୍ତିକୁ ଏକ 'ଅର୍ଥାଳଂକାର' ଶ୍ରେଣୀର ବିନ୍ୟାସ କୌଶଳ ବୋଲି ଗ୍ରହଣ କରିଥିଲେ । ଏହି ଧାରଣା ସେ କାଶ୍ମିର କବି ରତ୍ନାକରଙ୍କର 'ବକ୍ରୋକ୍ତି ପଞ୍ଚାଶିକା' ପଦ୍ୟରୁ ଲାଭ କରିଥିଲେ ବୋଲି କାବ୍ୟତତ୍ତ୍ୱର ଆଲୋଚକମାନେ କହିଥାନ୍ତି ।

କିନ୍ତୁ ଆଚାର୍ଯ୍ୟ କୁନ୍ତକଙ୍କର 'ବକ୍ରୋକ୍ତି ଜୀବିତ' ଏକ ସ୍ୱତନ୍ତ୍ର ମତ, ଭାମହଙ୍କ ସୂତ୍ରରୁ ଏହାର ଉନ୍ମେଷ ହୋଇଥିଲେ ବି କୁନ୍ତକଙ୍କର ବିଶ୍ଳେଷଣରେ ଏହା ନବ କକ୍ଷ ଲାଭ କରିଛି ଏବଂ ସକଳ ପ୍ରାମାଣିକତା ସହ ଏହା ପ୍ରତିଷ୍ଠା ଅର୍ଜନ କରିଛି । ଏକ ଦିଗରେ କବିର ପ୍ରକାଶ ଚାରୁତା, ଅନ୍ୟଦିଗରେ କବିର ତୀର୍ଯ୍ୟକ ଦୃଷ୍ଟିକୁ ଏହା ବହନ କରିଥିବାରୁ କାବ୍ୟରେ ନାନ୍ଦନିକ ସୌନ୍ଦର୍ଯ୍ୟ ସଞ୍ଚାରରେ ଏହା ସମର୍ଥ । କବିର ପ୍ରକାଶ-କଳାରେ ସିନା କାବ୍ୟର ପ୍ରତିଷ୍ଠା ହୁଏ ଏବଂ ଏଇ ପ୍ରକାଶ କଳା ନିତ୍ୟ ଆଶ୍ରୟକରେ ବକ୍ରତାକୁ । ସ୍ୱାଭାବିକ ପ୍ରକାଶରେ କବିତା ନଥାଏ, ସହଜ ବାକ୍ୟାବଳୀ ରସଧନ୍ୟ ହୁଏ ନାହିଁ । ସେଥିପାଇଁ 'ସ୍ୱଭାବୋକ୍ତି'ରେ ବ୍ୟଞ୍ଜନା ନଥିବାରୁ ଏହାକୁ କାବ୍ୟଗୁଣୀ ପଦ ବୋଲି ମଧ୍ୟ ଅଳଙ୍କାରିକମାନେ ଗ୍ରହଣ କରିନଥାନ୍ତି ।

Digitized by srujanika@gmail.com

ବକ୍ର ଅଭିବ୍ୟକ୍ତି ଓ ତୀର୍ଯ୍ୟକ ଦୃଷ୍ଟି ହୁଏତ ବୈଜ୍ଞାନିକ ବା ସାଧାରଣ ଦର୍ଶକ ପକ୍ଷରେ ସ୍ପୃହଣୀୟ । ମାତ୍ର କବିର କବିତାରେ ସୁଚାରୁ ବକ୍ରତା ନ ଫୁଟିଲେ ତାହା ରସ-ଧନ୍ୟ ହେବ କିପରି ? ଇଂରାଜୀ ସମାଲୋଚକ ଇ.ଏମ.ଡବ୍ଲ୍ୟୁ ଟିଲିୟାର୍ଡ କହନ୍ତି 'All poetry is more or less oblique, there is no direct poetry. (Poetry Direct and oblique) ଭାରତୀୟ କାବ୍ୟ-ତତ୍ତ୍ୱରେ ଏଇ ପ୍ରସଙ୍ଗ ବହୁ ପ୍ରାଚୀନ କାଳରୁ ଚିନ୍ତା କରାଯାଇଥିଲେ ମଧ୍ୟ ଏବେ ବି ତାହା କାବ୍ୟ ବ୍ୟାପାରର ନିତ୍ୟସଙ୍ଗୀ ହୋଇ ରହିଛି । କୁନ୍ତକଙ୍କର ପ୍ରତିପାଦନରେ 'ବକ୍ରୋକ୍ତି କାବ୍ୟ-ଜୀବିତ' ରୂପେ ଗୌରବ ଅର୍ଜନେ କରିବା ନନ୍ଦନତତ୍ତ୍ୱ ଦୃଷ୍ଟିରୁ ତେଣୁ ସମୀଚୀନ ନୁହେଁ କି ?



---

(ସହକାର ଷଷ୍ଠବର୍ଷ ଦ୍ୱିତୀୟ ସଂଖ୍ୟା-୮୧)

Digitized by srujanika@gmail.com

# 'କାବ୍ୟ-ବିମ୍ବ' ପ୍ରସଙ୍ଗ ଓ କବି ସାରଳାଦାସ

କବିର ଭାଷା ଅଲଗା, କବିର ଭାଷା-ଭୂମିରେ ଶବ୍ଦ ହେଉଛି ଅନ୍ୟତମ ବିଶିଷ୍ଟ ଉପାଦାନ । କବି ଉବାଚରେ ଶବ୍ଦର ଅର୍ଥସଂବହନ କ୍ଷମତା ବଢ଼ିଯାଏ; ସାଧାରଣ ଶବ୍ଦ କବି-ପ୍ରୟୋଗରେ ନୂତନ ଅଭିଧାଯୁକ୍ତ ହୋଇ ଆପଣାର ଧାରଣା-ଧର୍ମୀ ଓ ସଂବେଗର୍ଭୀ ଶକ୍ତି ବଳରେ କୌଣସି ବସ୍ତୁ ବା ଚିନ୍ତାକୁ ବ୍ୟଂଜିତ କରିଥାଏ । ବ୍ୟଂଜିତ ଶବ୍ଦ ହିଁ ହେଉଛି କୌଣସି ଚିତ୍ର ବା ଚିନ୍ତାର ଜନନୀ । ଏପରି ସ୍ଥଳେ ଶବ୍ଦ-ଶକ୍ତିର ଯେଉଁ ଉତ୍ତରଣ ଘଟେ ତାହାକୁ କବି ଆପଣା ବୋଧଦୃଷ୍ଟି, ରସଦୃଷ୍ଟି ଓ ପ୍ରଜ୍ଞା ଦୃଷ୍ଟି ବନିଯୋଗରେ ସୃଷ୍ଟି କରିଥାନ୍ତି । କବିତାରେ ବିନିଯୁକ୍ତ ବ୍ୟଂଜିତ ଶବ୍ଦ ହେଉଛି କବିଙ୍କର ମାନସ-ପ୍ରତିମା, ଅନ୍ୟନାମ ବାଗ୍‌ପ୍ରତିମା ।

କବି, ଯେଉଁ ବାକ୍-ପ୍ରତିମାଟି ସୃଷ୍ଟିକରେ; ତାହାହିଁ ହେଉଛି 'କାବ୍ୟ-ବିମ୍ବ' । କାବ୍ୟ-କବିତାରେ ପ୍ରତିଫଳିତ କବିଙ୍କ ଦୃଷ୍ଟି-କ୍ରମ ଅନୁସରଣରୁ 'କାବ୍ୟ-ବିମ୍ବ'ର ଅନ୍ୱେଷଣ କରାଯାଇପାରେ । କୌଣସି କାଳର ମାନସ-ପ୍ରତିଫଳନ 'କାବ୍ୟ-ବିମ୍ବ' ଆଧାରରେ କାବ୍ୟର କୁକ୍ଷିଗତ ହୋଇଥାଏ । କାବ୍ୟର ଗଠନ-ପ୍ରକରଣରୁ ଆମେ ଏହାର ସନ୍ଧାନ ପାଇଥାଉଁ । ତେବେ ପ୍ରଶ୍ନ ହେଉଛି– କବି, କାବ୍ୟ-ବିମ୍ବ ବ୍ୟବହାର କରେ କାହିଁକି ? କବି, ଆପଣା ବକ୍ତବ୍ୟ ଓ ଭାବନାକୁ ସିଧା-ସଳଖ ପ୍ରକାଶ କଲେ, ରସ-ଭୋଗରେ ଅନୀହା ଉପୁଜେ କାହିଁକି ? କଥାଟି ହେଲା- କାବ୍ୟରେ ପରୋକ୍ଷ ଭାଷଣର ପ୍ରୟୋଜନୀୟତା ଥିବାରୁ କାବ୍ୟକୁ ଶ୍ରୀମଣ୍ଡିତ କରିବାଲାଗି କବି-କୁଳ 'ବିମ୍ବ'ର ବିନିଯୋଗ କରିଥାନ୍ତି । ଉପମା ପ୍ରବଣ ହୁଅନ୍ତି, ରୂପକ ଲୋଡ଼ନ୍ତି, ଚିତ୍ର-କଳ୍ପର ସାହାଯ୍ୟ ନିଅନ୍ତି ଇତ୍ୟାଦି । ଅନ୍ୟତମ କାରଣ ହେଉଛି– କବିର ଆବେଗ ନିତ୍ୟଦିନର ବ୍ୟାବହାରିକ ଚାରଣ ଭୂମିରୁ ଲବ୍ଧ, ପରିଚିତ-ବାସ୍ତବରେ ସନ୍ତୁଷ୍ଟ ନ ହୋଇ ତାହାକୁ ଅତିକ୍ରମ କରି ତା' ମନର କୌଣସି ଏକ ଅଲଭ୍ୟ ରୂପ-ସତ୍ତା ବା ବସ୍ତୁ ସହ ସମ୍ବନ୍ଧ

Digitized by srujanika@gmail.com

ସ୍ଥାପନ କରେ, ପରିଚିତ-ବାସ୍ତବ (Known Reality)କୁ ଆକାଂକ୍ଷିତ ବାସ୍ତବ (Desired-Reality)ରେ ପରିଣତ କରି ଆପଣା ବେଦନା-ବୃତ୍ତ (Feeling)ମଧ୍ୟରେ ତାହାକୁ ପାଇଥାଏ ଏବଂ କାବ୍ୟ-କବିତା ରଚନା ବେଳେ ଏଇ କାଂକ୍ଷିତ-ବାସ୍ତବ, Realised Ideal ବା ବାସ୍ତବାୟିତ ଆଦର୍ଶ ରୂପେ କବିର ଉଚ୍ଚାରଣରେ ଆତ୍ମପ୍ରକାଶ କରେ । ଏଥିଲାଗି, କବି, ମୁଖର ବର୍ଣ୍ଣନା କରିବାକୁ ଯାଇ ଚନ୍ଦ୍ରର ଉପଲକ୍ଷ୍ୟ ନିଏ; ଏପରି ସ୍ଥଳେ, କାବ୍ୟ-ଭୂମିରେ ଓ କବିର ଆବେଗ ଗର୍ଭରେ– ସଂକୀର୍ଣ୍ଣ-ବାସ୍ତବ (ମୁଖ), ଅଲଭ୍ୟ ଆଦର୍ଶ (ଚନ୍ଦ୍ର)- ସେମାନଙ୍କର ପାରସ୍ପରିକ ଦୂରତ୍ୱ ଏଡ଼େଇ ଦେଇ କବି ମନରେ ମିଳିତ ହୋଇ ଯାଆନ୍ତି । ଉପମାନର ପ୍ରସାଦରୁ ପ୍ରକୃତ-ବାସ୍ତବ (Actual Reality)(ମୁଖ), ହୁଏ ଆଦର୍ଶାୟିତ-ବାସ୍ତବ (Idealised Reality) ଚନ୍ଦ୍ର ଏବଂ ଉପମେୟର ସ୍ପର୍ଶ ହେତୁ କାଂକ୍ଷିତ-ବାସ୍ତବ (Desird Reality)ଟି, ବାସ୍ତବ ମୂଳ-ଆଦର୍ଶ (Realised ideal)ରେ ପରିଣତ ହୁଏ । ଏତେବେଳେ ମୁଖ, ସ୍ଥୁଳ ମୁଖ ହୋଇ ରହେ ନାହିଁ, ତାହା ଚନ୍ଦ୍ରର ସ୍ୱରୂପ ଧାରଣ କରେ । କବି ତହିଁରୁ ସାଦୃଶ୍ୟ-ସୌନ୍ଦର୍ଯ୍ୟ ଛାଣି ନେଇ ଏକ ଅଜ୍ଞାତପୂର୍ବ ବାସ୍ତବର ସୃଷ୍ଟି କରନ୍ତି ଯଥା ଚନ୍ଦ୍ର-ମୁଖ/ ମୁଖ-ଚନ୍ଦ୍ର । ଯେଉଁ ଉପକରଣ ଓ ବିଧାନର ବିନିଯୋଗରେ ଏହା ସାଧିତ ହୋଇଥାଏ, ତାହା ହେଉଛି 'କାବ୍ୟ-ବିମ୍ବ' ।

ଅତଏବ ଏହା ସ୍ପଷ୍ଟ ଯେ, 'କାବ୍ୟ-ବିମ୍ବ'ହିଁ କବି-ଭାବନାର ଜଠରରେ ନୂତନ-ବାସ୍ତବକୁ ଜନ୍ମ ଦେଇଥାଏ, ସେଇଥିପାଇଁ କବିଙ୍କୁ କୁହାଯାଏ ଅଭିନବ-ବିଧାତା, ବିମ୍ବଜୀବୀ ରସସ୍ରଷ୍ଟା ଓ ମନୋହାରୀ ପଦ-କର୍ତ୍ତା । କେତୋଟି ସାର୍ଥକ ଓ ସ୍ମରଣୀୟ 'କାବ୍ୟ-ବିମ୍ବ' ସୃଷ୍ଟି ଦ୍ୱାରା କାବ୍ୟ-ସାଧନାର ଚରମ ଉତ୍କର୍ଷ; ହଜାର ହଜାର ପଦଲେଖି କବି ଯେତିକି ସିଦ୍ଧି ପାଏ ନାହିଁ, ତା'ଠାରୁ ଅଧିକ ସିଦ୍ଧି ପାଏ, ଅଳ୍ପ କେତୋଟି 'କାବ୍ୟ-ବିମ୍ବ'ର ଜନକ ହୋଇ । ତେଣୁ କବିଙ୍କର କବି-ପଣ, 'କାବ୍ୟ-ବିମ୍ବ'ର ଲଳିତ ବିନ୍ୟାସରୁ ଫୁଟି ଉଠେ । କବିଙ୍କର ସୃଷ୍ଟି-ସଂସାରରେ ବସ୍ତୁତଃ 'କାବ୍ୟ-ବିମ୍ବ'ର ଭୂମିକା କେତେ ମୂଲ୍ୟବାନ, ତାହା ଆମେ ଏଥିରୁ ଅନୁମାନ କରିପାରୁଁ । କେବଳ ପ୍ରାସଙ୍ଗିକ-ମୂଲ୍ୟ ଘେନି 'କାବ୍ୟ-ବିମ୍ବ'କୁ ମାପିବା, ଆଭିଧାନିକ ଅର୍ଥର ଜାଲ ଭିତରେ ତାକୁ ପରୀକ୍ଷା କରିବା ପ୍ରବୃତ୍ତିରୁ 'କାବ୍ୟ-ବିମ୍ବ'ର ନାନ୍ଦନିକ ଐଶ୍ୱର୍ଯ୍ୟ ଜାଣିହୁଏ ନାହିଁ ।

କବି ସାରଳାଦାସଙ୍କ 'କାବ୍ୟ-ବିମ୍ବ'ର କଳନା ଏବଂ ତାହାର ଅନୁଶୀଳନ ବେଳେ ବିଶେଷ ନିରୀକ୍ଷା-ଦୃଷ୍ଟି ଆବଶ୍ୟକ । ଯଦି ସାଧାରଣ ଦୃଷ୍ଟି ଘେନି ଅନୁସନ୍ଧାନରେ ପ୍ରବେଶ କରାଯାଏ ତେବେ ପୁରାଣ-କଥାର ମାୟାଜାଲ ହିଁ ଆଖିକି ଦିଶିବ ସିନା, ତାହାର ଅନ୍ତର୍ଭେଦୀ ଭାବ-ସ୍ତର ଏତେ ସହଜରେ ମନକୁ ଆବୋରି ବସିବ ନାହିଁ ।

Digitized by srujanika@gmail.com

କାରଣ କାହାଣୀର ମଗ୍ନ-ସ୍ତରରୁ କବି-ଦୃଷ୍ଟିର ଆଧେୟଟିକୁ ତୋଳି ଆଣିବାବେଳେ ନିରୀକ୍ଷକ ଏପରି ସାଂକେତିକ ଉପାଦାନର ସାକ୍ଷାତ ଲୋଡ଼େ, ଯେଉଁମାନଙ୍କର ସାନିଧ ଓ ମର୍ମସ୍ପର୍ଶୀ ଆବେଦନରୁ ଗୋପ୍ୟ ଅନେକ ମର୍ମର ସୂଚନା ମିଳିଥାଏ । କବିଙ୍କର 'କାବ୍ୟ-ବିମ୍ବ' ଗୁଡ଼ିକ ହିଁ ବସ୍ତୁତଃ ଗୋପ୍ୟ ଓ ଅବ୍ୟକ୍ତ ତଥ୍ୟ ଓ ସତ୍ୟର ସଂଳାପ ବିତରଣ କରିଥାନ୍ତି ।

ସାରଳା ଦାସ, ପ୍ରାଚୀନ କାଳର କାବ୍ୟ-ସ୍ରଷ୍ଟା ହେଲେ ବି ତାଙ୍କର କବି-ମନ ପରଂପରାରୁ ମୁକ୍ତ ହେବାଲାଗି ବିଦ୍ରୋହ କରିଛି । ପୁରାଣ-ଶାସ୍ତ୍ର ରଚନା, ଯେଉଁ ସମୟରେ ସଂସ୍କୃତ-ସାମ୍ରାଜ୍ୟବାଦ ଦ୍ୱାରା କବଳିତ, ସେତେବେଳେ ସାରଳା ଦାସ ଓଡ଼ିଆ ଭାଷାରେ ଓଡ଼ିଆ ମହାଭାରତ ରଚନା କରି ଏକ ବିପ୍ଳବ ଆଣିଲେ । ଏହି କାରଣରୁ ସେ ଜଣେ ବିପ୍ଳବୀ । ସାଧାରଣ କୃଷିକାରୀ ହେଲେବି ବୌଦ୍ଧିକ ସ୍ତରରେ ସେ ହେଉଛନ୍ତି, ରେନାସାଁସ୍‌ର ଦିଶାରି । ଆପଣା ସୃଷ୍ଟିର ପରିକଳ୍ପନା ମୂଳରେ ତାଙ୍କର ଥିଲା ଅଗ୍ରଚାରୀ ରେନାସାଁସ୍ କବି-ଦୃଷ୍ଟି । ଚେତନାର ଜନ୍ମାନ୍ତରକୁ ଯଦି ରେନାସାଁସ୍‌ର ପ୍ରାଣଶକ୍ତି ବୋଲି ଧରି ନିଆଯାଏ, ତେବେ ସାରଳା ଦାସ, ତାଙ୍କ ସାହିତ୍ୟ ସୃଷ୍ଟିର ପରିକଳ୍ପନାରେ, ଆଙ୍ଗିକ ପ୍ରକରଣରେ, ଏବଂ ଭାବବୋଧରେ ନବ-ଚେତନାର ଉଦୟରାଗ ବିତରଣ କରିଥିଲେ ।

ପ୍ରାଚୀନ ଓ ମଧ୍ୟଯୁଗର କବିଗଣ ପ୍ରଥା-ବଦ୍ଧ ଆଙ୍ଗିକ ଉପକରଣର ସାହାଯ୍ୟ ନେଇ କାବ୍ୟ-ସର୍ଜନାରେ ପ୍ରାୟ ପ୍ରବେଶ କରିଥିଲେ । କାବ୍ୟ-ବିମ୍ବର ପ୍ରୟୋଗ ବେଳେ ଏମାନେ କେତେକ ନିର୍ଦ୍ଦିଷ୍ଟ କ୍ଷେତ୍ର, କେତେକ ନିର୍ଦ୍ଦିଷ୍ଟ ବସ୍ତୁକୁ ଗ୍ରହଣ କରିଥିଲେ । ସେ କାଳର କବି ଚଳଣିରେ ନାୟିକାର ବୟଃସନ୍ଧି ବର୍ଣ୍ଣନା, ନାୟକ-ନାୟିକାଙ୍କର ପୂର୍ବରାଗ, ଅଭିସାର, ମିଳନ, ବିରହ ଇତ୍ୟାଦି ଜାଗତିକ-ପ୍ରକୃତିର ବର୍ଣ୍ଣନା ବେଳେ ବିଧିବଦ୍ଧ କେତୋଟି କାବ୍ୟ-ବିମ୍ବର ବ୍ୟବହାର ପ୍ରାୟ ଘଟୁଥିଲା । ପ୍ରଥା-ସିଦ୍ଧ ଛକ ଡେଇଁ ନୂଆ ରାସ୍ତାରେ ବିଚରଣ କରିବା ଭଳି ସର୍ଜନାତ୍ମକ ପ୍ରୟାସ ପ୍ରାୟ ନଥିଲା କହିଲେ ଚଳେ । ଏକାଳର କବିଗଣ ବିମ୍ବ-କଳ୍ପନା ଅବସରରେ ସାଦୃଶ୍ୟ-ମୂଳ ଚିତ୍ର ସୃଷ୍ଟି ଉପରେ ବିଶେଷ ଧ୍ୟାନ ଦେଉଥିଲେ । ବସ୍ତୁସଂଗେ ବସ୍ତୁର ତୁଲ୍ୟ ଯୋଗ୍ୟତା ଆଣି ଚମତ୍କୃତି ସଂଚାରର ଉଦ୍ୟମ କବିମାନଙ୍କଠାରେ ସର୍ବାଧିକ ଲକ୍ଷିତ ହେଉଥିଲା । ଉପମା, ରୂପକ ନିର୍ମାଣ ବ୍ୟାପାରରେ ବସ୍ତୁ-ପ୍ରାଧାନ୍ୟ ଥିଲା ବଡ଼ କଥା, ସାଦୃଶ୍ୟର ପାଟର୍ଣ୍ଣଟିଏ ସୃଷ୍ଟି କରି ପାରିଲେ କାବ୍ୟ-ଶିଳ୍ପରେ ବିଭୂତିଯୋଗ ଘଟିଲା ବୋଲି ମନେ କରାଯାଉଥିଲା ।

କବି ସାରଳା ଦାସ, ଦୁଇ କିସମର କାବ୍ୟବିମ୍ବ ପ୍ରାୟ ସର୍ବତ୍ର ବ୍ୟବହାର କରିଛନ୍ତି– ପ୍ରଥା-ସିଦ୍ଧ ଓ ପ୍ରଥାମୁକ୍ତ (ନୂତନ ବିମ୍ବ) । ବିମ୍ବ କଳ୍ପନା ବେଳେ, କବି

Digitized by srujanika@gmail.com

ଚଳଣିରେ ବ୍ୟବହୃତ ବିମ୍ବର ସାଜକୁ ମଡେଲ ବା ନମୁନା ମନେ କରି, ନିଜ ଜୀବନାନୁଭୂତି ଓ ଆବେଗକୁ ରୂପ ଦେଲାବେଳେ କବି ସ୍ଥଳ ବିଶେଷରେ ପରିବର୍ତ୍ତନ ମଧ କରିଛନ୍ତି । କବି ପରଂପରାରେ ଦେଖୁଁ ନାରୀ-ରୂପ ବର୍ଣ୍ଣନା ପ୍ରସଙ୍ଗରେ 'ଡମ୍ବରୁ ମଧମା' ବା 'କେଶରୀ ମଧମା' କାବ୍ୟ-ବିମ୍ବର ପ୍ରୟୋଗ । ସାରଳା ଦାସ, ନବଜାତ ପାଣ୍ଡୁଙ୍କର ରୂପ ବର୍ଣ୍ଣନା ବେଳେ ଏପରି କାବ୍ୟ-ବିମ୍ବର ପ୍ରୟାଗ କରିଛନ୍ତି । ଯେପରି 'ଆରକତ ପଦ୍ମଜାଣି ଦିଶଇ ବେନିଚକ୍ଷୁ/ ଗଜରିପୁ ବକ୍ଷସ୍ଥଳ ମଝା ସମକକ୍ଷୁ''/ (ଆଦିପର୍ବ-୯୩ପୃ) । 'ଗଜରିପୁ ବକ୍ଷସ୍ଥଳ' ଉପମା ପ୍ରୟୋଗରେ ପ୍ରଥାନୁସରଣର ଦୃଷ୍ଟାନ୍ତ ନିହିତ ।

କବିଙ୍କର ବିମ୍ବ-କଳ୍ପନାରେ 'ପଦ୍ମମୁଖ' 'ସରୋଜମୁଖ' 'ପଙ୍କଜ-ମୁଖ' ଇତ୍ୟାଦିର ପର୍ଯ୍ୟାପ୍ତ ପ୍ରଚଳନ ଆମେ ଲକ୍ଷ୍ୟ କରିଥାଉଁ; ଏଥି ସହିତ ବ୍ୟତିକ୍ରମ ବି ପାଉଁ । ଗଣେଶ ବନ୍ଦନା ପ୍ରସଙ୍ଗରେ କବି ସାରଳା ଦାସ ପ୍ରୟୋଗ କରିଛନ୍ତି- 'ସରୋଜ ଦଧିମୁଖ' କାବ୍ୟ-ବିମ୍ବ । ସରୋଜ ପରି ସୁନ୍ଦର, ଦଧି ପରି ଶୁକ୍ଳମୁଖ । ସରୋଜ; ଶ୍ରୀବାସୌନ୍ଦର୍ଯ୍ୟର ଏବଂ 'ଦଧି' ମଂଗଳ/ଶୁକ୍ଳ ବର୍ଣ୍ଣର ସାଂକେତିକ ଅଭିବ୍ୟକ୍ତି । ବଂଶାନୁଚରିତ କଥନ ଅବସରରେ ସାରଳାଦାସ, 'ଯମଦ' ଶବ୍ଦ-ଚିତ୍ରଟିର ବ୍ୟବହାର କରିଛନ୍ତି; ଏହା ପୁରୁଷ-ପ୍ରକୃତି ଯୁଗ୍ମ-ସତ୍ତାକୁ ବିମ୍ବିତ କରୁଛି । 'ଅର୍ଦ୍ଧନାରୀଶ୍ୱର' ଇମେଜରେ ପୁରୁଷ-ପ୍ରକୃତି ଦ୍ୱୈତସତ୍ତାର ରୂପକ ଆମେ ପାଇଁଥାଉଁ, କିଂତୁ ସାରଳାଦାସଙ୍କ କଳ୍ପନାରେ 'ଯମଦ' (ଆଦିପର୍ବ) ବାକ୍-ପ୍ରତିମାଟିରେ ସେଇ ଭାବ-ମୂର୍ତ୍ତିର ପରିସ୍ଫୁଟନ ଘଟିଛି; ଏହା ମିଷ୍ଟିକ୍ ଅବବୋଧର ଏକ ପରିପ୍ରକାଶ । ଚିତ୍ର-ପିତୁଳୀ ସହ ସଙ୍ଗମରୁ 'ଚିତ୍ର-ବୀର୍ଯ୍ୟ'ଙ୍କର ଜନ୍ମ, ନାମର ବ୍ୟଂଜନାରୁ ମିଳେ, କାର୍ଯ୍ୟ-କାରଣର ସଙ୍ଗତି ।'ଚିତ୍ର-ବୀର୍ଯ୍ୟ' ଏକ ଶାବ୍ଦିକ-ବିମ୍ବ, ଅଭିଧାମୂଳ । ସେହିପରି ଭୀଷ୍ମଙ୍କର ତେଜ ଓ ପ୍ରତାପକୁ 'ଜଳନ୍ତାଜୋଇ' ରୂପକରେ ଚିହ୍ନିବା ମୂଳରେ ଅଛି, ଶୌର୍ଯ୍ୟ-ଶକ୍ତି ଓ ରୂପଦୀପ୍ତି ପ୍ରତି ସମର୍ଥନ । 'ରାଜାମାନେ ବୋଇଲେ ହୋ ଯେଡ଼େ କାହାର ସାହାସ / ଜଳନ୍ତା ଜୋଇରେ କେହୁ ଦେଇଣ ଦେବ ଝାସ' । ଏଠି 'ଜଳନ୍ତା ଜୋଇ' ରୂପକ ସତ୍ତାଟିର ଭାବ ସମୁନ୍ନତି (Sublimation) ସାଧିତ ହୋଇଛି; ଇମେଜଟି ଧ୍ୱଂସ, ମୃତ୍ୟୁ, ପରାଜୟର ଭୟାବହତା ଆଣୁଛି, ସତ, ତା' ସହିତ ସଂଚାର କରୁଛି ଅବିନାଶୀ ଆତ୍ମଶକ୍ତି ଓ ଅମଳିନଦୀପ୍ତିର ଆଭାସ; ଭୀଷ୍ମ ହେଉଛନ୍ତି ଯାହାର ଏକ ଅଖଣ୍ଡ ଭାବ-ମୂର୍ତ୍ତି ।

ମହାଭାରତର ଚରିତ୍ର-ଚର୍ଯ୍ୟାରେ ବିମ୍ବ-ପ୍ରବଣ (Imagist) କବି-ଦୃଷ୍ଟିର ପରିଚୟ ମିଳେ । କୈବର୍ତ୍ତକନ୍ୟା 'ଯୋଜନ ଗନ୍ଧା' (ଓରଫ ସତ୍ୟବତୀ) ନାମ କରଣରେ ଚାରିତ୍ରିକ ଗୁଣ-ଧର୍ମର ସାଂକେତିକ ଅର୍ଥ-ବୋଧ ଉପଲବ୍ଧ ହୁଏ– 'କମଣ୍ଡଳୁ ଜଳ

Digitized by srujanika@gmail.com

ଘେନି ମୁନି କରାଇଲେ ସ୍ନାହାନ / କସ୍ତୂରୀଗନ୍ଧ ଆମୋଦଇ ଯେକଇ ଯୋଜନ / ଗନ୍ଧ ସମୀର ବହିଲା ଯେକ ଯୁଣ ପରିଯନ୍ତେ/ ପାରେଶ୍ୱର ଯୋଜନାଗନ୍ଧା ନାମ ଦେଲେଟି ଯେ ମୋତେ'' (ଆଦିପର୍ବ) । ବ୍ୟାଲୋଳ ରୂପ ଅର୍ଥାତ୍ ବିଷମ ଅଙ୍ଗ ପ୍ରତ୍ୟଙ୍ଗ ହେତୁ ପାରେଶ୍ୱର, ସ୍ୱପୁତ୍ରଙ୍କ ନାମ ଦେଇଥିବାଲେ ବ୍ୟାସ, ସୁନ୍ଦର ପୁରୁଷମାନଙ୍କ ପ୍ରତି ଆସକ୍ତ ହୋଇ ପଡ଼ିବାରୁ ନାରୀମାନଙ୍କୁ କୁହାଯାଏ ପ୍ରମଦା– 'ପୁରୁଷ ସୁନ୍ଦର ଦେଖିଲେ ଆମ୍ଭେ ହୋଉ ମଉଭୋଳୀ / ତେଣୁଟି ପ୍ରମଦା ନାମ ଯେ ଅଟଇ ଆମ୍ଭର / ଅନୁବ୍ରତେ ଇଚ୍ଛାକରୁଁ ପୁରୁଷସୁନ୍ଦର /'' ଇତ୍ୟାଦି ବାଚିକ-ପ୍ରକାଶରେ କବିଙ୍କର ବିଶ୍ୱାତ୍ମକ ଦୃଷ୍ଟିର ଅନ୍ୱେଷଣ କରାଯାଇପାରେ ।

ସାରଳାଦାସ, ପ୍ରଥାବଦ୍ଧ ପାରଂପରିକ ଶୈଳୀରେ ରୂପବର୍ଣ୍ଣନା, ଦୃଶ୍ୟ-ବର୍ଣ୍ଣନା, ରତିକ୍ରୀଡ଼ା ବର୍ଣ୍ଣନା ଇତ୍ୟାଦି ଛତ୍ରରେ ନାନା କିସମର ବିମ୍ବ ପ୍ରୟୋଗ କରିଛନ୍ତି । ସେଗୁଡ଼ିକ ମୁଖ୍ୟତଃ ସାଦୃଶ୍ୟ-ବ୍ୟଞ୍ଜକ କିଂବା ବସ୍ତୁ ଓ ଭାବର ସଙ୍ଗତିରେ ଗଢ଼ା । ରତିମତ୍ତା ନାୟିକାଙ୍କୁ 'ମଦନ ଭାବିନୀ', କାମରସ ଶିଖା, ମାନିନୀ, (ଅମ୍ବିକା-ବ୍ୟାସରତି), ଅସାଷ୍ଟମ କାମ-ମୂର୍ତ୍ତି, ରୂପେ ଚିତ୍ରିତ କରାଯାଇଛି । ରତି-କ୍ରୀଡ଼ାର ବର୍ଣ୍ଣନାବେଳେ ଅଙ୍ଗ ଓ ମନର ଅବସ୍ଥାକୁ ବସ୍ତୁ ଜଗତରୁ ଆନୀତ ଉପମାନମାଧ୍ୟମରେ କବି ପ୍ରକାଶ କରିଛନ୍ତି– ଅମ୍ବାଳିକା-ବ୍ୟାସରତି ପ୍ରସଙ୍ଗରେ କଥିତ, ''ଶୃଙ୍ଗାର ମାଗଇ ବାଳୀ କାମର ଉଛାଟେ/ ଯାମଳା ତରୁ ଯେହ୍ନେ ଜଡ଼ିତ ଯେକ ଭେଟେ ।'' (ଆଦିପର୍ବ) 'ଯାମଳାତରୁ' ଉପମାଟି କାୟିକ ଓ ମାନସିକ ଅବସ୍ଥାରେ ବାସ୍ତବ-ଅଭିଜ୍ଞତା ଲବ୍ଧ ଚିତ୍ର-ରୂପ ମାତ୍ର ।

ନାରୀ-ରୂପ ବର୍ଣ୍ଣନାବେଳେ ପାରଂପରିକ କାବ୍ୟ-ବିମ୍ବର ପ୍ରୟୋଗ କରାଯାଇଛି । ଅଙ୍ଗ ଶୋଭାଚିତ୍ରଣ ବେଳେ, ନାୟକଯୁଗଳ ନୀଳଉତ୍ପଳ, ନାସାତିଳ ଫୁଲ, ଦନ୍ତ ଗଜମୋତି, ଅଧର ବଧୂଲି ବର୍ଣ୍ଣ, ପାଦତଳ ରକ୍ତକୁମୁଦ, ରାଜହଂସ ଗତି, କୋକିଳବଚନ, ସ୍ତନ ମନ୍ଦର ମଦନ ପସରା, ଇତ୍ୟାଦିର ଉପଲକ୍ଷ୍ୟ ନିଆଯାଇଛି । ଅଳଂକାର-ଶୋଭିତା ନାରୀର ରୂପ, ଆମ କଳା-ସ୍ଥାପତ୍ୟର ଏକ ପ୍ରତିମୂର୍ତ୍ତି ତୁଲ୍ୟ ଚିତ୍ରିତ, ସମ୍ଭବତଃ ଉତ୍କଳୀୟ ସ୍ଥପତିର ସୌନ୍ଦର୍ଯ୍ୟ-ଦୃଷ୍ଟି, ସାରଳା ଦାସଙ୍କର 'ବିମ୍ବ-ସଜ୍ଜା'ର ପ୍ରେରଣା ଉତ୍ସ । କାଳିଦାସଙ୍କ କାବ୍ୟରେ (ରଘୁବଂଶମ୍) ଚିତ୍ରଦ୍ୱାରା ଉଦ୍‌ବୋଧିତ ମାନସିକ ଅବସ୍ଥାର ପରିଚୟ ସ୍ଥଳେ ସ୍ଥଳେ ଅନୁଭୂତ ହେଲାପରି ସାରଳାଦାସଙ୍କ ଉପମା-ଭୂମିରେ ତଥାରୂପ ସିଦ୍ଧି ଲକ୍ଷ୍ୟ କରାଯାଇପାରେ । କିନ୍ତୁ ସାରଳାଦାସଙ୍କର ବିମ୍ବଯୋଜନା ଓ ଅଭିବ୍ୟକ୍ତିରେ ଅଛି ସରଳତା ଓ ନିରାଡ଼ମ୍ବରତା । ଯେପରି– ''ଦିନୁଂଦିନ କୁମାରୀ ଯେ ବଢ଼ଇ ଆନୁ ଆନ/ଶୁକଳ ପକ୍ଷେ ଯେହ୍ନେ ଉଦିତ ହୋଯେ ଜହ୍ନ/ କେତେ ହେଂକ ଦିନେ କନ୍ୟା ହୋଇଲା ନବଯୁବା/ ମଦନ ପସରା ଜାଣି

Digitized by srujanika@gmail.com

ଦିଶଇ ବେନି କୁଚ ଆଭା/ ନୟନ ନୀଳ ଉତ୍ପଳ ନାସାତିଳ ଫୁଲ/ ଦନ୍ତ ଗଜମୋତି ବନ୍ଧୂଲି ଅଧର ଅମୂଲ୍ୟ/ ବୃଷାଳ ବକ୍ଷସ୍ଥଳ ପଦ୍ମନାଡ ବେନି ଭୁଜ/ ପଦ୍ମପତ୍ର ପେଟ ନିତମ୍ବ ଉରଜ/ ରକତ କୁମୁଦ ଜାଣି ପାଦତଳ ରଂଗ/ ରାଜହଂସ ଚାଲି ଶୋଭା ଦିଶଇ ସୁରଙ୍ଗ/ କୋକିଳା ବଚନ ଭାଷଇ ମୃଦୁ ରସ/ ଅପାଙ୍ଗ ଚାହାଣୀରେ କନ୍ଦର୍ପ ହୋଇବଟି ଧ୍ୱଂସ/ (ଉଷାହରଣ ମଧ୍ୟପର୍ବ-୨ୟ ଖଣ୍ଡ)

ତେଣୁ କୁହାଯାଇପାରେ, ସାରଳା ଦାସଙ୍କ ବିମ୍ବ ପ୍ରୟୋଗ ଯେପରି ପ୍ରଥାସିଦ୍ଧ ସେହିପରି ପ୍ରଥାମୁକ୍ତ । ନାରୀର ରୂପ ବର୍ଣ୍ଣନାରେ ଏବଂ ମହାଭାରତର ଚରିତ୍ରଚର୍ଯ୍ୟାରେ କବିଙ୍କର ବିମ୍ବ-ପ୍ରବଣ କବି ଦୃଷ୍ଟିର ପରିଚୟ ମିଳେ । ସାରଳା ଦାସଙ୍କ ବିମ୍ବ ପ୍ରୟୋଗ ପରବର୍ତ୍ତୀ କବିମାନଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଛି ।



Digitized by srujanika@gmail.com

# ଆଧୁନିକତା ଓ ଆଧୁନିକ କବିତା-ତତ୍ତ୍ୱ

## ଆଧୁନିକତାର ଭାଷ୍ୟ :

ଆଧୁନିକତା, ଏକ ଚେତନା । ମଣିଷର ମାନସ-ବୃତ୍ତିକି ଅଧ୍ୟୟନ କଲେ ଏଇ ଚେତନାକୁ ଚିହ୍ନିହୁଏ । ଏହା ଏକ ଭାବ । ପ୍ରକୃତି ଓ ପରିବେଶ ନିକଟରେ ଆତ୍ମ ପ୍ରତିଷ୍ଠା ଲାଗି ମଣିଷର ସମୂହ ପ୍ରୟାସ ଓ ସାଧନାର ଅଙ୍ଗ ବିଶେଷ ।

ଆଧୁନିକତା ହେଉଛି ବିପ୍ଳବର ଏକ ଫଳଶ୍ରୁତି, ବିଦ୍ରୋହର ନୁହେଁ । ବିପ୍ଳବ ଓ ବିଦ୍ରୋହ ମଧ୍ୟରେ ଭେଦ ଅଛି । ସମାଜର ନିଗଡ଼ ନ ବଦଳାଇ ସାମୟିକ ପ୍ରତିକ୍ରିୟା ପ୍ରକାଶକୁ କୁହାଯିବ ବିଦ୍ରୋହ । ମୂଲ୍ୟବୋଧର ପରିବର୍ତ୍ତନ ପାଇଁ, ସମାଜର ଦର୍ଶନ ଓ ମଣିଷର ଚିରପୋଷିତ ଚେତନାର ରୂପାନ୍ତର ଲାଗି ଯେଉଁ ସଂଗ୍ରାମ, ତାହା ବିପ୍ଳବ । ବିପ୍ଳବ ଜନ୍ମ ଦିଏ, ନୂତନ ମାଟି ଓ ତାର ମଣିଷକୁ । ଏଇ ବିପ୍ଳବ ହେଉଛି ଆଧୁନିକତାର ପ୍ରସୂତି । ବିପ୍ଳବ ବୋଇଲେ ଭୌତିକ ବିପ୍ଳବ ନୁହେଁ, ଭାବ ବିପ୍ଳବ ।

ଆଧୁନିକତା କେବଳ କାଳକୁ ବୁଝାଏ ନାହିଁ । ଆଧୁନିକତାର ପ୍ରାଣ ଭିନ୍ନ । ଯେଉଁଥିରେ ମଣିଷର ମାନସିକ ସଂଘାତର ଇତିହାସ ସ୍ପଷ୍ଟ, ଧର୍ମ ଓ ବିଜ୍ଞାନ ମଧ୍ୟରେ ଦେଖାଦେଉଥିବା ସଂଘର୍ଷର ଚିତ୍ର ଜୀବନ୍ତ; ଯେଉଁଥିରେ ଶାସ୍ତ୍ରୀୟ ଆଚାର-ଅନୁଷ୍ଠାନ କର୍ତ୍ତୃତ୍ୱରୁ ମୁକ୍ତିଲାଗି ତୀବ୍ର ସ୍ୱର ଉଚ୍ଚାରିତ ଏବଂ ଯାହା ନୂତନ ସମାଜ ସୃଷ୍ଟିର ଆବେଗ ଘେନି ଉଦ୍‌ବୁଦ୍ଧ, ତାହାହିଁ ଆଧୁନିକ; ଆଧୁନିକତାର ପ୍ରାଣାଧାର ।

ଆଧୁନିକତାର ବର୍ଣ୍ଣଭେଦ ଅଛି; ଫେସନ୍ ମୋହ ମଗ୍ନ ମଣିଷର କାର୍ଯ୍ୟକଳାପରୁ ଜାତ–ଅନୁକରଣାତ୍ମକ ଆଧୁନିକତା । ସମାଜର କୌଣସି ଅବସ୍ଥା ବା ଅଭ୍ୟସ୍ତ ଚଳଣିର ସାମୟିକ ପରିବର୍ତ୍ତନ ଲାଗି ପ୍ରତିକ୍ରିୟା ପ୍ରକାଶରୁ ଜାତ– ପ୍ରତିକ୍ରିୟାତ୍ମକ ଆଧୁନିକତା । ନୂତନ ଚଳଣି ଓ ରୁଚିବୋଧ ପ୍ରତି ଏକ ପ୍ରକାର ସପକ୍ଷବାଦୀ ମନୋବୃତ୍ତିର ଆଭାସରୁ

Digitized by srujanika@gmail.com

ଜାତ–ପ୍ରତିବୋଧାତ୍ମକ ବା ରେସ୍‌ପନସିଭ୍ ଆଧୁନିକତା । ମାତ୍ର ସର୍ଜନାତ୍ମକ ଆଧୁନିକତାରେ ଥାଏ ବିଶେଷ ଚେତନାକୁ ନେଇ ଭବିଷ୍ୟତ୍ ଗଢ଼ିବାର ପ୍ରୟାସ । ସର୍ଜନାତ୍ମକ ଆଧୁନିକତାର ଦର୍ଶନହିଁ ବାସ୍ତବତଃ ଆଧୁନିକତାର ଦର୍ଶନ । କଳା, ସଙ୍ଗୀତ, ସାହିତ୍ୟ, ସ୍ଥାପତ୍ୟ, ସଂସ୍କାର ପ୍ରଭୃତି ହେଉଛି ଏହାର ଯୋଗ୍ୟତମ ମାଧ୍ୟମ ।

ଐତିହ୍ୟ ଓ ବର୍ତ୍ତମାନ ସହ ସମନ୍ୱୟାତ୍ମକ ସମ୍ବନ୍ଧସୂତ୍ର ସ୍ଥାପନରେ ଆଧୁନିକତାର ମୂଳତତ୍ତ୍ୱନିହିତ । ଆଧୁନିକତାର ଦୃଷ୍ଟିରେ; ଐତିହ୍ୟ ଅପୂର୍ଣ୍ଣ, ବର୍ତ୍ତମାନ ବି ଅପୂର୍ଣ୍ଣ । ଦୁହିଁଙ୍କୁ ମିଳେଇ ତୃତୀୟର ଆବିର୍ଭାବଲାଗି କ୍ଷେତ୍ର ପ୍ରସ୍ତୁତ କରେ ଆଧୁନିକତା । ଏଥିରେ ଥାଏ ଐତିହ୍ୟଠାରେ ସାମଞ୍ଜସ୍ୟ ସନ୍ଧାନର ସ୍ୱୀକୃତି, ନୂଆ ଅନୁଭୂତିର ପ୍ରକାଶ ଲାଗି ନୂଆ ଶୈଳୀର ସଂକେତ, ଚିନ୍ତା ଓ କଳ୍ପନାର ସମନ୍ୱୟ, ଏବଂ ବ୍ୟକ୍ତି ଜୀବନ ଓ ପରିବେଶ ପ୍ରତି ମୋହମୁକ୍ତ ଦୃଷ୍ଟିଭଙ୍ଗୀ ।

## ୨। ସାଂପ୍ରତିକତା/ସମକାଳୀନତା କାହାକୁ କହନ୍ତି ?

ସାଂପ୍ରତିକତା କୌଣସି କାଳ, କୌଣସି କୌଳିକତା କିମ୍ବା ଦେଶ ଓ ଦେଶୀୟତାର ସୀମିତ ଆୟତନ ଆଶ୍ରାରେ ବିକଶିତ ।

ସାଂପ୍ରତିକତାରେ ବିଶ୍ୱାସୀ କବି ଚଳନ୍ତି ବାସ୍ତବତାର ଉପଲବ୍ଧି ଘେନି ସନ୍ତୁଷ୍ଟ; ପ୍ରତ୍ୟକ୍ଷ ଅନୁଭୂତିକି ଐତିହ୍ୟ ଆଡ଼କୁ ପ୍ରସାରିତ କରି 'ବର୍ତ୍ତମାନ ଓ ଅତୀତ'ର ସଂଯୋଗରେ ଏକ ସାମଗ୍ରିକ ସଚେତନା ସୃଷ୍ଟି କରିବା ତା'ର ଧ୍ୟେୟ ନୁହେଁ ।

ସାଂପ୍ରତିକତା 'ଐତିହ୍ୟ'କୁ ଅସ୍ୱୀକାରକରେ, 'ବର୍ତ୍ତମାନ'କୁ ଉପଜୀବ୍ୟ ବିଚାରେ, 'ଭବିଷ୍ୟବାଦ' ପ୍ରତି ବ୍ୟାକୁଳତା ପ୍ରକାଶ କରିଥାଏ । ମାତ୍ର ବର୍ତ୍ତମାନଠାରୁ ଅତୀତ ଓ ଭବିଷ୍ୟତ୍‌କୁ ବିଚ୍ଛିନ୍ନ କରିବା ଆଧୁନିକତାର ଧର୍ମ ନୁହେଁ ।

ଶାଶ୍ୱତ ସହିତ 'ସାଂପ୍ରତିକତା'ର ସମ୍ବନ୍ଧ ଦୁର୍ବଳ; ଆପଣା ତମ୍ବୁ ଭିତରେ ଆଶ୍ରା ନେଇଥିବା ଜଣେ ମୁଗ୍‌ଧ ନିବାସୀ ପରି 'ସାଂପ୍ରତିକତା'ର ମତି-ଗତି; ସାରା ଭୁବନର ଛାଇ ଏହାକୁ ଛୁଏଁ ନାହିଁ ।

ସ୍ଥାନୀୟତା ଓ ତାତ୍‌କାଳିକତାର ଚଉକାଠ ଭିତରେ 'ସାଂପ୍ରତିକତା'ର ସ୍ଥିତି; ଏତିକି ପରିସର ମଧ୍ୟରେ ଜୀବନ ଚାରଣା ଓ ଜୀବନ ସର୍ଜନାର ସୀମିତ ପିପାସା ହିଁ ସାଂପ୍ରତିକତାର ପୁଞ୍ଜି ।

## ୩. ଆଧୁନିକ କବିତାର ସଂଜ୍ଞା :

ସମୟ ଗର୍ଭରେ ଲୁକ୍‌କାୟିତ ମାନବ ଜ୍ଞାନର ସମଷ୍ଟିକି ବର୍ତ୍ତମାନର ଆଲୋକରେ ଅଧିକ ବ୍ୟାପ୍ତ ଓ ନୂତନ ଅର୍ଥମୟ କରି ପ୍ରକାଶ କରୁଥିବା କବିତାହିଁ ଆଧୁନିକ କବିତା ।

Digitized by srujanika@gmail.com

ଆଧୁନିକ ଜୀବନର ଜଟିଳତା, ଅନୁଭୂତିର ବୈଚିତ୍ର୍ୟ ଏବଂ ବିଜ୍ଞାନପ୍ରସୂତ ବିବିଧ ଜ୍ଞାନକୁ ପାରମ୍ପରିକ ଶୈଳୀ ପରିବର୍ତ୍ତେ, ନୂତନ ଶୈଳୀରେ ପ୍ରକାଶ କରୁଥିବା କବିତା ହିଁ ଆଧୁନିକ କବିତା । ଏହା ଏକାବେଳେକେ ଆଙ୍ଗିକ ପ୍ରଧାନ ନୁହେଁ କି ଆତ୍ମିକ ବିଭୋରତା ମଧ୍ୟ ଏହାର ଏକକ ଲକ୍ଷଣ ନୁହେଁ । ଏହାର ଶୈଳୀ 'ଆଙ୍ଗିକ ଓ ଆତ୍ମା'ର ଜୀବନ୍ତ ସମନ୍ୱୟରେ ଗଢ଼ା; କବିର ପାରିପାର୍ଶ୍ୱ ଚେତନା ଓ ଐତିହ୍ୟ ଏଠି ଯୋଗସୂତ୍ର ଘେନି ଏକାକାର ।

ବର୍ଣ୍ଣନାର ମୋହଭାଙ୍ଗି, 'ସୂଚନା'କୁ ଏକାନ୍ତ ମାଧ୍ୟମ ବୋଲି ବିଚାରୁ ଥିବା କବିତାହିଁ ଆଧୁନିକ କବିତା; ଏଥିପାଇଁ ପ୍ରଧାନ ଉପକରଣ ହେଲେ– ଶବ୍ଦ, ଧ୍ୱନି ଓ ପ୍ରତୀକ । ଶବ୍ଦର **ଅର୍ଥ** ଅନ୍ତରାଳରେ ଗୋପ୍ୟ ଅର୍ଥର ଅନ୍ୱେଷଣ ଏହାର ମୁଖ୍ୟ ପ୍ରବୃତ୍ତି ।

ଆବେଗଧର୍ମୀ ଉଚ୍ଛ୍ୱାସ ଅପେକ୍ଷା ମନନଧର୍ମୀ ପ୍ରକାଶ ଭଙ୍ଗିଆରେ ବହୁ ପଲ୍ଲବିତ ଚିନ୍ତାଧାରା ସହ କଳ୍ପନାର ସମନ୍ୱୟ ଘଟାଉଥିବା କିମ୍ବା ଆତ୍ମବିରୋଧ ଓ ଅନିକେତ ମନୋଭାବ ଘଟିତ ମାନସିକ ଦ୍ୱିଧା ଦ୍ୱନ୍ଦ୍ୱର ପ୍ରତିବିମ୍ବ ରଚନା କରୁଥିବା କବିତାହିଁ ଆଧୁନିକ କବିତା ।

ସମୟର ନୂତନ ଅଙ୍ଗୀକାର ଘେନି ନୂତନ ଭାବେ ନିର୍ଣ୍ଣୀତ ପୁରୁଣା ମୂଲ୍ୟବୋଧର ଅଭିବ୍ୟକ୍ତି ଯେଉଁ କବିତାରେ ସୂଚିତ; ଯାହା ବିଶ୍ୱ ମୁଖୀ ଭାବ-କଳ୍ପର ପ୍ରକାଶକ, ବିଶ୍ୱର ବିଭିନ୍ନ ସଂସ୍କୃତି ଓ ଐତିହ୍ୟ ପ୍ରତି ଯାହା ସଚେତନ, ହେତୁବାଦୀ ମଣିଷର ବୌଦ୍ଧିକ ଜିଜ୍ଞାସା ଯେଉଁ କବିତାର ଉପଜୀବ୍ୟ– ତାହାହିଁ ଆଧୁନିକ କବିତା ।

ପ୍ରଥାଗତ-ପ୍ରତିଷ୍ଠିତ ମୂଲ୍ୟବୋଧ ପ୍ରତି ସଂଶୟ ଏବଂ ତତ୍‌ଜନିତ ଉଦ୍‌ବେଗ ଯେଉଁ କବିତ୍ୱର ସାଧାରଣ ସଂଳାପ– ତାହାହିଁ ଆଧୁନିକ କବିତା ।

ଆଧୁନିକ କବିତା– ଆଧୁନିକ ଚିନ୍ତାର ବାହକ; ଜଟିଳ ମାନସିକତାର ପ୍ରତୀକାତ୍ମକ ଅଭିଲିପି; କବିଙ୍କର ପ୍ରଜ୍ଞା ଚକ୍ଷୁର ପ୍ରତିବିମ୍ବ ଓ ହୃଦୟ ସଂବେଦୀ ଅନୁଭବର ମୁକ୍ତ ଉଚ୍ଚାରଣ ।

ନୂତନ ଜୀବନ-ଜିଜ୍ଞାସାର ପ୍ରକାଶ ପାଇଁ ନୂତନ ଟେକ୍‌ନିକର ସଙ୍ଗଠନ–ଉଭୟର ସମୀକରଣ ଯେଉଁ କାବ୍ୟ-ସୃଷ୍ଟିରେ ପରିଲକ୍ଷିତ; ତାହା ଆଧୁନିକ କବିତା ।

ପରିବେଶ ସଚେତନତା, ବୁଦ୍ଧ-ଗ୍ରାହ୍ୟ କଳ୍ପନା-ବିଳାସିତା ଓ ସଂଗଠିତ ଆବେଗର ପ୍ରକାଶ ଯହିଁରେ ପ୍ରତିଫଳିତ ତାହା ଆଧୁନିକ କବିତା ।

## ୪. ଆଧୁନିକ କବିତାର ଥିମ୍ :

ନଗର କୈନ୍ଦ୍ରିକ ସଭ୍ୟତାର ପ୍ରଭାବରୁ ପାରସ୍ପରିକ-ସମ୍ପର୍କଚ୍ୟୁତ ଜୀବନର କ୍ଳାନ୍ତି ଓ ନୈରାଶ୍ୟବୋଧ; ପ୍ରଥାବଦ୍ଧ ନୀତିଧର୍ମ ପ୍ରତି ଅବିଶ୍ୱାସ, ଈଶ୍ୱରମୂଳ ସମାଜ ଦର୍ଶନଠାରେ ଅନୀହାବୋଧ– ଇତ୍ୟାଦି ଆଧୁନିକ କବିତାର ଥିମ୍ ।

Digitized by srujanika@gmail.com

ଦେହଜ କାମନା-ବାସନା-ପ୍ରସୂତ ଅନୁଭୂତିର ସ୍ୱୀକୃତି ଏବଂ ପ୍ରେମର ଶରୀରୀ ସତ୍ତାର ପ୍ରତ୍ୟକ୍ଷ ପ୍ରମୂର୍ତ୍ତନ ସଙ୍ଗେ ସଙ୍ଗେ ଇନ୍ଦ୍ରୟୋତ୍ତର, ପ୍ରେମବୋଧ ଏକ ଛଳନା ବୋଲି ଦୃଢ଼ ଅଭିଜ୍ଞାନ ହେଉଛି ଆଧୁନିକ କବିତାର ଥିମ୍ ।

ଆଧୁନିକ କବିତାର ଥିମ୍– ମଣିଷ, ମଣିଷ ଆବିଷ୍କୃତ ବିଜ୍ଞାନ ଏବଂ ଦୃଶ୍ୟମାନ ଭୌତିକ ପରିବେଶ । ଏମାନଙ୍କ ପାରସ୍ପରିକ ସମ୍ବନ୍ଧର ଅନୁଭୂତିହିଁ କବିତାରେ ଭାବ ସତ୍ତା ।

ବିଜ୍ଞାନର ଅଧିକାର ଓ ବ୍ୟକ୍ତିର ସ୍ୱାତନ୍ତ୍ର୍ୟ–ଉଭୟଙ୍କର ସମନ୍ୱୟରେ ଲବ୍ଧ ଚେତନାହିଁ ଆଧୁନିକ କବିତାର ଥିମ୍ । ଏଠି ଅବସାଦ ଅଛି, ଅବକ୍ଷୟ ଅଛି, ନିଃସଙ୍ଗତାର ଅନୁଭୂତି ବି ଅଛି, ଅଛି ପୁଣି ଅବଚେତନର ଅନ୍ଧାର ଓ ଅସମ୍ବନ୍ଧତା ।

ଆଧୁନିକ ମଣିଷ ମନର ଆତ୍ମବିରୋଧ, ପାପବୋଧ, ବିଚ୍ଛିନ୍ନତାର ଗ୍ଳାନି, ବୋଧଶକ୍ତି-ଶୂନ୍ୟତା, ଈଶ୍ୱରଙ୍କ ଅସ୍ତିତ୍ୱରେ କିଛି ବିଶ୍ୱାସ, ପୁଣି କିଛି ଅବିଶ୍ୱାସ– ଇତ୍ୟାଦି ଆଧୁନିକ କବିତାର ଥିମ୍ ।

ପ୍ରାଚୀନ ପୃଥିବୀ, ପ୍ରାଚୀନ ବିଶ୍ୱାସ, ପ୍ରାଚୀନ ମଣିଷ, ପ୍ରାଚୀନ ପାଣ୍ଡିତ୍ୟ ଏବଂ ପ୍ରାଚୀନ ବୋଧଶକ୍ତି; ଆଧୁନିକ କବିତାର ଉପଜୀବ୍ୟ ନୁହେଁ; ପ୍ରଧାନ ଉପଜୀବ୍ୟ ବିଶ୍ୱମାନବ ଜ୍ଞାନ ଓ ମଣିଷର ପରିବର୍ତ୍ତିତ ଅନୁଭୂତି ।

ଦର୍ଶନ, ବିଜ୍ଞାନ, ମନସ୍ତତ୍ତ୍ୱ, ନୃତତ୍ତ୍ୱ, ସମାଜତତ୍ତ୍ୱ, ନନ୍ଦନତତ୍ତ୍ୱ ଇତ୍ୟାଦି ସକଳ ବିଦ୍ୟା କ୍ଷେତ୍ରରୁ ଜ୍ଞାନ ଆହରଣ କରି, ବାସ୍ତବ ଜୀବନର ଅନୁଭୂତିସହ ତାହାର ସାମଞ୍ଜସ୍ୟ ସନ୍ଧାନ କ୍ରମରେ ଆପଣା ଆବେଗକୁ ସଂଗଠିତ କରି ପ୍ରକାଶ କଲାବେଳେ, ଆଧୁନିକ କବିର କବିତା ଏକକ ଭାବ-ସତ୍ତାକୁ ପ୍ରତିବିମ୍ବିତ କରେ ନାହିଁ କିମ୍ବା ନିର୍ଦ୍ଦିଷ୍ଟ ଭୌଗୋଳିକ ଆୟତନ ଭିତରେ ନିଜର ଦୃଷ୍ଟିକି ସୀମାବଦ୍ଧ କରେ ନାହିଁ । ଏହା ବିଶ୍ୱବାସୀମଣିଷର ଆତ୍ମ-ଚୈତନ୍ୟକୁ ହିଁ କବିତାର ଥିମ୍ ରୂପେ ଗ୍ରହଣ କରିଥାଏ ।

## ୫. ଆଧୁନିକ କବିତାର ଭାଷା :

ଆଧୁନିକ କବିତାର ଭାଷା ତିର୍ଯ୍ୟକ, ପ୍ରତ୍ୟକ୍ଷ ଭାଷଣଧର୍ମୀ ନୁହେଁ । ଏହା ବର୍ଣ୍ଣନାତ୍ମକ-ବିନ୍ୟାସରୁ ମୁକ୍ତ । ଏହାର କଥନଭଙ୍ଗୀ ଶ୍ଳେଷାତ୍ମକ ଓ ବ୍ୟଙ୍ଗ-ପ୍ରଧାନ ।

କବିତାର ଭାଷା ପ୍ରତୀକାତ୍ମକ; ଆବେଗ ଓ ବୌଦ୍ଧିକ କଳ୍ପନା ଅନୁକୂଳ, ଯୁକ୍ତିବହ କିନ୍ତୁ ଅସମ୍ବନ୍ଧ ଚିନ୍ତାର ପ୍ରବହମାନତା ଗୁଣରେ ଗୁଣୀ । ମାତ୍ର ମିତବାକ୍, ସ୍ଥଳେ ସ୍ଥଳେ ମଧ୍ୟ ଚରଣର ବିଲୋପ । ମଧ୍ୟବର୍ତ୍ତୀ ପଙ୍କ୍ତି ବା ମଧ୍ୟଚରଣର ଅନୁଲ୍ଲେଖ ହେତୁ ଭାବର ଅବବୋଧରେ ଦୁରୂହତା ପ୍ରାୟ ଜନ୍ମିଥାଏ ।

କବିତାର ଭାଷାରେ ସ୍ୱଗତ-ସଂଳାପର ବିନିଯୋଗ, ଅବ୍ୟୟ ଓ କ୍ରିୟା ପଦର ଯଥେଚ୍ଛା ବ୍ୟବହାର- କବି ପ୍ରସିଦ୍ଧି ମତେ ପୂର୍ବାନୁସୃତ କାବ୍ୟିକ ଶବ୍ଦାବଳୀର ବର୍ଜନ ଏବଂ ଅର୍ଥଘନ ନୂତନ ଶବ୍ଦର ପ୍ରୟୋଗ, ପରିଲକ୍ଷିତ ହୋଇଥାଏ ।

Digitized by srujanika@gmail.com

ଆଧୁନିକ କବିତାର ପଦବନ୍ଧ, ବାକ୍‌ରୀତି ଓ କାବ୍ୟରୀତିର ମିଶ୍ରଣରେ ଗଠିତ । ଗ୍ରାମ୍ୟଶବ୍ଦ, କଥ୍ୟଭାଷା, ଲୋକ ପ୍ରବଚନ, ଆପ୍ତ-ଉଦ୍ଧୃତି, ନୂତନ ଜ୍ଞାନ ସମ୍ମତ ପାରିଭାଷିକ ଶବ୍ଦ କିମ୍ବା ବୈଜ୍ଞାନିକ ଶବ୍ଦାବଳୀ ଘେନି କବିତାର ଭାଷା ସଂଯୋଜିତ ।

ଆଧୁନିକ କବିତାର ଭାଷା ଗଦ୍ୟଧର୍ମୀ, କିନ୍ତୁ ଧ୍ୱନିଯୁକ୍ତ । ଗଦ୍ୟ ଗର୍ଭରେ ଯେଉଁ ଧ୍ୱନି ତାକୁ-ଇ ନେଇ ସ୍ୱର, ସ୍ୱରରୁ ଜାତ ସ୍ପନ୍ଦ ଓ ନାଦ । ସଂଯୋଜନା-କୌଶଳ ବଳରେ ଏପରି ଗଦ୍ୟର ଭାଷା ଲିରିକ ସଂବେଦନ ସୃଷ୍ଟିରେ ସମର୍ଥ ହୋଇଯାଏ ।

## ୬. ଆଧୁନିକ କବିତାର ଛନ୍ଦ :

ଆଧୁନିକ କବିତାର ଛନ୍ଦ– ଗଦ୍ୟଛନ୍ଦ, ଅନ୍ୟନାମ ବାକ୍‌ଛନ୍ଦ । ଭାବର ଅନୁବର୍ତ୍ତୀ ହୋଇ ଏହା ପ୍ରବାହିତ, ତେଣୁ କେହି କେହି ଏହାକୁ 'ଭାବ-ଛନ୍ଦ' ମଧ୍ୟ କହନ୍ତି ।

ପୟାର, ଉପାଧା, ଯତିପାତ ଇତ୍ୟାଦିର ବର୍ଜନ ଏବଂ ମେଳଯୁକ୍ତ କିମ୍ବା ମେଳହୀନ 'ମୁକ୍ତକ'ର ବ୍ୟବହାର ଆଧୁନିକ କାବ୍ୟଛନ୍ଦର ମୂଳକଥା ।

କବିତା ପଙ୍‌କ୍ତିରେ ଭାବର ପ୍ରବହମାନତା ରକ୍ଷା ପ୍ରତି ଜୋର ଦିଆଯାଉଥିବା ହେତୁ କବିତାର ଛନ୍ଦ-ସ୍ପନ୍ଦ, 'ବାକ୍-ପର୍ବ' ଉପରେ ନିର୍ଭର କରେ । ଏଇ 'ବାକ୍-ପର୍ବ' ଗଦ୍ୟ-ଲିପି ମାତ୍ର । ଶ୍ରୁତି ନିମିତ୍ତ ଏହା ଛନ୍ଦୋହୀନ; କିନ୍ତୁ ଭାବ ବିଚାରରେ ତାହା ସୁକୁମାର ସ୍ପନ୍ଦ-ମଣ୍ଡିତ । ଏହାହିଁ ହେଉଛି ଆଧୁନିକ କବିତାର ପ୍ରଚଳିତ ଛନ୍ଦସୂତ୍ର ।

କବିତାର ପଙ୍‌କ୍ତିରେ ପଙ୍‌କ୍ତିରେ ସାଂଗୀତିକ ବାକ୍‌ଧାରା ଓ ଅନ୍ତର୍ସ୍ପନ୍ଦର ସୁଷମ-ସୃଜନ ଲାଗି ଆଧୁନିକ କବି-କଳା ବିଶେଷ ତତ୍ପର ।

## ଆଧୁନି କାବ୍ୟ-ବିମ୍ବ :

(ପ୍ରତୀକ, ଚିତ୍ରକଳ୍ପ, ଆର୍କିଟାଇପ ଓ ମିଥ୍)

ଶବ୍ଦ-ପ୍ରତିମାମାନଙ୍କୁ ନେଇ କବିଙ୍କ ଲୀଳା, ମଣିଷ ମନର ଗୋପ୍ୟ-ଅଗୋପ୍ୟ ସକଳ ଭାବନାକୁ ପ୍ରକାଶ କରିବା ଲାଗି ଶବ୍ଦର ପ୍ରଚଳିତ ଆଭିଧାନିକ ଅର୍ଥ-ଶକ୍ତି ସମର୍ଥ ନୁହେଁ । ତେଣୁ ଯେଉଁ ଅନୁଭୂତିଗୁଡ଼ିକୁ ସାଧାରଣ ଭାଷା ବଳରେ ପ୍ରକାଶ କରିବା ସମ୍ଭବ ନୁହେଁ ତାହାର ଅଭିବ୍ୟକ୍ତି ଲାଗି ଲୋଡ଼ା ହୁଏ ପ୍ରତୀକ । ପ୍ରତୀକ ଆଭିଧାନିକ ଅର୍ଥର ପ୍ରକାଶକ ନୁହେଁ; ଅର୍ଥ ଅନ୍ତରାଳରେ ଗୋପ୍ୟ ରହସ୍ୟାଚ୍ଛନ୍ନ ଭାବାଲୋକର ଦ୍ୟୋତକ ।

ଇନ୍ଦ୍ରିୟଗ୍ରାହ୍ୟ ଜଗତ ବାହାରେ ଯେଉଁ ଅଦୃଶ୍ୟ ଜଗତଟି ଆମ ମାନସ ଭୂମିରେ ଅମୂର୍ତ୍ତ ହୋଇ ରହିଛି ତାହାକୁ ମୂର୍ତ୍ତିମାନ କରେ ପ୍ରତୀକ । ଫଳରେ ପ୍ରତୀକ ଜରିଆରେ ଅମୂର୍ତ୍ତ ଜଗତ ସହ ଆମେ ଭାବ-ସାଯୁଜ୍ୟ ରକ୍ଷା କରୁଁ ।

Digitized by srujanika@gmail.com

ପ୍ରତୀକ, ରୂପର ସାଦୃଶ୍ୟ ଆଣେ ନାହିଁ, ଏକକ ଅର୍ଥର ପ୍ରତିନିଧିତ୍ୱ କରେ ନାହିଁ । ସର୍ବମାନ୍ୟ ପ୍ରତିଶବ୍ଦଟିଏ ଖୋଜି ପ୍ରୟୋଗ କରାଯାଇଥିବା ପ୍ରତୀକର ଅର୍ଥ ବ୍ୟାଖ୍ୟା କରି ବୁଝାଇହୁଏ ନାହିଁ । ଗୋଟଏ ପ୍ରତୀକରୁ ନାନା ଅର୍ଥ ଜ୍ଞାନ ଜନ୍ମିପାରେ । ପ୍ରତୀକର ସାର୍ଥକତା, ତୁଳନାରେ ନଥାଏ, ତହିଁର ବାହାରେ ତାର ସ୍ଥିତି । ପ୍ରତୀକ ଆମ ଅନୁଭୂତିର ଦିଗ୍‌ବଳୟରେ ଗୋଟିଏ ମାତ୍ର ଧାରଣା ସୃଷ୍ଟି କରେନା, ଅସଂଖ୍ୟ ପ୍ରତିଧ୍ୱନି ଜାତକରେ । କାରଣ ପ୍ରତୀକ ଏକ ବିଶେଷ ଅର୍ଥର ପ୍ରତିନିଧି ନୁହେଁ, ଏଥିରେ ଅନେକ ଅକଥିତ ଅପ୍ରକାଶିତ ଅର୍ଥ ଯୋଗାରୂଢ଼ ହୋଇ ରହିଥାଏ ।

ବିଜ୍ଞାନର ସହାୟତାରେ କିମ୍ବା ଇନ୍ଦ୍ରିୟ ଶକ୍ତି ବଳରେ ବସ୍ତୁ ଜଗତର ଉପଲବ୍ଧି ସହଜଲଭ୍ୟ ମାତ୍ର ବସ୍ତୁ ଜଗତ ପରେ ଯେଉଁ ଜଗତ୍ (ମନାତୀତ ବା ସୂକ୍ଷ୍ମ ଜଗତ) ତାହାର ଉପଲବ୍ଧି ପାଇଁ ଇନ୍ଦ୍ରିୟର ଶକ୍ତି ଅପାରଗ; ପ୍ରତୀକ ହିଁ ସମର୍ଥ ।

ଦୁଇଟି ବିଭିନ୍ନ ଜାତୀୟ ବସ୍ତୁ ମଧ୍ୟରେ ସଂସ୍ପର୍ଶବୋଧ ଫଳରେ ଗୋଟିକର ଉଲ୍ଲେଖଦ୍ୱାରା ଅପରଟି ଭାବଗମ୍ୟ ହେଉଥିଲେ ସେଠି ପ୍ରତୀକର ବ୍ୟବହାର ଘଟିଥାଏ ।

ରୂପକ ଓ ପ୍ରତୀକ ଏକ ନୁହଁନ୍ତି, ଭିନ୍ନ । ରୂପକରେ ଦୁଇଟି ବିଜାତୀୟ ବସ୍ତୁ ମଧ୍ୟରେ ସାଦୃଶ୍ୟ ବା ସମଗୁଣତା ଲକ୍ଷିତ ହୋଇଥାଏ । କିନ୍ତୁ ପ୍ରତୀକରେ ଲକ୍ଷିତ ହୁଏ; ଦୁଇଟି ବସ୍ତୁର ସହଚାରିତା । ସହଚାରିତା ଯୋଗୁଁ ପ୍ରତୀକହିଁ ଆମ ମନରେ ପ୍ରତିପାଦ୍ୟ ବସ୍ତୁର ପ୍ରତ୍ୟୟ ଜନ୍ମାଏ ।

ରୂପକ ବସ୍ତୁର ପ୍ରତିବିମ୍ବ ମାତ୍ର । ପ୍ରତୀକ ବସ୍ତୁର ପ୍ରତିନିଧି । ଏହା ବ୍ୟଞ୍ଜନାପୂର୍ଣ୍ଣ, ପ୍ରତିପନ୍ନ ବ୍ୟଞ୍ଜନା ଅର୍ଥର ନୁହେଁ ହୃଦୟାବେଗର; ବିଶେଷ ଏକ ମାନସର ଅସ୍ପଷ୍ଟ ଆଭାସ ଏଥିରୁ ପ୍ରତିପନ୍ନ ହୋଇଥାଏ ।

ପ୍ରତୀକର ବ୍ୟବହାରରେ ପ୍ରକାର ଭେଦ ଅଛି । ଯହିଁରୁ ସାମାନ୍ୟ ଅର୍ଥ ବ୍ୟଞ୍ଜନାର ସୂଚନା ମିଳେ ତାହା ପ୍ରତୀକାଭାସ; ରଚନାର ସମଗ୍ର ସତ୍ତା ସହିତ ଯାହାର ସମ୍ବନ୍ଧ କାର୍ଯ୍ୟାକାରଣଗତ ନୁହେଁ, ତାହା ଖଣ୍ଡ-ପ୍ରତୀକ । ଯାହାକୁ କେନ୍ଦ୍ର କରି ରଚନାର ସାମଗ୍ରିକ ଭିତ୍ତି ପ୍ରତିଷ୍ଠିତ ତାହା ପୂର୍ଣ୍ଣ ପ୍ରତୀକ ।

ଯେଉଁ ଜଗତ ସାଧାରଣ ପ୍ରତୀତିର ମାନଚିତ୍ରରେ ଅମୁଦ୍ରିତ, ଯାହାର ନାମ ବିଜ୍ଞାନ-ଦର୍ଶନ ଇତ୍ୟାଦି ତାଲିକାରେ ନାହିଁ, ସେପରି ଜଗତ ପାଇଁ କବିଙ୍କି ସୃଷ୍ଟି କରିବାକୁ ପଡ଼େ ପ୍ରତୀକ । ପ୍ରତୀକର ଏକ ବିଶେଷ ଗୁଣ- ଏହା ଭାଷା ଓ ଭାଷ୍ୟର ସମତଳ ଭୂମିରୁ ଆମକୁ ବହୁଦୂର, ଦୂରତର, ଗଭୀର ସ୍ଥାନକୁ ଘେନିଯାଏ । ମନରେ ଏକ ଚମତ୍କାର ଆକାଂକ୍ଷା ସୃଷ୍ଟି କରେ, ନିରର୍ଥକୁ ଇଙ୍ଗିତମୟ ଅର୍ଥରେ ପ୍ରଭାମୟ କରିଥାଏ ।

ଉପମାରେ ଉପମେୟ ଓ ଉପମାନ– ଦୁଇଟିକୁ ଆମେ ସ୍ପଷ୍ଟତଃ ପାଇ ଥାଉଁ; ଉପମା ଦୁହିଁଙ୍କର ଯୁଗ୍ମ ସତ୍ତା ଓ ଦ୍ୱୈତ-ସ୍ୱରୂପରେ ସାନ୍ତ ଓ ପରିଣୀତ । ମାତ୍ର ପ୍ରତୀକ

Digitized by srujanika@gmail.com

ଗୋଟିଏ ସହିତ ଆଉ ଗୋଟିକର ତୁଳନା ନୁହେଁ, ଏକ ସଙ୍ଗେ ଅନ୍ୟର ସାଦୃଶ୍ୟ ମଧ୍ୟ ନୁହେଁ । ଗୋଟିକ ସହିତ ଅନିର୍ଦ୍ଦିଷ୍ଟ ଅସଂଖ୍ୟର ଅସ୍ପଷ୍ଟ ଅଥଚ ମର୍ମ୍ମସ୍ପର୍ଶୀ ତୁଳନାତିରିକ୍ତ ଭାବ ଆଲୋଡ଼ନର ସାମଗ୍ରୀ ହେଉଛି ପ୍ରତୀକ ।

ପ୍ରତୀକ ସହ ସ୍ମୃତ, ଅର୍ଦ୍ଧସ୍ମୃତ ଅନେକ କିଛି ଉପାଦାନର ଏକ ପ୍ରକାର ଭାବାତ୍ମକ ତୁଳନା ଆସିପାରେ, ଯୁଗପତ୍ ଆସୁଥାଏ ମଧ୍ୟ । ସ୍ମୃତି ରାଜ୍ୟର ସ୍ତର ପରେ ସ୍ତର ବହୁ ସ୍ତରର ଅସ୍ତିତ୍ୱ ବହୁ ଧ୍ୱନି-ତରଙ୍ଗ (Wave Length)ର ସମ୍ବେଦନ ଗୋଟିଏ ମାତ୍ର ପ୍ରତୀକରୁ ମିଳିପାରେ ।

ବାକ୍ ପ୍ରତିମା ବା ଇମେଜର ଅନ୍ୟନାମ ଚିତ୍ର-କଳ୍ପ, ଏହା ମୂଳତଃ ଚିତ୍ର । ଏହା ଇନ୍ଦ୍ରିୟଗ୍ରାହ୍ୟ ଓ ଇନ୍ଦ୍ରିୟଜ ମଧ୍ୟ । ଦୃଶ୍ୟ, ଶବ୍ଦ, ଗନ୍ଧ ସ୍ୱାଦ, ସ୍ପର୍ଶ ଇତ୍ୟାଦି ଯେକୌଣସି କ୍ଷେତ୍ରରୁ ଏହାର ଉତ୍ପତ୍ତି । ଇନ୍ଦ୍ରିୟ ସଙ୍ଗେ ଏହାର ଯୋଗ ପ୍ରତ୍ୟକ୍ଷ । ପ୍ରତ୍ୟକ୍ଷ ହେବା ହେତୁ ଏଥିରେ ବିସ୍ମୃତି ବିରଳ । ଇତିହାସ, ସ୍ମୃତି, ପୁରାଣ, ଉପକଥା, ଅତିକଥା ଇତ୍ୟାଦିର ମଗ୍ନ ସ୍ତର ସଙ୍ଗେ ଏହାର ଯୋଗ କମ । କିନ୍ତୁ ମାନବ ସମାଜର ସମଗ୍ର ଇତିହାସ, ଗୋପ୍ୟ-ଅଗୋପ୍ୟ ସବୁ ଚେତନା ପ୍ରତୀକ ମଧ୍ୟରେ ଆଭାସିକ ହୋଇପାରେ । ଏଥିପାଇଁ ବାକ୍-ପ୍ରତିମା ବା ଇମେଜଠାରୁ ପ୍ରତୀକ ହିଁ ବଡ଼, ଅଧିକ ଶକ୍ତିଶାଳୀ ।

ଉପମା ପରି ରୂପକ ମଧ୍ୟ ସାନ୍ତ । ପ୍ରତୀକ ଗର୍ଭରେ ରୂପକ ଆଶ୍ରୟ ନେଇପାରେ । ପ୍ରତୀକର ଆୟତନ ଅନନ୍ତ; କେତେ ସମ୍ଭାବନାମୟ ଭାବାବେଗର ବ୍ୟାପ୍ତି, ଅସ୍ପଷ୍ଟ ଅସଂପୂର୍ଣ୍ଣ କେତେ ଭାବ ଛବିର ଅବସ୍ଥାନ ସେଠି । ନିର୍ଦ୍ଦିଷ୍ଟ ଚିହ୍ନ-ବର୍ଣ୍ଣଟିଏ ପାଇବା ସେଠି କଷ୍ଟ । ତେଣୁ ପ୍ରତୀକ, ରୂପକ ଗର୍ଭରେ ଆଶ୍ରୟ ନେଇ ପରିବକି ?

ପ୍ରତୀକରେ ତୁଳନାର ଯେଉଁ ସାମାନ୍ୟତମ ଆଭାସ ଆମେ ପାଉଁ ତାହା ହେଉଛି– ଉକ୍ତି ସହିତ ଅନୁକ୍ତିର, ନିର୍ଦ୍ଦେଶ୍ୟ ସଙ୍ଗେ, ଅନିର୍ଦ୍ଦେଶ୍ୟର । ଉପମା ପରି ଏଥିରେ ସମାନ ଓ ସଦୃଶ-ଦୁଇପକ୍ଷର ସାଧାରଣ ଅବସ୍ଥିତି ମିଳେ ନାହିଁ ।

କବିର ସମଗ୍ର ବକ୍ତବ୍ୟକୁ 'ପ୍ରତୀକ' ବହନ କରି ନ ଥାଏ । ବକ୍ତବ୍ୟର କିଛି ଅଂଶ ଥାଏ ପାଠକ ନିକଟରେ ପ୍ରତୀକ ଦ୍ୱାରା ଅଭିବ୍ୟକ୍ତ ଅଂଶଟି ପାଠକ ପାଇଁ କବିଙ୍କର ଆବେଦନମାତ୍ର । ପାଠକ ଯଦି ନିଜ ସ୍ମୃତିରୁ, ମଗ୍ନ-ଚୈତନ୍ୟର ସଂଗ୍ରହଶାଳାରୁ ନିଜସ୍ୱ ଅଭିଜ୍ଞତା ଉଖାରି, ଏଇ ପ୍ରତୀକର ଆବେଦନକୁ ପୂର୍ଣ୍ଣାଙ୍ଗ କରି ନ ପାରେ ତେବେ ତାହା ବିକଳାଙ୍ଗ ଓ ଅବୋଧ୍ୟ ହୋଇ ରହିଯାଏ ।

ପ୍ରତ୍ୟକ୍ଷ ଗଦ୍ୟ-ବଦ୍ଧ ବାକ୍ୟାଳାପରେ ଶବ୍ଦ, ରୂପକ ଶକ୍ତିସମ୍ପନ୍ନ, କାବ୍ୟରେ ତାହା ପ୍ରତୀକ । କାରଣ ପ୍ରଥମଟିରେ ତାହା ଅର୍ଥବହ ଶବ୍ଦ ମାତ୍ର, ଦ୍ୱିତୀୟଟିରେ ତାହା

Digitized by srujanika@gmail.com

ବହୁ ଅର୍ଥାଭାସରେ ଧ୍ୱନୀ, ବହୁସ୍ମୃତିର ଶିରାପ୍ରଶିରାରେ ପ୍ରାଣବନ୍ତ । ଅର୍ଥାତିକ୍ରାନ୍ତ ଅର୍ଥ ଓ କ୍ରମାନ୍ୱୟୀ ଅର୍ଥାଭାସ ପାଇଁ ଏହାର ସ୍ଥିତି ଶବ୍ଦ ଭୂମିରେ ନୁହେଁ ନିଃଶବ୍ଦ ଇଲାକାରେ ହିଁ ଅନୁଭୂତ ହୋଇଥାଏ ।

ବୋଧ-ସଂହତିରୁ ହିଁ ପ୍ରତୀକର ଶକ୍ତି ଜଣାପଡ଼େ । ପ୍ରତୀକ ସଂକ୍ଷିପ୍ତ, କିନ୍ତୁ ସେ ଯାହା ଆଭାସିତ କରିବାକୁ ଚାହେଁ ତା' ବହୁ ବିସ୍ତୃତ । ଏହା ଯେହେତୁ ସଂକ୍ଷିପ୍ତ, ତେଣୁ ଅସଂପୂର୍ଣ୍ଣ ବୋଧ ହୋଇପାରେ । ଅସମ୍ପୂର୍ଣ୍ଣ ହେଲେବି ଏହା ସଂହତ । ସାନ୍ତ ହେଲେବି ଅନନ୍ତ, ଏକ ହେଲେବି ବହୁର ପ୍ରତିନିଧି, ଅଂଶଟିଏ ହୋଇବି ସଂପୂର୍ଣ୍ଣ-ସୁଷମା ମଣ୍ଡିତ । ବିଭିନ୍ନ ଧରଣର ଦୂରାନ୍ତସ୍ଥିତ ଅଭିଜ୍ଞତା ଏହାର ପ୍ରାଣ ।

ପ୍ରତୀକ; କାବ୍ୟ ବା ଶିଳ୍ପର ଏକ ପରମାଣୁ ଶକ୍ତି । ଅନନ୍ତ ସମ୍ଭାବନାର ଏକ ଶକ୍ତିମାନ ଅଂଶ, – ଯାହା ଅପୂର୍ଣ୍ଣହୋଇ ମଧ୍ୟ ପୂର୍ଣ୍ଣୋପମ; ବିନ୍ଦୁରେ ସିନ୍ଧୁର ସ୍ଥିତିପରି ଏହାର ଭୂମିକା ।

ବାକ୍-ପ୍ରତିମା ବିନିଯୋଗରେ ଇନ୍ଦ୍ରିୟଗ୍ରାହ୍ୟ ଶବ୍ଦ ଚିତ୍ରଟିଏ ସୃଷ୍ଟି କରିବା ହେଉଛି ଚିତ୍ର-କଳ୍ପର କାମ । ଅନ୍ତର୍ଦୃଷ୍ଟି ସମ୍ମୁଖରେ ଭାବ-ଚିତ୍ରର ଉଦ୍‌ଭାସନ, କବିଙ୍କ ମର୍ମ୍ମବାଣୀକୁ ଇନ୍ଦ୍ରିୟ-ପ୍ରତ୍ୟକ୍ଷ କରାଇବା ଏହାଦ୍ୱାରା ସାର୍ଥକ ହୋଇଥାଏ ।

ମଣିଷର ସାମୂହିକ ଅବଚେତନାରେ ସ୍ତର ପରେ ସ୍ତର ନାନାଦି ଆଦିମ ଅନୁଷଙ୍ଗ ସଞ୍ଚିତ ହୋଇରହିଛି– ସଭ୍ୟତାର ବିକାଶରେ ତାହା ନଷ୍ଟ ହୋଇନାହିଁ । ସେହି ଆଦିମ, ଅକ୍ଷୟ ଅବଚେତନାକୁ ମାନବ ସମାଜର 'ସାମୂହିକ-ଚେତନା' (Collective Conscious) ସ୍ତରକୁ ଆଣି ନୂତନ ଅର୍ଥ ଓ ମୂଲ୍ୟବୋଧରେ ପ୍ରଭାମୟ କରି ସମ୍ବେଦନକ୍ଷମ କରାଇବା ପାଇଁ କବିତାରେ ଯାହାର ସାହାଯ୍ୟ ନିଆଯାଇଥାଏ, ତାହା ହେଉଛି– ଆର୍କିଟାଇପ ଯେପରି ଜ୍ଞାନୀବୃଦ୍ଧ, ଆଦିଜନନୀ, ସର୍ପିଣୀ, ବିଷବୃକ୍ଷ, ଜାହାଜ, ଓଲଟ ଅଶ୍ୱତ୍ଥ ଇତ୍ୟାଦି । ମିଥ୍, ଲୋକକଥା, କିମ୍ବଦନ୍ତୀ, ଇତିହାସ, ତନ୍ତ୍ର, ଦର୍ଶନ, ଇତ୍ୟାଦିରୁ ଆର୍କିଟଇପ ସଂଗ୍ରହ କରାଯାଇପାରେ ।

ମଣିଷ ସ୍ମୃତିରେ ସଞ୍ଚିତ ଆଦିମ ସଂସ୍କାର ଓ ଭାବାନୁଭୂତିକି ଚିତ୍ର, ଚରିତ୍ର ଘଟଣା ମାଧ୍ୟମରେ ପ୍ରତୀକାତ୍ମକ ଅର୍ଥ-ଶକ୍ତିରେ ମୂର୍ତ୍ତିମାନ କରି ପ୍ରକାଶ କରିବାର କଳା ହେଉଛି ଆର୍କିଟାଇପ । ଏହା ନୃତତ୍ତ୍ୱ ଓ ମନସ୍ତତ୍ତ୍ୱ ଜଗତରୁ ଶିଳ୍ପ ଓ କାବ୍ୟ-ଜଗତକୁ ପ୍ରବେଶ କରିଛି ।

ମିଥ୍, ମାନବ-ମନର ବିଶ୍ୱାସ୍ୟ ବସ୍ତୁ । ମାନବ-ଶିଶୁର ଜାତୀୟ-ଚିନ୍ତା । ସମଗ୍ର ମାନବ ଜାତିର ସର୍ଜନା । ଲୋକ ମନର କଳ୍ପନା । ବିଭିନ୍ନ ଚିତ୍ର-ଚରିତ୍ର-ଘଟଣା ଇତ୍ୟାଦିରେ ଏହାର ରୂପ ଲୁକ୍‌କାୟିତ । କବି, ସମକାଳୀନ ଜୀବନକୁ ମିଥ୍ ମାଧ୍ୟମରେ ପ୍ରକଟିତ କଲାବେଳେ ଆପଣା ଅନୁଭୂତି, ଚିନ୍ତା, କଳ୍ପନା ଓ ସ୍ମୃତିକି ମିଶାଇ ଏକ

Digitized by srujanika@gmail.com

ପ୍ରତୀକାତ୍ମକ ଅଭିବ୍ୟକ୍ତି ପ୍ରଦାନ କରିଥାଏ; ତାହାକୁ କାବ୍ୟତତ୍ତ୍ୱରେ କୁହାଯାଏ ମିଥ୍ । ପ୍ରାଗ୍ ଐତିହାସିକ ଓ ପ୍ରାଗ୍ ବୈଜ୍ଞାନିକ ଭାବ-କଳ୍ପନାର ପ୍ରତ୍ୟକ୍ଷ ଭାବମୂର୍ତ୍ତିଟିଏ ନୂତନ ଅର୍ଥାନ୍ୱୟ ଘେନି କାବ୍ୟ-କବିତାରେ ସାକାର ଇନ୍ଦ୍ରିୟ-ଗ୍ରାହ୍ୟ ଏବଂ ଅତୀନ୍ଦ୍ରିୟ ସଚେତନା ଜାଗ୍ରତ କଲାବେଳେ ତାହା ମିଥ୍‌ର ଭୂମିକା ଗ୍ରହଣ କରିଥାଏ । ମିଥ୍, ପୁରାଣ କାହାଣୀ ନୁହେଁ, ପୁରାଣ-ବିଶ୍ୱାସର ନୂତନ ମୂଲ୍ୟବୋଧର ପ୍ରତୀକ ।

## ୮. ଆଧୁନିକ ଗଦ୍ୟ କବିତା :

ଯେଉଁ କବିତା, ପଦ୍ୟପରି ସ୍ୱଚ୍ଛଳ ଛନ୍ଦସ୍ପନ୍ଦିତ, ସାବଲୀଳ ଆବେଗ ପ୍ରଧାନ ନୁହେଁ, ପ୍ରାୟ ବାକ୍‌ଧର୍ମୀ ତାହାକୁ ମୋଟାମୋଟି ଗଦ୍ୟ କବିତା କୁହାଯାଏ । ଏହା ତଥ୍ୟ ନିଷ୍ଠ, ଆବେଗ ଓ କଳ୍ପନାର ନିୟନ୍ତ୍ରଣ ଘେନି ପ୍ରବହମାନ । ଏହାର ଆବେଦନ ଆଂଶିକ; ବୁଦ୍ଧିଗ୍ରାହ୍ୟ । ସଚେତନ ପାଠକର ବୋଧଗାମୀ ।

ଗଦ୍ୟ କବିତା ଛନ୍ଦହୀନ ନୁହେଁ; ଏଥିରେ ବିଷମମାତ୍ରିକ ଯତି, ଅସମ ଛନ୍ଦସ୍ପନ୍ଦ ଓ ଗଦ୍ୟୋଚିତ ବାକ୍‌ଭଙ୍ଗୀ ପରିଲକ୍ଷିତ । ପଦ୍ୟଛନ୍ଦ ସମତାଳ, କିନ୍ତୁ ଗଦ୍ୟଛନ୍ଦ ଅତିତାଳ ଓ ବିଷମ ତାଳ । ଏହା ମୁକ୍ତ ଛନ୍ଦର କବିତା । କାରଣ ଏଥିରେ ଯତିପାତ ଓ ଚରଣ ବିନ୍ୟାସ କବି ଅନ୍ତରର ଭାବରସର ଅଧୀନ ।

ଯାହା ଛନ୍ଦୋବଦ୍ଧ ତାହା ଯେ କାବ୍ୟ ଏହା ଠିକ୍ ନୁହେଁ । କାବ୍ୟର ମୂଳ କଥା ହେଲା ରସ, ଛନ୍ଦ ଏଇ ରସର ପରିଚୟ ଦିଏ । ଗଦ୍ୟରେ ମଧ୍ୟ ରସର ସଂଚରଣ ଅସାଧ୍ୟ ନୁହେଁ । ଗଦ୍ୟ ହେଉ କି ପଦ୍ୟ ହେଉ; ରସଗର୍ଭୀ ହେଲା ମାତ୍ରେ-ଇ ଏକ ଛନ୍ଦସ୍ପନ୍ଦ ସୃଷ୍ଟି ହୋଇଯାଏ । ପଦ୍ୟ କ୍ଷେତ୍ରରେ ଛନ୍ଦ-ସ୍ପନ୍ଦଟି ସୁପ୍ରତ୍ୟକ୍ଷ । ମାତ୍ର ଗଦ୍ୟ କବିତାରେ ତାହା ଅନ୍ତର୍ନିହିତ ।

ଅନୁଭବର ଭାବସ୍ପନ୍ଦନରେ ଧ୍ୱନିର ଉଦ୍ରେକ କରାଇବା ହିଁ ଗଦ୍ୟ-କବିତାର ପ୍ରାଣ । ରସ-ବ୍ୟଞ୍ଜକ ଧ୍ୱନି ସଙ୍ଗେ ବର୍ଣ୍ଣଗତ ଧ୍ୱନିର ସାମଞ୍ଜସ୍ୟ ଆଣି ଭାବର ବ୍ୟଞ୍ଜନା ଓ ସଙ୍ଗୀତର ମୂର୍ଚ୍ଛନା ସୃଷ୍ଟି କରିପାରିଲେ, ତାହା କାବ୍ୟତ୍ୱ ପ୍ରାପ୍ତ ହୁଏ ।

## ୯. ଆଧୁନିକ ଦୀର୍ଘ କବିତା:

ଜୀବନ ଭଗ୍ନାଂଶ ନୁହେଁ; ଜୀବନକୁ ସମ୍ପୂର୍ଣ୍ଣ ଭବେ ଉପଲବ୍ଧି କରିବାର ଚେଷ୍ଟା 'ଦୀର୍ଘ କବିତା' ରଚନା ଅନ୍ତରାଳରେ ପ୍ରଚ୍ଛନ୍ନ । ଘନଶୃଙ୍ଖଳାବଦ୍ଧ ଭାବାବେଗର ସଂଯତ ପ୍ରକାଶ ହିଁ ଏହାର ଶୈଳୀ । ଏଥିପାଇଁ ଲୋଡ଼ା–କେନ୍ଦ୍ରମୁଖୀ ଅନୁଭୂତି, ଆବେଗ ଓ ଚିନ୍ତାର ସଫଳ ରୂପାୟନ । କୌଣସି ଏକ କେନ୍ଦ୍ର ଇମେଜ ବା 'ଆର୍କିଟାଇପ'କୁ ମୂଳ କରି କବିଙ୍କର ବ୍ୟକ୍ତିଗତ ଅନୁଭୂତି, ଅନୁଚିନ୍ତା ଓ ଆବେଗ, ଦୀର୍ଘ କବିତାରେ ପରିସ୍ଫୁଟିତ ହୁଏ ।

Digitized by srujanika@gmail.com

ପ୍ରାଚୀନ ଦୀର୍ଘ କବିତାଗୁଡ଼ିକ ଗଳ୍ପ-ପ୍ରଧାନ ଥିଲା । କାହାଣୀ ହିଁ ସେ କାଳର କବିତାର ବିଷୟ ହୋଇଥିଲା । ମାତ୍ର ଆଧୁନିକ ଦୀର୍ଘ କବିତାରେ ଗଳ୍ପ ନାହିଁ, ବିଷୟ ନିର୍ବାଚନ ପାଇଁ ତେଣୁ ଗଳ୍ପ ଏକ ଉପକରଣ ନୁହେଁ ।

ଆଧୁନିକ ଦୀର୍ଘ କବିତାର କବି ଆପଣା ଭାବାବେଗକୁ ପ୍ରକାଶ କରୁଛନ୍ତି । କୌଣସି କେନ୍ଦ୍ର ଇମେଜ, ମିଥ୍ ବା ଆର୍କିଟାଇପର ସାହାଯ୍ୟ ନେଇ । ଆଗରୁ ଯେପରି ଦୀର୍ଘ କବିତାମାନଙ୍କରେ ବିଷୟବସ୍ତୁର କ୍ରମ ବିକାଶ ଲକ୍ଷ୍ୟ କରାଯାଉଥିଲା, ଏବେ ତାହା ନାହିଁ । ଆପାତ ପୃଥକ ଦୃଶ୍ୟ ଭିତ୍ତିରେ ଗୋଟିଏ ନିର୍ଦ୍ଦିଷ୍ଟ ଚିନ୍ତାକୁ ଏକତ୍ୱ ସୂତ୍ରରେ ଗ୍ରଥିତ କରି ରୂପାୟିତ କରାଯାଉଛି ଏବର ଦୀର୍ଘ କବିତାରେ ।

ଆଧୁନିକ ଦୀର୍ଘ କବିତାରେ କୌଣସି ଏକ ଚିନ୍ତାର ସୂକ୍ଷ୍ମ ବିଶ୍ଳେଷଣ ଉପରେ ଜୋର ଦିଆଯାଉଛି । ବିଶେଷ ଭାବାବେଗ ଓ ଜୀବନାଭୂତିକି କବି ନାନା ଦୃଷ୍ଟିରୁ ବିଶ୍ଳେଷଣ କରିବାରେ ପ୍ରୟାସୀ । ଏଥିପାଇଁ ଏକତ୍ୱର ସୂତ୍ର ହେଉଛି କେନ୍ଦ୍ର ଇମେଜ ବା ଆର୍କିଟାଇପ । ଏହା ଆମ ଉପଲବ୍ଧିର କେନ୍ଦ୍ରାପସାରୀ (Centrifugal)ଶକ୍ତି ସମୂହକୁ, ଅନୁଚିନ୍ତାର ବହୁମୁଖୀ ପ୍ରସାରକୁ ଗୋଟିଏ ‘କେନ୍ଦ୍ର ଇମେଜ’ ବା ଆର୍କିଟାଇପ ଠାରେ ଯୋଡ଼ି ଦେଉଛି । ତେଣୁ ବିଭିନ୍ନ ଇମେଜ ବା ପ୍ରତୀକ ଜରିଆରେ କବି ଗୋଟିଏ କଥା କହୁଥିବାର ଧାରଣା ଏଥିରୁ ଜନ୍ମୁଛି, ଏପରି ସଚେତନା ଆଣି ଦେବାହିଁ ଆଧୁନିକ ଦୀର୍ଘ କବିତାର ଆଭିମୁଖ୍ୟ ।

ଦୀର୍ଘ କବିତାର କବି, ଆପଣା ମନର ଭାବଗତ ବିଶୃଙ୍ଖଳା ମଧ୍ୟରେ ଏକ ସେତୁ ସ୍ଥାପନ ପାଇଁ ଯତ୍ନ କରିଥାନ୍ତି, ଏଥିପାଇଁ ଲୋଡ଼ିଥାନ୍ତି ଇମେଜ, ପ୍ରତୀକ, ମିଥ୍ ବା ଆର୍କିଟାଇପମାନଙ୍କୁ । ଏଗୁଡ଼ିକ ମାନବ-ସମାଜର ଆଦିମ ଆବଚେତନରୁ ସଂଗୃହୀତ ହୋଇପାରେ, କିମ୍ବା ଅତୀତ, ପ୍ରକୃତି ବା କୌଣସି ସାର୍ବଜନୀନ ସତ୍ତାରୁ ଗ୍ରହଣ କରାଯାଇପାରେ । ତାହାରି ଆଧାରରେ କବି, ଆପଣା ମନର ପ୍ରତିକ୍ରିୟାକୁ ରୂପ ଦେଇଥାନ୍ତି ଏବଂ ତାହା କ୍ରମେ ଅଗ୍ରଗତି କରି ନିର୍ଦ୍ଦିଷ୍ଟ ବକ୍ତବ୍ୟରେ ପରିଣତ ହୁଏ ।



---

(କେନ୍ଦ୍ରାପଡ଼ାଠାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀଦ୍ୱାରା ୬.୧.୮୨ଠାରୁ ୮.୧.୮୨ରିଖ ପର୍ଯ୍ୟନ୍ତ ଆୟୋଜିତ ତିନିଦିନିଆ କାବ୍ୟ-କବିତା କର୍ମଶାଳାର ପରିଭାଷା-ପତ୍ର ରୂପେ ପ୍ରକାଶିତ)

Digitized by srujanika@gmail.com

# ଫକୀର ମୋହନଙ୍କ ସାରସ୍ୱତ ଦୃଷ୍ଟି

ଯିଏ ମାଟିର ଚିରନ୍ତନ ବାସ୍ତବତାକୁ ଅଙ୍ଗେ ନିଭେଇ ଥା'ନ୍ତି ତାଙ୍କରି ଲେଖା ସାହିତ୍ୟ, ମାଟିର ମଣିଷମାନଙ୍କ ପାଇଁ ଅତି ଅନ୍ତରଙ୍ଗ ସଂବେଦନ ଯୋଗାଇଦିଏ । ଅଙ୍ଗେ ଅଙ୍ଗେ ଭୋଗିଥିବା ଏଇ ଅନୁଭୂତି ହୁଏ ସାହିତ୍ୟର ଅକ୍ଷୟ ଫଳକ । ପ୍ରାଣର ସ୍ପନ୍ଦନ ସେଠି ମୂର୍ତ୍ତିଧରି ଠିଆହୁଏ । ଲେଖକର ଭାଷା, ସବୁ ମଣିଷଙ୍କ ଉଚ୍ଚାରଣର ମାନ୍ୟତାପାଏ । କାରଣ ଏପରି ଯୋଗ୍ୟତା ଅର୍ଜନ କରିଥିବା ଲେଖକ, ନିଜର କାୟାବନ୍ଧନରୁ ବାହାରିଯାଇ ସମସ୍ତଙ୍କ ମନ ଓ ଭାବ ଇଲାକାରେ ପ୍ରବେଶ କରିପାରନ୍ତି । ସେତେବେଳେ ସେ ପ୍ରତ୍ୟେକଙ୍କର ଅତି ଆପଣାର ହୋଇଯା'ନ୍ତି । ଲେଖିବା ଓ ଦେଖିବା ବ୍ୟାପାରରେ ଶକ୍ତିଶାଳୀ ହୋଇ ନଥିଲେ ଏପରି ଯୋଗ ସମ୍ଭବ ନୁହେଁ । ସାହିତ୍ୟରେ ଏପରି ବ୍ୟକ୍ତିତ୍ୱ ଖୁବ୍ କମ୍ ମିଳନ୍ତି ।

ଏଇ ବ୍ୟକ୍ତିତ୍ୱ ଲାଭ କରିବା ଏକ ତପସ୍ୟା । ଯୋଗ ବା ତପସ୍ୟା ବଳରେ ସନ୍ନ୍ୟାସୀ ଯେପରି ଭିନ୍ନ କାୟାରେ ପ୍ରବେଶ କରିପାରେ, ସେମିତି ଘଟିପାରେ ଶକ୍ତିଶାଳୀ ଲେଖଙ୍କ ବ୍ୟକ୍ତିତ୍ୱରେ । ଲେଖକ କରେ ଜୀବନର ତପସ୍ୟା, ବିବିଧ ଭୂମିକାରେ ଜୀବନକୁ ଭୋଗକରେ, ଗହନ ଦୃଷ୍ଟିଦେଇ ତାକୁ ଅନିଷାକରେ । ଦିନକୁ ଦିନ ଜୀବନରେ ଭୋଗୁଥିବା କାହାଣୀ ସବୁ ଅନୁଭୂତି ହୋଇଯାଏ । ଅନ୍ତର୍ଦୃଷ୍ଟି ବିନିଯୋଗରେ ଅନୁଭୂତିକୁ ଉଖାରିଲେ ତହିଁରୁ ମିଳେ ଭାବ । ଅନୁଭୂତି ଓ ଭାବଶକ୍ତି—ଏ ଦୁଇଟି ହେଉଛି କାଳଜୟୀ ହେବାଲାଗି ଲେଖକ ଜୀବନର ସ୍ଥାୟୀ ସମ୍ବଳ ।

ଫକୀର ମୋହନ ହେଉଛନ୍ତି ଏହାର ଯୋଗ୍ୟତମ ଅଧିକାରୀ । ତାଙ୍କ ସାହିତ୍ୟ ହେଉଛି; ନୂତନ ଦୃଷ୍ଟି ଓ ବୋଧଶକ୍ତିର ଅମୃତ ଫସଲ । ସାହିତ୍ୟରେ ଯେଉଁ ଘଟଣା ବା ଦୃଶ୍ୟର ଉଲ୍ଲେଖ ସେ କରିଛନ୍ତି, ତାହାରି ଅନ୍ତରାଳରେ କୌଣସି ନା କୌଣସି ଭାବର ଛାଇ ଯେ ବିଦ୍ୟମାନ ଏଥିରେ କିଛି ଭୁଲ ନାହିଁ । ଫକୀରମୋହନଙ୍କର ଆଖି

Digitized by srujanika@gmail.com

ଦେଖିଛି, ଅସୁର ଦୀଘିର ସାଧାରଣ ଏକ ଦୃଶ୍ୟ–ଦୀଘିରେ କଇଁ ଫୁଟିଛି । 'ପାଣି ଭିତରକୁ ରତା କଇଁ । ଏମାନେ ଶିକ୍ଷିତା ଖ୍ରୀଷ୍ଟାନ ଲେଡ଼ି, କଇଁ ଦଳରୁ ବାହାରି ଗଲେଣି, ପଦ୍ମ ଦଳରେ ମିଶି ପାରିନାହାଁନ୍ତି ।'*

ଏଇ ଦୃଶ୍ୟଟି ଭିତରୁ ଫକୀରମୋହନୀ ଦୃଷ୍ଟି ଯେଉଁ ଭାବର ଇଂଗୀତ ଖୋଜି ପାଇଛି, ତାହାରି ଅଭିବ୍ୟକ୍ତି ହେଉଛି ଉପର ଲିଖିତ କେତୋଟି ବାକ୍ୟ । ରଙ୍ଗ ବଦଳିଗଲେ ଜୀବନର ନିଜସ୍ୱ ସାଂସ୍କୃତିକ ସତ୍ତା ବଦଳିଯାଏ ନାହିଁ କିମ୍ବା ପୋଷାକୀ-ପରିବର୍ତ୍ତନ ଫଳରେ ସ୍ୱଭାବ-ରୂପର ରୂପାନ୍ତର ଘଟେ ନାହିଁ । ଏହି ଭାବନାଟି ମଧ୍ୟ ଚଳନ୍ତି ସମାଜର ବାସ୍ତବ ଅନୁଭୂତି ଦ୍ୱାରା ସମର୍ଥିତ । ଫକୀରମୋହନଙ୍କର ଶତାବ୍ଦୀରେ ଯେଉଁ ହିନ୍ଦୁ ନରନାରୀଗଣ ଇଂରେଜୀ ଶିକ୍ଷା ବା ପାଦ୍ରୀମାନଙ୍କ ପ୍ରରୋଚନାରେ ପଡ଼ି ଖ୍ରୀଷ୍ଟାନ ହେଲେ, ସେମାନେ ରତାକଇଁର ଦଶା ଭୋଗକଲେ । ସମାଜରୁ ଆହୃତ ଅଙ୍ଗେ ନିଭା ଅନୁଭୂତିକୁ ଫକୀରମୋହନ ଏଠି ଆଖିଦେଖା ଉପାଦାନର ଅନ୍ତର୍ଭୂମିରେ ମିଶେଇ ଦେଇଛନ୍ତି ଏବଂ ଦୃଶ୍ୟଟିର ବିବରଣୀ, ଭାବର ଯେଉଁ ଅନ୍ତର୍ଲିପିର ସୂଚନା ଦେଉଛି, ତାହା ସମାଜ ପ୍ରତି ଅଭିପ୍ରେତ ଗାଳ୍ପିକଙ୍କର ତିର୍ଯ୍ୟକ ଦୃଷ୍ଟିକୋଣ ବୋଲି ଧାରଣା ଜନ୍ମୁଛି ।

ଫକୀରମୋହନ ଥିଲେ ଜୀବନ ଜିଜ୍ଞାସୁ । ଜୀବନକୁ ଜାଣିବା କ୍ରମରେ ସେ ତାଙ୍କ ସମୟ ଓ ସମାଜକୁ ନିରେଖି ଦେଖିଛନ୍ତି । ମନକୁ ମାନିଲା ଭଳି ହାବ-ଭାବ ଯେଉଁଠି ପାଇନାହାଁନ୍ତି କିମ୍ବା ମାନବିକତାକୁ ପାଶୋରି ସମାଜ ଯେଉଁଠି ଗତିହରା ହୋଇ ଯାଇଥିବାର ସେ ଲକ୍ଷ୍ୟ କରିଛନ୍ତି ସେଠି ତାଙ୍କର ପ୍ରକାଶଭଙ୍ଗୀ ତିର୍ଯ୍ୟକ ହୋଇଯାଇଛି । ଚନ୍ଦ୍ରମଣି ପଟ୍ଟନାୟକ କିମ୍ବା ରାଘବ ମହାନ୍ତି–ଏମାନଙ୍କୁ ତ କାହିଁ କେଉଁଠି ଫିଙ୍ଗି ଦେଇନାହାନ୍ତି ସେ ! କଥାଶିଳ୍ପୀ ଏଇ କକ୍ଷଚ୍ୟୁତ ମାନବ ଶିଶୁମାନଙ୍କୁ ସମୟର ଚଳନ୍ତି ରୁଚିବନ୍ୟାରେ ଭାସୁଥିବା ଅବସ୍ଥାରେ ବାରମ୍ବାର ଦେଖିଛନ୍ତି । କିନ୍ତୁ ମୌନ ହୋଇ ସେଠି ରହିଯାଇ ନାହାଁନ୍ତି । ତାଙ୍କ ସହିତ ଯେଉଁ ସଂଳାପ ସେ କରିଛନ୍ତି– ସେଠି ମଧ୍ୟ ଅଛି କିଛି ତିର୍ଯ୍ୟକ ଅଭିବ୍ୟକ୍ତି ।

ଫକୀରମୋହନଙ୍କ କଥା-ସାହିତ୍ୟକୁ ଚିହ୍ନିବାର ଏକାନ୍ତ ଅବଲମ୍ବନ ହେଉଛି, ତାଙ୍କର ଏଇ ଅଭିବ୍ୟକ୍ତିଟି । ଏଇ ଅଭିବ୍ୟକ୍ତିଟି ଏତେ ନିଜସ୍ୱ ଓ ଅନନୁକରଣୀୟ ଯେ ତାହା ବିହୁନେ ତାଙ୍କର ଗଳ୍ପ ଓ ଉପନ୍ୟାସ ଫକୀରମୋହନୀ ଲେଖା ବୋଲି ଚିହ୍ନିତ ହେବ ନାହିଁ । ଏଠାରେ ଯେଉଁ ଅଭିବ୍ୟକ୍ତିର କଥା କୁହାଯାଉଛି, ତାହା କେବଳ ଭାଷାକୁ ବୁଝାଉ ନାହିଁ । ଭାଷା ଓ ପରିବେଷଣ କଳା ଦୁହେଁ ମିଶିଲେ ଯାହା ହୁଏ;

---

* ଫକୀରମୋହନ ସେନାପତି–ଛମାଣ ଆଠଗୁଣ୍ଠ-ଦ୍ୱାଦଶ ପରିଚ୍ଛେଦ ।

Digitized by srujanika@gmail.com

ତାହାହିଁ ହେଉଛି ଅଭିବ୍ୟକ୍ତି । ପରିବେଷଣ ବୋଇଲେ; ଘଟଣା, ଭାବ ଓ ଚରିତ୍ରାବଳୀର ବିନ୍ୟାସକୁ ବୁଝାଏ । ଅତଏବ ଉପଯୋଗିତା ମୁତାବକ ଭାଷା, ଭାବ, ଘଟଣା ଓ ଚରିତ୍ରର କଳାତ୍ମକ ବିନ୍ୟାସକୁ ହିଁ ଅଭିବ୍ୟକ୍ତି କୁହାଯାଏ; ତାହାହିଁ ହେଉଛି ଫକୀରମୋହନୀ କଥା ସାହିତ୍ୟର ନିଜସ୍ୱ ଶକ୍ତି କିମ୍ବା ଚିହ୍ନା ହରଫ୍ ।

ଏହି ଶକ୍ତି, ଅନୁଭୂତିର ଅକ୍ଷୟ ପ୍ରେରଣାରେ ଅଭିଷିକ୍ତ । ପରାଙ୍ଗପୁଷ୍ଟ ନୁହେଁ କି ଭିନ୍ନ କୌଣସି କୋଠରୀ ବା ଗନ୍ତାଘରୁ ସଂଗୃହୀତ ଉପାଦାନ ଉପରେ ନିର୍ଭରଶୀଳ ନୁହେଁ । ଫକୀରମୋହନଙ୍କ ଦର୍ଶନ ଚେତେଇ ଦିଏ ଯେ—ସାହିତ୍ୟର ଉପାଦାନ ମାଟିର ମହକୁମା ଭିତରେ ହିଁ ପୂରିରହିଥାଏ । ଏଥିପାଇଁ ଭିକ୍ଷାର ଆଶ୍ରୟ ନେବାକୁ ପଡ଼େନାହିଁ । ଆଖି ଖୋଲି ସବୁଥିରେ ଆପଣାକୁ ମିଶେଇ ଦେବାକୁ ହୁଏ । ଏପରି ବ୍ୟାପ୍ତି ବା ତୃତୀୟ ନୟନର ପ୍ରସାରଣ ମଧ୍ୟ ଦେଇ ମାଟିର ଭାବନାକୁ ଅନ୍ତରଙ୍ଗ ଭାବେ ଉପଲବ୍ଧି କରିଛନ୍ତି ଫକୀରମୋହନ । ତେଣୁ ତାଙ୍କ କଥା-ସାହିତ୍ୟରେ ଓଡ଼ିଆ ଜୀବନ ଲିପି, ଗାଁ ମାଟିର ଚିତ୍ର-ଚରିତ୍ର ଏବଂ ଚଳନ୍ତି ତୁଣ୍ଡର ଉଚ୍ଚାରଣ ସଜୀବ ଓ ସୁବିନ୍ୟସ୍ତ ହୋଇ ପ୍ରକାଶ ପାଇଛି । ଏଥିରୁ ବୁଝିହେବ ଯେ ଫକୀରମୋହନଙ୍କ ସାହିତ୍ୟ ହେଉଛି ଯଥାର୍ଥତଃ ଓଡ଼ିଆ ସାହିତ୍ୟ- ଓଡ଼ିଶାର ସାହିତ୍ୟ, ଓଡ଼ିଆ ଲୋକଜୀବନର ସାହିତ୍ୟ ।

କିନ୍ତୁ ଏଇ କାରଣରୁ ଏହାକୁ ଆଞ୍ଚଳିକତାର ସୀମାରେଖା ଭିତରେ ଥାପି ଦେଇ ଏହାକୁ ଚିରନ୍ତନୀ ଆବେଦନ-ସଂଚାରୀ ଶକ୍ତିକୁ ଅସ୍ୱୀକାର କରି ହେବ ନାହିଁ । ଫକୀରମୋହନଙ୍କ କଥା-ସାହିତ୍ୟ ଅବିସ୍ମରଣୀୟ ଏଥିପାଇଁ ଯେ, ଏହାର ପ୍ରତ୍ୟେକଟି ଉପାଦାନ ଯଦିଓ ଦେଶ-ମାଟିର ଭୌଗୋଳିକ ସୀମା ପରିସରରୁ ସଂଗୃହୀତ ତଥାପି ଏହାର ସଂବେଦନ ସ୍ୱଦେଶ-ସୀମାଉତ୍ତୀର୍ଣ୍ଣ, ତେଣୁ ସାର୍ବଜନୀନ । ସେଇ ନ୍ୟାୟରେ କଥା-ଶିଳ୍ପୀ ସେନାପତି ଯେପରି ଓଡ଼ିଆ ଜାତୀୟ ସାହିତ୍ୟର ସ୍ରଷ୍ଟା ଏବଂ ଜାତୀୟ ଜୀବନ-ଜିଜ୍ଞାସାର ଜନକ ସେହିପରି ମଧ୍ୟ ବିଶ୍ୱ-ବାସୀ ମଣିଷର ବାସ୍ତବ କଥାକାର ।

ଏହି ଜୀବନ-ଜିଜ୍ଞାସାର ଜନ୍ମ, ସମୟର ବିସ୍ତୃତ ଦିଗନ୍ତରୁ । ଫକୀରମୋହନ, ସମୟର ତ୍ରିବିଧ ସ୍ୱରୂପ—ଅତୀତ, ବର୍ତ୍ତମାନ ଓ ଭବିଷ୍ୟତକୁ ଏକାକାର କରି ତାଙ୍କ ଜୀବନ-ଜିଜ୍ଞାସାର ରୂପରେଖ ତିଆରି ଦେଇଛନ୍ତି । ଏଥିରେ ଅତୀତର ଐତିହ୍ୟ ପ୍ରତି ଗରିମା-ଜ୍ଞାନ ଏବଂ ଉପଯୋଗିତାନୁସାରେ ତା'ର ସଂରକ୍ଷଣ ପାଇଁ ତତ୍ପରତା ଯେପରି ପ୍ରକାଶ ପାଇଛି, ସେହିପରି ଉକୁଟି ଉଠିଛି ବର୍ତ୍ତମାନର ପ୍ରଭାବ ପ୍ରମତ୍ତତାକୁ ଗ୍ରହଣ ବା ତ୍ୟାଗ କରି ଭବିଷ୍ୟତ ଜୀବନ ନିର୍ମାଣର ଉପକ୍ରମ । ଫକୀରମୋହନ ଯେଉଁ ସମୟ ଓ ସମାଜର କଥାକାର, ତାହା ଅବକ୍ଷୟୀ ଆଭିଜାତ୍ୟର ଖଣ୍ଡିତ ବିଳାସ-ଗର୍ବରେ ସ୍ଫୀତବକ୍ଷ । ତଥାପି ତାହାରି ଆଲୁଅ ଅନ୍ଧାର ଭିତରେ ବୁଡ଼ିରହି ନିଜସ୍ୱ ଭୂମିକାର ଆପଣାପଣକୁ ପାଶୋରି ଦେବା ଭଳି ବିଚାରଧାରା ତାକୁ ଛନ୍ଦି ଦେଇ

Digitized by srujanika@gmail.com

ନାହିଁ । ବରଂ ଫକୀରମୋହନଙ୍କ କଥା-ସାହିତ୍ୟ ତାଙ୍କ ବ୍ୟକ୍ତିଜୀବନ ଓ ଆମ ମାଟିର ଆତ୍ମସତ୍ତାର ଏକ ନିର୍ଭୁଲ ପ୍ରତିଧ୍ୱନି ରୂପେ ଏଯାବତ୍ ପ୍ରତ୍ୟେକଙ୍କ ପ୍ରାଣକୁ ଭାବ-ଦୃଷ୍ଟ କରିପାରିଛି । ବାଘ ସିଂହ ବା ପ୍ରତାପୀ ଉଦିତ ମଲ୍ଲରାୟ କିମ୍ବା ବାଦଲ ସିଂ ଓ ଲଛମା ପ୍ରଭୃତିଙ୍କର ବ୍ୟକ୍ତିତ୍ୱ ପରିସ୍ଫୁଟନରେ ମାଟିର ରଣପିପାସୁ ସାମରିକ ଗୌରବୋଲ୍ଲାସର ନିଦର୍ଶନ ପ୍ରଚ୍ଛନ୍ନ ନାହିଁ କି ?

ଫକୀରମୋହନଙ୍କ ଦୃଷ୍ଟି ସବୁ ମଣିଷଙ୍କ ଅନ୍ତରଭେଦ କରିଛି; ପ୍ରତ୍ୟେକଙ୍କର ସ୍ଥିତିର ଭୂମିକା ଉପରେ ନଜର ପକେଇଛି । କି ସାମନ୍ତ କି ସେବକ କେହି ତ ଏଥିରୁ ବାଦ୍ ଯାଇନାହାନ୍ତି । କେବଳ ଏଇ ଦୁଇଟି ବର୍ଗ ନୁହଁନ୍ତି– ଏଥି ଭିତରେ ଯେତେ ବର୍ଗର ଲୋକ-ଚରିତ୍ର ରହିଲେ, ସମସ୍ତେ ଫକୀରମୋହନଙ୍କର କଥା-ସାହିତ୍ୟର ଚୌହଦୀ ମାଡ଼ିଛନ୍ତି– ନିଜେ ଖେଳିଛନ୍ତି; ଅନ୍ୟମାନଙ୍କୁ ଖେଳିବାରେ ସାହାଯ୍ୟ କରିଛନ୍ତି । ଏମିତି ଖେଳୁ ଖେଳୁ କେହି ମୁଖ୍ୟ ଭୂମିକାରେ ଗଣ୍ୟମାନ୍ୟ ଦିଶିଛି ତ କେହି ଗୌଣ ଭୂମିକାରେ ନିଜର କାର୍ତ୍ତିକଳାପ ଫୁଟେଇ ଟାଣୁଆ ହୋଇ ବିକଶିଛି ପଛେ ନଗଣ୍ୟ ହୋଇଯାଇ ନାହିଁ । ଏଥିର କାରଣ– କଥାଶିଳ୍ପୀଙ୍କର ଶକ୍ତି ଭିନ୍ନ ଅନ୍ୟ କିଛି ନୁହେଁ ।

ତାଙ୍କର ମୁଖ୍ୟ ଓ ଗୌଣ ଚରିତ୍ରଗଣ ସ୍ୱଶକ୍ତିରେ ଶକ୍ତିଶାଳୀ । କେହି ଆପାତ୍‌କ୍ଷେୟ ନୁହନ୍ତି କିମ୍ବା ଆମ ସ୍ମୃତିରେ ସ୍ୱଳ୍ପଜୀବୀ ନୁହନ୍ତି । ସମସ୍ତ ପାଠକଙ୍କ ନିକଟରେ ଅବିସ୍ମରଣୀୟ । ମଙ୍ଗରାଜ ବା ନାଜର ନଟବର ଦାସଙ୍କ ପରି ଗୋବିନ୍ଦା ଭଣ୍ଡାରୀ କିମ୍ବା ନାକଫୋଡ଼ା ମା'; ପ୍ରତ୍ୟେକ ଜଣେ ଜଣେ ଅଭୁଲା ଚରିତ୍ର । ମୁଖ୍ୟ ବା ଗୌଣ ଭୂମିକା ଭେଦରେ ଚରିତ୍ରମାନଙ୍କର ବ୍ୟକ୍ତିତ୍ୱରେ ଏପରି ପ୍ରଭାବସଂଚାରୀ ଶକ୍ତି ଫୁଟେଇ ପାରିବାର ଦକ୍ଷତା ହେଉଛି ଫକୀରମୋହନଙ୍କର କଥାଶିଳ୍ପୀର ମୌଳିକ ବୈଶିଷ୍ଟ୍ୟ ।

ଫକୀରମୋହନଙ୍କ କଥା-ସାହିତ୍ୟ; ସାମାଜିକ ପରିପ୍ରେକ୍ଷୀରେ ମାନବର ଜୀବନ ସମସ୍ୟା ଓ ନୈମିତ୍ତିକ ବାସ୍ତବତାକୁ ରୂପାୟିତ କରିଛି । ଏଥିରେ ମଣିଷର ବିବିଧ ସ୍ୱରୂପ ଉତ୍‌କୀର୍ଣ୍ଣ ହେବା ସ୍ୱାଭାବିକ । ନାରୀ/ପୁରୁଷ ଯେ କେହି ହୁଅନ୍ତୁ ନା କାହିଁକି ସେମାନଙ୍କର ସ୍ୱରୂପକୁ ପୂର୍ଣ୍ଣତଃ ଉନ୍‌ମୋଚିତ କରି ତହିଁରେ ଆପଣାର ବିଚାର-ବିଶ୍ଳେଷଣକୁ ବିନିଯୋଗ କରିଛନ୍ତି କଥାକାର । ନାରୀକୁ ମାନବୀ, ଦାନବୀ ଓ ଦେବୀ ସ୍ୱରୂପରେ ହିଁ କଥାକାର ଦେଖିଛନ୍ତି । ତାଙ୍କ ଦୃଷ୍ଟି, ସା'ନ୍ତାଣୀଙ୍କଠାରେ ଦେବୀତ୍ୱର ସତ୍ତା ଅନୁଭବ କଲାବେଳେ ଚମ୍ପା ଓ ଚିତ୍ରାଙ୍କଠାରେ ଦାନବୀତ୍ୱର ସ୍ୱାଭାବିକତା ପର୍ଯ୍ୟବେକ୍ଷଣ କରିଛି; ସେହିପରି ଏହା ମଧ୍ୟ ସାରିଆ / ଚାନ୍ଦମଣି / ସରସ୍ୱତୀ ଦେଈଙ୍କଠାରୁ ମାନବୀ ସତ୍ତାର ଅଭ୍ରାନ୍ତ ପରିଚୟ ଲାଭ କରିଛି । ନାରୀ-ସତ୍ତାର ଭାବ-ମୂର୍ତ୍ତି ଅଙ୍କନ ଅବସରରେ ଫକୀରମୋହନ ମଧ୍ୟ କୌଣସି ନା କୌଣସି ଚରିତ୍ରରେ

Digitized by srujanika@gmail.com

ଏଇ ତ୍ରିସତ୍ତାର ସମାବେଶ ଲକ୍ଷ୍ୟ କରିଛନ୍ତି ଯେପରି ସୁଲୋଚନା ଦେଈଙ୍କ ଚରିତ୍ର । ଏଠି ଏକ ଅଙ୍ଗରେ ତିନୋଟି ଭାବର (ଦେବୀ, ଦାନବୀ, ମାନବୀ) ସମନ୍ୱୟ ଘଟିଥିବା ସ୍ପଷ୍ଟ ଜଣାଯାଏ ।

କେବଳ ନାରୀ କାହିଁକି, ମାନବୀ ଚରିତ୍ର ସଂପର୍କରେ ଫକୀରମୋହନଙ୍କର ଦୃଷ୍ଟିକୋଣ ହେଉଛି ଏହିପରି । ମାନବଚରିତ୍ର ବାବଦରେ ତାଙ୍କର ଧାରଣାରୁ ସୂଚିତ ହୁଏ ଯେ, ମନୁଷ୍ୟ ହେଉଛି ଚିରକାଳ ମନୁଷ୍ୟ । ମଣିଷ ମଣିଷ ଭିତରେ ଉପାଦାନଗତ ସାମଞ୍ଜସ୍ୟ ଥାଇପାରେ, ମାତ୍ର ପ୍ରବୃତ୍ତି ସର୍ବତ୍ର ସମାନ ନୁହେଁ । ବୃତ୍ତିମାନଙ୍କୁ ନେଇ ମଣିଷର ମନ ଗଠିତ । ପ୍ରବୃତ୍ତି ସମସ୍ତ ଆନୁପାତିକ ଆଚାର ହରାଇ ସୀମା ଲଙ୍ଘନ କଲେ ମଣିଷର ମଣିଷପଣିଆ ଲୋପ ପାଇଯାଏ । ସେପରି ସ୍ଥଳେ ସେ ହୁଏତ ହୁଏ ଦେବତା ନଚେତ୍ ରାକ୍ଷସ ।* ଏହାହିଁ ହେଉଛି ଫକୀରମୋହନଙ୍କର ମାନବଜୀବନ ସଂପର୍କରେ ନିଜସ୍ୱ ଦୃଷ୍ଟିକୋଣ । ତେଣୁ ତାଙ୍କ ସାହିତ୍ୟରେ ଜୀବନର ତ୍ରିବିଧ ସ୍ୱରୂପ ଯେ ଉତ୍‌କୀର୍ଣ୍ଣ ହେବ– ଏଥିରେ କୌଣସି ସନ୍ଦେହ ନାହିଁ ।

ଜୀବନର ଚଲାପଥରେ ଏପରି ବ୍ୟକ୍ତି ତ ସଚରାଚର ବିଦ୍ୟମାନ । ଫକୀରମୋହନଙ୍କର ପର୍ଯ୍ୟବେକ୍ଷଣ ଶକ୍ତି ହିଁ ସେମାନଙ୍କୁ ବାସ୍ତବ ଭୂମିକାରେ ସାକ୍ଷାତ କରିଛି । ତାଙ୍କୁ ସବାକ୍ ମୂର୍ତ୍ତି କିମ୍ବା ଗୋଟିଏ ଗୋଟିଏ ଚଳମାନ ଜୀବନଭଳି ପରିବେଷିତ କରିବା ମୂଳରେ ରହିଛି- କଥାକାରଙ୍କର ଆଖିର ଭାବ ଓ ତୁଣ୍ଡର ଭାଷା ।

ମୁଁ ସାକ୍ଷାତରେ ଫକୀରମୋହନଙ୍କୁ ଦେଖିନାହିଁ । କିନ୍ତୁ ଦେଖିଛି ତାଙ୍କର ବିଭିନ୍ନ ଛବି । ଆପଣମାନେ ବି ଦେଖିବେ । ଯେତେ ଛବି ଦେଖିଛି, ସବୁଠି ଲକ୍ଷ୍ୟ କରିଛି ତାଙ୍କର ସେଇ ଆଖି ଦି’ଟାର ତେଜୀୟାନ ଶକ୍ତି । ଖୁବ୍ ଟାଣୁଆ ନଜର ସେଇ ଆଖି

---

* ବିଶ୍ୱବିଧାତା ସମାଜ ଉପାଦାନରେ ଜଗତରେ ସମସ୍ତ ନରନାରୀଙ୍କୁ ସୃଷ୍ଟି କରିଅଛନ୍ତି । ରକ୍ତ, ମାଂସ, ଅସ୍ଥି, ମଳ, ମୂତ୍ରରେ ଯେପରି ଶରୀର ଗଠିତ ସେହିପରି ଦୟା, ମାୟା, ସ୍ନେହ, ମମତା ହିଂସା, ଦ୍ୱେଷ, ନିଷ୍ଠୁରତା ପ୍ରଭୃତି ବୃତ୍ତିମାନଙ୍କରେ ମନ ଗଠିତ । ସେହି ସମସ୍ତବୃତ୍ତି ଉପଯୁକ୍ତ ରୂପେ ସମାନ ଭାବରେ କାର୍ଯ୍ୟକାରୀହେଲେ ମନୁଷ୍ୟ, ମନୁଷ୍ୟ, ହୋଇଥାଏ । ମାତ୍ର ଯେବେ ଗୋଟିଏ ଉପାଦାନ ବଳବତ୍ତର ହୋଇ ସୀମା ଲଙ୍ଘନ ପୂର୍ବକ ଅନ୍ୟ ବୃତ୍ତିମାନଙ୍କ ଉପରେ ଆଧିପତ୍ୟ ବିସ୍ତାର କରେ, ତେବେ ସେ ମନୁଷ୍ୟର ମନୁଷ୍ୟତ୍ୱ ଲୁପ୍ତ ହୋଇଯାଏ; ତେତେବେଳେ ହୁଏତ ସେ ଦେବତା ନଚେତ୍ ରାକ୍ଷସ ରୂପେ ପରିଗଣିତ ହୁଏ । ଅର୍ଥାତ୍ ମନୁଷ୍ୟର ମନ ସ୍ୱର୍ଗୀୟ ଓ ନାରକୀୟ ଦୁଇ ପ୍ରକାର ବୃତ୍ତିରେ ଗଠିତ । ସ୍ୱର୍ଗୀୟ ବୃତ୍ତି ମନୁଷ୍ୟକୁ ଦେବ ରୂପରେ ପରିଗଣିତ କରେ ଓ ନାରକୀୟ ବୃତ୍ତି ରାକ୍ଷସ କରିପକାଏ ।

(ଫକୀରମୋହନ ସେନାପତି–ଛମାଣ ଆଠଗୁଣ୍ଠ-ଅଷ୍ଟାଦଶ ପରିଚ୍ଛେଦରୁ ଗୃହୀତ)

Digitized by srujanika@gmail.com

ଦି'ଟାର । ନିଠେଇ ଦେଖନ୍ତୁ ଆପଣ; ଅନୁଭବ କରିବେ–ସେଇ ଆଖି ଦୁଇଟା ଆଉ କଥା କହୁଛି କି ? ବିଜୁଳିର ଗତି ଭଳି ତାର ଗତି, ଭିତରେ ଛପି ରହିଛି ସତେ ଯେମିତି ଖୋଜିଲାପଣର ଛଇ–ଘଞ୍ଚ ଅନ୍ଧାର ଭିତରେ ନିର୍ଭୟରେ ପଶିଯାଇ ଗୁପ୍ତ ନିଧି ସବୁ ସାଉଁଟି ଆଣିବ ପରା ! ଯୁଝି ଯୁଝି ଅନ୍ଧାରକୁ ହରେଇ ଦେବ କି ଆଉ ?

ଛବିରେ ଫକୀରମୋହନ ଆମକୁ ଏମିତି ପ୍ରତେ ହୁଅନ୍ତି ସିନା; ଏଇ ସମ୍ଭାବନା ତାଙ୍କ ସାହିତ୍ୟର ପ୍ରମାଣ-ପତ୍ରରେ ବାସ୍ତବ ହେଇ ଯାଇଛି । ପ୍ରତ୍ୟେକ ବିଷୟକୁ ଟିକିନିଖି ବୁଝି ବୁଝେଇବାର ଢଙ୍ଗ ଫକୀରମୋହନଙ୍କ କଥା-ଶକ୍ତିକୁ ଖୁବ୍ ଟାଣ କରିଛି । ଗୋଟାଏ ଭାବକୁ ପାଇବାପାଇଁ ତାଙ୍କୁ ଅନୁସନ୍ଧାନର ଲମ୍ବାପଥ ଅତିକ୍ରମ କରିବାକୁ ପଡ଼େ । ବାହ୍ୟ କାର୍ଯ୍ୟରେ ସହଗାମୀ ହୋଇ ଫକୀରମୋହନୀ ଦୃଷ୍ଟି ମନର ଭାବଟିକୁ ସଂଗ୍ରହ କରି ନିଏ । ଏହାହିଁ ହେଉଛି ଫକୀର ମୋହନଙ୍କର ନିଜସ୍ୱ ଢଙ୍ଗ ।*

ଏଇ ଦୃଷ୍ଟିକି କହିବା ପରିପକ୍ୱ ବୋଧ-ଦୃଷ୍ଟି । କୌଣସି ବିଷୟ ହେଉ କି ବସ୍ତୁ ହେଉ କିବା କୌଣସି ବିମୂର୍ତ୍ତ କଳ୍ପନା ହେଉ ବୋଧଦୃଷ୍ଟି ଏମାନଙ୍କର ଚତୁଃପାର୍ଶ୍ୱ ଅନ୍ୱେଷଣକରି, ଅତୀତ, ବର୍ତ୍ତମାନ, ଭବିଷ୍ୟତର ଖବର ବୁଝି ତଥ୍ୟ ଓ ତତ୍ତ୍ୱକୁ ଉଲ୍ଲେଖ କରେ । ଅନ୍ୟ କଥାରେ କହିଲେ ବୋଧଦୃଷ୍ଟିରେ ଉପଲବ୍ଧିର ଗଭୀରତା ଓ ବ୍ୟାପକତା ନିହିତ । କିନ୍ତୁ ରସ-ଦୃଷ୍ଟିରେ ମୁଗ୍ଧ ଅନୁଭବର ପ୍ରବଣତା ପରିଲକ୍ଷିତ ହୋଇଥାଏ । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ–ରସଦୃଷ୍ଟି ବଳରେ ସରୋବରରେ ଫୁଟିଥିବା ପଦ୍ମକୁ ଦେଖି ମୁଗ୍ଧ ଭାବୁକତା ଜାତ ହୋଇଥାଏ । ଏତେବେଳେ ପଦ୍ମର ନିମଜ୍ଜିତ ଅଂଶ ବାବଦରେ କିଛି ଜିଜ୍ଞାସା ଜାତ ହୁଏନା । ବୋଧଦୃଷ୍ଟି ଥିଲେ, କେବଳ ପଦ୍ମ ଦେଖି ସନ୍ତୋଷ ଆସେନା, ତାହାର ମୃଣାଳ ବାହୁ ସାହାଯ୍ୟରେ ପଙ୍କଭିତରକୁ ପଶିବାକୁ ଇଚ୍ଛାହୁଏ । ପଙ୍କଜର ଉତ୍ସ-ଉନ୍ମେଷ ଇତ୍ୟାଦି ଆବିଷ୍କାର କରିବାକୁ ମନବଳେ ।

ପ୍ରଜ୍ଞା ଦୃଷ୍ଟି ଏମାନଙ୍କଠାରୁ ଭିନ୍ନ । ଏହି ଦୃଷ୍ଟି ହେଉଛି ଜ୍ଞାନୀର ସମ୍ବଳ । ଏହା ସାହାଯ୍ୟରେ ଜ୍ଞାନୀ, ଜଗତର ତ୍ରୁଟି ବିଚ୍ୟୁତି ବା କ୍ଷୟ-କ୍ଷତି ଓ ପୂର୍ଣ୍ଣତା-ଅପୂର୍ଣ୍ଣତାକୁ ସୁକ୍ଷମ ଓ ସୁଶୃଙ୍ଖଳକରି ଅଙ୍କନ କରିପାରେ । ଏଇ ସବୁଦୃଷ୍ଟିର ତାରତମ୍ୟକୁ ବିଚାରକରି ନିଃସନ୍ଦେହରେ କୁହାଯାଇପାରେ

---

* 'ଆମ୍ଭମାନଙ୍କ ପାଖରେ, କିନ୍ତୁ କାହାର କଥା ଲୁଚିବାର ବାଟନାହିଁ । ବଣୁଆ ଖୋଜର ମଡ଼ା ଧରି ଧରି ଯାଇ ଜନ୍ତୁ ଭେଟନ୍ତି । ସେହିପରି ଆମ୍ଭେମାନେ ଲୋକମାନଙ୍କ କାର୍ଯ୍ୟ ସବୁର ପିଛା ଧରି ଧରି ସେମାନଙ୍କ ମନର ଭାବ ଧରି ପକାଉଁ ।' (ଫକୀରମୋହନ ସେନାପତି–ଛମାଣ ଆଠଗୁଣ୍ଠ-ଦଶମ ପରିଚ୍ଛେଦ)

Digitized by srujanika@gmail.com

ଯେ ଫକୀରମୋହନଙ୍କର ଦୃଷ୍ଟି ହେଉଛି, ପରିପକ୍ୱ ବୋଧଦୃଷ୍ଟି ପର୍ଯ୍ୟାୟର । କାରଣ ଫକୀରମୋହନ ଯାହା ଲେଖନ୍ତି ବା ପ୍ରକାଶ କରନ୍ତି ତାହା ସୂକ୍ଷ୍ମାତିସୂକ୍ଷ୍ମ ଏବଂ ବ୍ୟାପକ ପର୍ଯ୍ୟବେକ୍ଷଣରୁ ହିଁ ଉତ୍ପନ୍ନ । ଏଇ ବୋଧ ଦୃଷ୍ଟି ହେଉଛି ତାଙ୍କ ସାହିତ୍ୟର ମୂଳ ଅବଲମ୍ବନ; ଅବଶ୍ୟ ସ୍ଥଳ ବିଶେଷରେ ପ୍ରଜ୍ଞାଦୃଷ୍ଟି, ରସଦୃଷ୍ଟି ଓ ବୋଧଦୃଷ୍ଟିର ସମନ୍ୱୟ ଯେ ଘଟିନାହିଁ, ଏକଥା ନୁହେଁ । ତଥାପି ମୁଖ୍ୟ ହେଉଛି ବୋଧଦୃଷ୍ଟି । ତାଙ୍କ କଥା ସାହିତ୍ୟର ପୂର୍ଣ୍ଣାଙ୍ଗ ଅଧ୍ୟୟନ ଓ ଅନୁଶୀଳନରୁ ହିଁ ଏହି ଧାରଣା ଜନ୍ମିଥାଏ ।

ଫକୀରମୋହନ ହେଉଛନ୍ତି ଜଣେ କ୍ଲାସିକ କଥାକାର । କୌଣସି ଯୁଗର ସୀମା ଭିତରେ ସେ ଆବଦ୍ଧ ନୁହନ୍ତି; ସେ କାଳୋତ୍ତୀର୍ଣ୍ଣ । ତେଣୁ ପ୍ରତ୍ୟେକ ପାଠକ ତାଙ୍କ କଥା-ସାହିତ୍ୟରୁ ଚିରନ୍ତନ ଆବେଦନ ଲାଭ କରିଥାନ୍ତି ।



---

(ଏକବିଂଶ ଶତାବ୍ଦୀର ପାଠକ କିମ୍ବା କେହି ବିଦଗ୍ଧ ଆଲୋଚକ ଫକୀରମୋହନଙ୍କ ମନୀଷାକୁ କେଉଁ ମାନଦଣ୍ଡରେ ବିଚାର କରିବ ତାହା ଭିନେ କଥା । କିନ୍ତୁ ଏଇ ଅଭିନବ ଦୃଷ୍ଟିକୋଣରୁ ଫକୀରମୋହନଙ୍କୁ ଚିହ୍ନିବାର କେତୋଟି ସମ୍ଭାବନାର ସୂଚନା ଏଠି ଦେଇଛି; ଉଦ୍ଦେଶ୍ୟ ପୋଷିଛି– ପାଠକେ ଫକୀରମୋହନଙ୍କ ସମଗ୍ର କଥା ସାହିତ୍ୟକୁ ଏକତ୍ର ପାଠକରି ନବ ଦିଗନ୍ତରୁ ତାଙ୍କୁ ଆସ୍ୱାଦନ କରିବେ ।)

(ତଥାପି, ଅଷ୍ଟମବର୍ଷ-ପ୍ରଥମ ସଂଖ୍ୟା)

Digitized by srujanika@gmail.com

# ଲେଖକର ସ୍ୱର୍ଗ ଓ ମର୍ତ୍ତ୍ୟ

ସମସ୍ତେ ସ୍ୱୀକାର କରନ୍ତି, ଲେଖକ ଜୀବନର ଜଣେ ଲିପିକାର; କାଳର ଯାତ୍ରୀ ପୁଣି କାଳୋତ୍ତର ଜୀବନର କ୍ରାନ୍ତଦ୍ରଷ୍ଟା । ଲେଖକର ଚଳାପଥର ଶେଷ ନାହିଁ । ଅକ୍ଳାନ୍ତ ଯାତ୍ରା ଭିତରେ କେବଳ ଆନନ୍ଦ ହିଁ ଲେଖକର ପ୍ରାଣଧନ । ସତ୍ୟର ସାଧନା ହେଉଛି ତା'ର ଶ୍ରେଷ୍ଠ ସାଧନା । ସତ୍ୟ ଲାଗି ପଥଖୋଜା କୌଣସି ଧରାବଂଧା ବଂଧନର ଆଶ୍ରୟ ଲୋଡ଼େ ନା, ନିଷ୍ଠାର ସହ ଚାଲୁ ଚାଲୁ ଟାଙ୍ଗର ଭୂଇଁ ବା କଣ୍ଟାଝାଡ଼ ଉପରେ ଯାହା ତିଆରି ହୋଇଯାଏ ତାହାହିଁ ସତ୍ୟର ପଥ ।

ପୂର୍ବ ଯାତ୍ରୀଙ୍କ ପଥ ସହିତ ଏହାର କେଉଁଠି ଯୋଗ ବା ବିୟୋଗ ଥାଇପାରେ । ଏପରି ଯୋଗ ବା ବିୟୋଗ ବଡ଼ କଥା ନୁହେଁ, ବଡ଼ ହେଉଛି ଫଳ ସ୍ମରଣ ! ପୂର୍ବ ପୁରୁଷମାନେ ଆମକୁ ଦେଇଥାନ୍ତି ସତ୍ୟର ସ୍ମୃତି । ଉତ୍ତର ପୁରୁଷଙ୍କୁ ଆମେ ଦେଉଁ ସତ୍ୟର ଆଭାଷ । କିଂତୁ ଆମେ ଆମ କାଳର ପୁରୁଷଗଣଙ୍କୁ ସତ୍ୟର ସଂକେତ ହିଁ ଶୁଣାଇଥାଉଁ ।

ସତ୍ୟକୁ ସ୍ୱଭାବ-ସ୍ୱରୂପରେ କେହି କାହାକୁ ହାତଟେକି ଦେଇପାରେ ନାହିଁ । ସତ୍ୟକୁ ଉପଲବ୍ଧ କରିବାକୁ ହୁଏ । ଉପଲବ୍ଧିର ଭାଷା ସଞ୍ଚାର ଏବଂ ଭାଷା ଜରିଆରେ ଭାବର କୋଟି କୋଟି ପ୍ରତିମା ଆଙ୍କି ତାଙ୍କୁ ଅନ୍ୟମାନଙ୍କ (ସାହିତ୍ୟ-ଗ୍ରାହକ) ବୋଧମନ୍ଦିରକୁ ପଠାଇ ପାରିବା ହେଉଛି ଲେଖକଙ୍କ ସାଧନାର ସାର୍ଥକ ଫଳ । ଏପରି ଚମତ୍କାର କଳାଜ୍ଞାନ କେହି କୌଣସି ଲେଖକକୁ ଶିଖାଏ ନାହିଁ । ପ୍ରତିଭାର ପ୍ରଭାବ ଥିଲେ ଲେଖକ ଆପେ ଆପେ ଗଢ଼ି ହୋଇ ଯାଆନ୍ତି । କାହାରି ଦ୍ୱାରା ଲେଖକ ଗଢ଼ା ହୁଅନ୍ତି ନାହିଁ । ଲେଖକ ତିଆରି-କାରଖାନାରୁ ଉତ୍ପନ୍ନ ଲେଖକ ସ୍ୱଭାବ ଭ୍ରଷ୍ଟ । ଠିକ୍ ସେହିପରି ଆପଣା ମାଟିର ଜୀବନ ଧାରାରୁ ବିଚ୍ଛିନ୍ନ ଲେଖକ ଆପଣା ବଂଶଧରଙ୍କ ପାଇଁ ଅଚିହ୍ନା, ଅପରିଚିତ । ଏମାନଙ୍କ ଦ୍ୱାରା ସୃଷ୍ଟି ରକ୍ଷା ସମ୍ଭବ

Digitized by srujanika@gmail.com

ନୁହେଁ । ଏମାନଙ୍କ ରଚନା ଅମୁହାଁ ପୋଖରୀ ବା ପରିତ୍ୟକ୍ତ ଇଲାକା ପରି । ଏମାନଙ୍କ ଲେଖା ଆପଣାକୁ ବଡ଼ ବୋଲି ମନେହୁଏ ସିନା, ଅନ୍ୟମାନଙ୍କ ମନରେ ଚେତନାର କୌଣସି ତରଂଗ ଖେଳାଇ ପାରେ ନାହିଁ ।

ଚଲାପଥରେ ଆଘାତ ଖାଇ ଖାଇ ଚେତନା ଲାଭ କଲେ ଯାଇ ସୃଷ୍ଟିର ଫସଲ ଅମଳ କରିହୁଏ । ଏହି ଚେତନାରେ ବିଜୟହିଁ ସୃଷ୍ଟିର ବିଜୟ । ଏଥିରୁ ଯେଉଁ ବୃକ୍ଷ ବା ଜୀବନର ଜନ୍ମ ତାହା ଏକ ସହଜ ଅସ୍ତିତ୍ୱ ନୁହେଁ; ସେ ସହସ୍ର ବାହୁ ଓ ସହସ୍ର ଚକ୍ଷୁ । ଏପରି ସନ୍ତାନଟିର ଜନକ ଯିଏ ତା' ଚଲାପଥର କ'ଣ ଶେଷ ଅଛି ନା ତା'ର ସତ୍ୟ-ଖୋଜା ଅଭିଯାନର ଇତିଅଛି ? ଏଇ ମର୍ତ୍ତ୍ୟ, ଏଇ ଜଗତରେ ହିଁ ଏପରି ବିଶାଳ ଶକ୍ତିଧରଙ୍କ ଜନ୍ମ ସମ୍ଭବ । ସାରସ୍ୱତ ସଂତାନମାନଙ୍କୁ ଜନ୍ମ ଦେବାବେଳେ ଲେଖକ ଏକାନ୍ତ ଭାବେ ମର୍ତ୍ତ୍ୟଚାରୀ ।

ଆମେ ଅନୁଭବ କରୁଛୁ ଆମର ଲେଖକଗଣ, ତାଙ୍କ ଲେଖାରେ ମୁକ୍ତିର ଇଚ୍ଛା ପୋଷଣ କରୁଛନ୍ତି । ଏଇ ମୁକ୍ତି କାହାଠାରୁ ? ଜରା, ମୃତ୍ୟୁ ଏବଂ ସମସ୍ୟା ସଂକୁଳ ଜୀବନରୁ ମୁକ୍ତ ହେବା ତାଙ୍କର ଇଚ୍ଛା । ଏଥିରୁ ମୁକ୍ତ ହୋଇଗଲେ ଲେଖକ ସ୍ୱର୍ଗରେ ନୀଡ଼ ରଚନା କରିବ । ସଂକଟର ଛାଇ ତାଙ୍କୁ ଛୁଇଁବ ନାହିଁ । ସେତେବେଳେ ଲେଖନୀର ଗତି ହେବ ନିର୍ବାଧ ଝରଣା ଭଳି । ଅନୁଭୂତିର ସାଉଁଟା ଫୁଲ ପେଣ୍ଡାରେ ନଥିବ କନିଶି କଣ୍ଟା । କିନ୍ତୁ ଭୟଠାରୁ ମୁକ୍ତିର ଇଚ୍ଛା ସେମାନଙ୍କର କାହିଁ । ଏଥିରୁ ମୁକ୍ତ ନ ହେଲେ ଲେଖକ ସତ୍ୟବାନ୍ ହୋଇ ପାରିବ ନାହିଁ । ସତ୍ୟବାନ ନ ହେବା ଅର୍ଥ ସୃଷ୍ଟିର କବର ତିଆରି କରିବା । ଏହି ଭୟ ହେଉଛି ସ୍ରଷ୍ଟାର ଶତ୍ରୁ, ସୃଷ୍ଟିର ବିରୋଧୀ ଓ ସଇତାନ । ସୃଷ୍ଟିର ସ୍ୱାଭାବିକ ନିଃସରଣ ଲାଗି ଭୟ ବିମୁକ୍ତ ମାନସିକ ପରିବେଶ ଗଢ଼ିବା ଲେଖକ ପକ୍ଷରେ ବାଞ୍ଛନୀୟ । ମିଛ ବିଶ୍ୱାସକୁ ଜାବୋଡ଼ି ଧରି ଘର ଭିତରେ ଜଳିଯିବା ଅପେକ୍ଷା ସତ୍ୟଲାଗି ନିର୍ଭୀକ ସଂଗ୍ରାମ ଚଳାଇବା ଲେଖକ ଓ ତାଙ୍କର ଭାବଗ୍ରାହୀମାନଙ୍କ ପାଇଁ ଅତ୍ୟନ୍ତ ସ୍ପୃହଣୀୟ ।

ଜଣାଯାଇଛି ସମସ୍ୟାର ଆଘାତ ପାଇ ମର୍ତ୍ତ୍ୟର ଲୋକ ଅତିଷ୍ଠ । ଲେଖକର ଇଚ୍ଛା ସମସ୍ୟାର ସଂକଟ ଦୂର ହୋଇଯାଉ । କିଂତୁ ସମସ୍ୟାକୁ ଦୂର କରି ଦେଲେ ସମସ୍ୟାର ଶେଷହୁଏ ନାହିଁ । ସମସ୍ୟାକୁ ଡେଇଁ ଯାଇ ପାରିଲେ ଶକ୍ତିର ମାନ ଚିହ୍ନା ପଡ଼େ । ସମସ୍ୟାକୁ ଡେଇଁ ଯାଇ, ସାଥିରେ ଅନ୍ୟମାନଙ୍କୁ ଆଗେଇ ନେବା ହେଉଛି ଲେଖକର ଧର୍ମ । ଦୁଃଖରେ କାନ୍ଦିବା କିଂବା ମର୍ତ୍ତ୍ୟ, ଦୁଃଖ-ଦାୟୀ ବୋଲି ସ୍ୱର୍ଗ ଖୋଜିବା ଶେଷ କଥା ନୁହେଁ । କାରଣ ମର୍ତ୍ତ୍ୟର ଶେଷରେ ସ୍ୱର୍ଗନାହିଁ । ଲେଖକ ପାଇଁ ମର୍ତ୍ତ୍ୟ ଓ ମର୍ତ୍ତ୍ୟହିଁ କେବଳ ଚିର ବିଦ୍ୟମାନ । ଏହି ମର୍ତ୍ତ୍ୟହିଁ ତାହାର ଚାରଣ ଭୂଇଁ ।

ସୁଖ ଓ ଦୁଃଖର ଭାବନାରେ ବିଳାପ ଲେଖକଙ୍କ ସୃଷ୍ଟିର ଉପାଦାନ ନୁହେଁ । ଚଲା ପଥରେ ଯାହା ଆସେ କଣ୍ଟା ବା ଫୁଲ ଉଭୟ ଲେଖକର ସୁଖମୟ ଉପାଦାନ ।

Digitized by srujanika@gmail.com

ସବୁଥିରେ ମଜ୍ଜିଗଲେ ଆତ୍ମବିସ୍ମୃତି ଆସେ କିଂତୁ ଆତ୍ମସ୍ଥ ଥାଇ ମଜ୍ଜିବାର ଅନୁଭୂତି ଆହରଣ କରି ପାରିଲେ ଭଲ । ଏତେବେଳେ ଲେଖକର ଶକ୍ତି ଖୁବ୍ ଟାଣ ହୋଇଯାଏ, ତାର ସର୍ବାଙ୍ଗ ଅନୁଭୂତିର ଅଖଣ୍ଡ ପ୍ରଭାବରେ ଚାର୍ଜଡ୍ ହୋଇଥିବା ଜଣାଯାଏ । ଏଇଠି ଲେଖକଙ୍କୁ ରୋକିବା ସହଜ ନୁହେଁ କିଂବା କୌଣସି କୃତିମତାର ଆଶଂକା କରିବା ମଧ୍ୟ ଏଠି ନିଷ୍ଫଳ ।

ଲେଖକ, ବୁଢ଼ୀଆଣି ପରି ଆପଣା ଭିତରୁ ସ୍ୱର୍ଗ ଓ ମର୍ତ୍ତ୍ୟର ମୌଳିକ ଉପାଦାନ ବାହାର କରିଥାଏ । ଆପଣାକୁ ଛାଡ଼ି ଭିନ୍ନ ମାଟିରେ କିଂବା ଭିନ୍ନ ଚରା ଭୂଇଁରେ ଠିଆ ହେବାର ଉଦ୍ୟମ କଲେ ସେହି ଉଦ୍ୟମର ଫଳ ସମସ୍ତଙ୍କ ଲାଗି ଭୋଗ୍ୟ ହୁଏନା । ତେଣୁ ଲେଖକର ସବୁ କିଛି ସାଧନା ଆପଣା ଜଗତର ମାଟି ମଣ୍ଡପରେ ହେବା ଉଚିତ । ତାହା ହେଲେ ଲେଖକ ଆମର ହେବେ ଏବଂ ଆମର ଛାୟାଛବି ଲେଖକଙ୍କ ଲେଖାରେ ପ୍ରତିଫଳିତ ହୋଇ ପାରିବ ଏବଂ ଲେଖକ ପାଠକଙ୍କ ଠାରେ ଅପରିଚିତ ହୋଇ ରହିବ ନାହିଁ ।

ଅପରିଚିତ ହୋଇ ନ ରହିବାରେ ହିଁ ଲେଖକର ସିଦ୍ଧି । ମୋର ଧାରଣା ହେଉଛି, ଲେଖକର ଗତି ସଂପୂର୍ଣ୍ଣ ତ୍ରିଭୁଜାକାର । ତ୍ରିଭୁଜର ତିନୋଟି ବିନ୍ଦୁ । ଶୀର୍ଷ ବିନ୍ଦୁରେ ଥାଉ ଜଗତ ବା ଜୀବନ; ଭୂମି ସଂଲଗ୍ନ ଦୁଇଟି ବିନ୍ଦୁରୁ ଗୋଟିକରେ ଲେଖକଙ୍କର ଦୃଷ୍ଟି ଓ ଅନ୍ୟଟିରେ ସମାଜ ବା ସହୃଦୟ ସମାଜିକଙ୍କର ସ୍ଥିତି । ଲେଖକ, ଆପଣା ଭୂମିରେ ଥାଇ ଏଇ ତ୍ରିଭୁଜର ଶୀର୍ଷ ବିନ୍ଦୁରେ ଥିବା ଜଗତ ବା ଜୀବନ ଉପରେ ଦୃଷ୍ଟି ନିକ୍ଷେପ କରି ଯେଉଁ ଅନୁଭୂତି ଲାଭ କରେ ତାହାକୁ ଭାବ ଓ ଭାଷାର ଶକ୍ତି ଯୋଗରେ ସମାଜ ଲାଗି ବିତରଣ କରିଥାଏ । ସମାଜ ବା ସହୃଦୟ ସାମାଜିକ ମାନେ ତହିଁରୁ ଭାବ-ଭୂତି ଆହରଣ କରି ପୁଣି ତାକୁ ଜଗତ ବକ୍ଷକୁ ବା ଜଗତର କୋଟି କୋଟି ଜୀବନ ଭିତରେ ସଂଚାରିତ କରେଇ ଦିଅନ୍ତି । କୌଣସି ଅଜ୍ଞାତ ଅଂଚଳରୁ ହେଉ ପଛେ ଏଇଥି ପାଇଁ ଲେଖକ ତୁଣ୍ଡର ଭାଷା ବିଦ୍ୟୁତ ପରି ଆକାଶ ସାରା ଖେଳିଯାଏ । ଏପରି ଦେଖିଲେ ଲେଖକର ଗତି ତ୍ରିଭୁଜାକର । ଶୀର୍ଷ ବିନ୍ଦୁରୁ ଉତ୍ପତ୍ତି ଲଭିଥିବା ଭାବ ପୁଣି ଭୂମି ସଂଲଗ୍ନ ଦୁଇ ବିନ୍ଦୁ ବାଟ ଦେଇ ଶୀର୍ଷ ବିନ୍ଦୁରେ ପହଂଚେ । ଏପରି ସଂଚାରଣଶୀଳ ହେବା ହେଉଛି ଲେଖକଙ୍କ ଭାବ-ଶକ୍ତିର ସାଧାରଣ ଧର୍ମ । ଏହି ସଂଚାରଣ ଧାରାକୁ ତ୍ରିଭୁଜର ତିନୋଟି ବିନ୍ଦୁ ଭିତରେ ସଂଯୁକ୍ତ କରି ଦେଲେ ଯେଉଁ ବୃତ୍ତିଟିର ଉତ୍ପତ୍ତି ହେଲା, ତାହା ହେଉଛି ସାରସ୍ୱତ ବୃତ୍ତ ଏବଂ ଲେଖକ ହେଉଛି ସେହି ସାରସ୍ୱତ ବୃତ୍ତଚାରୀ ସାଧକ । ଏହି ବୃତ୍ତ ଭିତରେ ଯାହା ରହିଲା ତାହା ହେଉଛି ଲେଖକର ସ୍ୱର୍ଗ ଓ ମର୍ତ୍ତ୍ୟ ।



---

(ସପ୍ତର୍ଷି-ତୃତୀୟବର୍ଷ ଦ୍ୱାଦଶ ସଂଖ୍ୟା-୭୪)

Digitized by srujanika@gmail.com

# ପ୍ରେମ : ଏକ ଚେତନା

ସବୁଜ ଓ ସୁନ୍ଦର ଏଇ ସଂସାରରେ ମୃତ୍ୟୁଠାରୁ ଅସୁନ୍ଦର ଓ ରମଣୀ ଠାରୁ ସୁନ୍ଦର କୌଣସି ବସ୍ତୁ ଥିବା ବିଶ୍ୱାସ କରି ହୁଏନା । ରମଣୀର ଅଭିଜ୍ଞତା ହିଁ ସବୁଠାରୁ ରମଣୀୟ । ତା'ର ଗତିରେ ଛନ୍ଦର ମଧୁସ୍ୱର । ରୂପର ମଧୁବନ ଓ ଆନନ୍ଦର ଉତ୍ସ ସେ (She was a phantom of delight) । ସେ ପୁଣି ପ୍ରେମର ଏକ ଅକ୍ଷୟ ନିର୍ଝର ଓ ଆଲୋକର ଅକୂପାର (A well of love, a spring of light– H. Coleridge) ।

ଜୀବନର ଯେତେ କିଛି ଚିନ୍ତା ଓ ଚେତନା, ଆନନ୍ଦ ଓ ଆସକ୍ତି; ପ୍ରେମ ତା'ର ଜନ୍ମ ବେଦୀ । ସକଳର ହେତୁ ।

All thoughts, all passions, all delights.
whatever stirs this mortal frame
All are but ministers of love.
And feed his sacred flame.–

S.T. coleridge "Love" । ମନେହୁଏ ପ୍ରଣୟରୁ ହିଁ ଜୀବନର ପ୍ରାରମ୍ଭ ଓ ପରିଣୟରେ ହିଁ ଜୀବନର ପ୍ରଶାନ୍ତି । ପ୍ରେମର ଅତଳ ଅଧିଷ୍ଠାନରେ ବିଶ୍ୱର ସକଳ ବିଦ୍ୱେଷ ଓ ବିଚ୍ଛିନ୍ନ ବସ୍ତୁସତ୍ତା, ମାତ୍ର ଟିକିଏ ହସ ଓ ନିର୍ଦ୍ଦୋଷ ଦୃଷ୍ଟିର ଆକର୍ଷଣରେ ହଜିଯାଇ ମାନବର ଜୀବନ-ପାତ୍ରକୁ ମଧୁପୂରିତ କରି ରଖିଥାଏ । ତାହାରି ଅନ୍ୱେଷଣରେ 'ଏମା' (ମ୍ୟାଡାମ ବୋଭାରୀର ନାୟିକା) ବହୁ ପୁରୁଷର ପରିଚର୍ଯ୍ୟାରେ ରମଣ-କ୍ଳାନ୍ତା ହୋଇ ଅବଶେଷରେ ବିଷପାନ କରି ମରଣରେ ରମଣୀୟ ହୋଇଛି ସିନା ମାତ୍ର ତା'ର ସେଇ ଗୋଟିଏ ମାତ୍ର ପ୍ରଶ୍ନର ଉତ୍ତର–ଜୀବନର ଚଲାପଥର ଶେଷ କେଉଁଠି ତାହା ହୁଏତ ଖୋଜି ପାଇନି । ବିଏଟ୍ରିଶ ପାଇଁ କବିର ଅନ୍ତରୀକ୍ଷ ତାରକିତ ହୋଇ ଉଠିଛି, ଚେତନା ସମୁଦ୍ର ସ୍ପନ୍ଦିତ ହୋଇ ଯାଇଛି । ମାଳିନୀ ପାଇଁ କେତେ ଉଦ୍‌ବେଗ,

Digitized by srujanika@gmail.com

କେତେ ଆତୁରତା ସେଇ କବିର । କାଳିଦାସର ଅଶ୍ରୁ, ଅଧିର କେତେ ଅଭିବ୍ୟକ୍ତି; କାହା ପାଇଁ ଏତେ ନିୟୋଜନ ! ନିଷ୍ଠାର ସାଧନା ! ସେଇ ପ୍ରଣୟ–ପ୍ରଣୟ ତରଣୀରେ ଅଭିଯାତ୍ରୀ ଏଇ ମାନବ ମାତ୍ର ଗୋଟିଏ ଉଲ୍ଲାସର ଧକ୍କାରେ ଜୀବନ-ନଦୀର ଆରପାରିରେ ଓହ୍ଲାଇ ଯିବ ପରା । ସେଥିପାଇଁ କେତେ ପ୍ରଯତ୍ନ; କେଡ଼େ ଚଞ୍ଚଳ ଓ ଗତିବାନ ସିଏ । ଏଇ ଗତି ଓ ବ୍ୟାପ୍ତି ମୂଳରେ ପ୍ରେମର ପ୍ରେରଣା ନିହିତ ।

## ପ୍ରେମ:ଅନ୍ୱେଷଣ ଓ ପୁନର୍ମିଳନ

ଏଇ ପ୍ରେମର ସଂଜ୍ଞା ଓ ସ୍ୱରୂପ ଖୁବ୍ ବ୍ୟାପକ । ପୂର୍ଣ୍ଣୀଭୂତ କୌଣସି ଜୀବନର ଅନ୍ତଃସ୍ଥଳରେ ଏଇ ପ୍ରେମ ପ୍ରବୃତ୍ତି କିମ୍ବା ପ୍ରଣୟ ପରିଣୟର ସ୍ୱ-ସତ୍ତା ବିଦ୍ୟମାନ । ଏକକ ମନୁଷ୍ୟ ତା' ଆଦିସତ୍ତା (Original self.)ର ଅର୍ଦ୍ଧାଂଶ ମାତ୍ର । ଅପରାଂଶ ପ୍ରାପ୍ତିରେ ସେ ସଂପୂର୍ଣ୍ଣ; ତାରି ଅନ୍ୱେଷଣ ହିଁ ତାହାର ଏକ ପ୍ରଧାନ କର୍ମ । ନିଜ ସତ୍ତାର ଏଇ ଅନୁପଲବ୍ଧ ଅର୍ଦ୍ଧାଂଶର ଅନ୍ୱେଷଣ ଏବଂ ତାହା ସହିତ ପୁନର୍ମିଳନ ହିଁ ପ୍ରେମ । ସେଇଠି ହିଁ ଜୀବନର ପ୍ରଶାନ୍ତି ଓ ପରିପୂର୍ଣ୍ଣତା ।

ପ୍ରେମ, ସୃଷ୍ଟିର ପ୍ରଣବ ଧ୍ୱନି । ମାନବର ସମସ୍ତ ସ୍ୱକ୍ରିୟା, ହେଉଛି ଏହି ପ୍ରେମର ପରିରତି । ଜୀବନର ମୌଳିକ ପ୍ରେରଣା ଓ କ୍ରିୟା ପ୍ରକ୍ରିୟାର ମୂଳ ସ୍ୱର କାମ । ସ୍ଥିତି କାମରହିତ ନୁହେଁ କିମ୍ବା ସୃଷ୍ଟି ମଧ୍ୟ ନିଷ୍କାମ ନୁହେଁ । ପ୍ରେମର ଅନ୍ତିମ ପରିଣତି ହେଉଛି କାମ । ଏଇ କାମରୁ ସୃଷ୍ଟିର ଉତ୍ପତ୍ତି । ମଣିଷ ତା'ମନର ପ୍ରେରଣା ଅନୁସାରେ କାମ ପ୍ରବୃତ୍ତିର ଅନୁସରଣ କରେ । ସେଇ ଅନୁସରଣରେ ତା' ଉଦ୍ଦେଶ୍ୟର ପରିପୂର୍ଣ୍ଣତା ଘଟେ । ତାହାର ଜୀବନ-ତରୀ ଲକ୍ଷ୍ୟସ୍ତମ୍ଭର ନିକଟବର୍ତ୍ତୀ ହୁଏ । ଏଇ ସ୍ୱାଭାବିକ ସତ୍ୟର ନିର୍ଦ୍ଦେଶ ବେଦରେ କଥିତ–

କାମ ସ୍ତଦଗ୍ରେ ସମ ବର୍ତ୍ତତାଧି ମନୋରେତଃ
ପ୍ରଥମଂ ଯଦାସୀତ୍
ସତୋ ବଧୂ ମରତି ନିରବିନ୍ଦନ୍ ହୃଦି ବ୍ରତିଷ୍ୟା
କବୟୋମନୀଷା

କେବଳ ବେଦ କାହିଁକି ମନୁଙ୍କ ମନନରେ ମଧ୍ୟ ଏହାର ପ୍ରତିଫଳନ ଦେଖାଯାଏ । ତାଙ୍କ ବିଚାରରେ ମାନବର କ୍ରିୟା କଳାପ କାମ ଚେଷ୍ଟାର ପରିଣତି ମାତ୍ର । ଏପରି କୌଣସି କ୍ରିୟା ନାହିଁ ଯାହା କାମ-ବିହୀନ ।

ଅକାମସ୍ୟ କ୍ରିୟା କାଚିଦ୍ ଦୃଶ୍ୟତେ ଦେହ କହି ଚିଦ୍‌ଯଦ୍ୟାଢି କୁରୁତେ କିଂଚିତ୍ ତତ୍ କାମସ୍ୟ ଚେଷ୍ଟିତମ ।

ମଣିଷର କର୍ମ-ଚେତନାର କାମ ସ୍ଥିତି ଯେପରି ବ୍ୟାପକ, ତା'ର ଆନନ୍ଦ ଅଭିଳାଷର କାମର ଭୂମିକା ସେହିପରି ଅମୂଲ୍ୟ । ଜୀବନର ପ୍ରେରଣାରେ କାମ

Digitized by srujanika@gmail.com

ପ୍ରବୃତ୍ତିର ସ୍ଥିତି ଭାରତୀୟ ଜୀବନ ଦର୍ଶନରେ ଏକ ପ୍ରଧାନ ପ୍ରତିପାଦ୍ୟ ଅବଲମ୍ବନ । ପ୍ରେମର ସ୍ୱୀକୃତି ଭାରତୀୟ ଚିନ୍ତନର ଏକ ଅବିଚ୍ଛିନ୍ନ ଧାରଣା– ଏ ସଂପର୍କରେ ଅନେକ ମନସ୍ତତ୍ତ୍ୱବିଦ୍‌ଙ୍କର ଅନୁଶୀଳନ ପ୍ରଣିଧାନ ଯୋଗ୍ୟ । ଡକ୍‌ଟର ଭଗବାନ ଦାସ ତାଙ୍କର 'The science of Emotion' ଗ୍ରନ୍ଥରେ ଉଲ୍ଲେଖ କରନ୍ତି–

Eros, Kam, in this large sense is truely the parent of all gods and the presiding deities of all sahitya and literature, which is the only recrod of his play.

## ଏରସ୍ ପ୍ରେମ ଓ ଜୀବନ ଦେବତା

ସୁତରାଂ ପ୍ରେମ ସର୍ବବ୍ୟାପକ, ଏରସ ସ୍ୱୟଂଭୂ । ଏହାର ପରିଚର୍ଯ୍ୟା କେବଳ ଭାରତୀୟ ଦର୍ଶନରେ କାହିଁକି ଗ୍ରୀକ ପୁରାଣରେ ମଧ ଖୁବ୍ ପ୍ରଶସ୍ତ ଭାବେ କରାଯାଇଛି । ଗ୍ରୀକ୍ ଦାର୍ଶନିକ ପ୍ଲେଟୋ ତାଙ୍କର ଡାଇଲଗ୍‌ର ସିଂପୋସିୟମ୍ ଅଧ୍ୟାୟରେ ଏଇ 'ଏରସ' ତତ୍ତ୍ୱ ସଂପର୍କରେ ବିସ୍ତୃତ ଆଲୋଚନା କରିଛନ୍ତି । ଏହି ସିଂପୋସିୟମ୍‌ରେ ଆଲୋଚିତ 'ଏରସତତ୍ତ୍ୱ'ର ପ୍ରଧାନ ପ୍ରବକ୍ତା ହେଉଛନ୍ତି ସକ୍ରେଟିସ୍ । କିନ୍ତୁ ସକ୍ରେଟିସଙ୍କ ପୂର୍ବରୁ ତରୁଣ କବି ଆଗାଥନ 'ଏରସ'କୁ ଜଣେ ସର୍ବଗୁଣସଂପନ୍ନ ସର୍ବକନିଷ୍ଠ, ସୁକୁମାର ଦୈବୀ ପୁରୁଷ ରୂପେ ଗ୍ରହଣ କରିଥିଲେ । କିନ୍ତୁ ସକ୍ରେଟିସ ସେଇ ମତର ବିରୋଧରେ ଏରସକୁ ଦେବତା ରୂପେ ଅସ୍ୱୀକାର କରି ତାଙ୍କୁ ମଣିଷ ଓ ଦେବତାର ଏକ ମଧ୍ୟବର୍ତ୍ତୀ ସତ୍ତା ରୂପେ ଗ୍ରହଣ କରିଛନ୍ତି । ଗ୍ରୀକ ଭାଷାରେ (Daimon) ନାମରେ ଅଭିହିତ କରାଯାଇଛି ।

ରବୀନ୍ଦ୍ରନାଥ ତାହାର ପ୍ରତିଶବ୍ଦ କରିଛନ୍ତି 'ଜୀବନ-ଦେବତା' । କିନ୍ତୁ ବିସ୍ମୟ ଏଇଠି ଏରସତତ୍ତ୍ୱର ପ୍ରତିଷ୍ଠାତା ସକ୍ରେଟିସଙ୍କର ପ୍ରେମ ସଂପର୍କରେ କୌଣସି ନିଜସ୍ୱ ଅନୁଭୂତି ନଥିଲା । ସେ, ପ୍ରେମ ସଂପର୍କୀୟ ସମସ୍ତ ଚିନ୍ତା ଓ ଚେତନା ଲାଭ କରିଥିଲେ ଜଣେ ନାରୀଙ୍କ ଠାରୁ, ଯିଏକି ତାଙ୍କର ଶିକ୍ଷୟିତ୍ରୀ ପ୍ରେମ ଶାସ୍ତ୍ରର ଜ୍ଞାନଦାତ୍ରୀ । ଏହାର ସ୍ୱୀକାରୋକ୍ତି ସକ୍ରେଟିସ ତାଙ୍କ ଲେଖାରେ ବାରମ୍ବାର କରିଥିବା ଜଣାଯାଏ । ସେ କହନ୍ତି–

There is a speech about love which I heard once from Diotima of Mantineia... And she, it was who tought me about love affairs.ଏଥିରୁ ସ୍ପଷ୍ଟ ପ୍ରତୀତ ହୁଏ ଯେ ପ୍ରେମ ତତ୍ତ୍ୱ ପ୍ରବକ୍ତା ଦାର୍ଶନିକ ସେକ୍ରେଟିସ ଜଣେ ନାରୀଠାରୁ ପ୍ରେମ ଶାସ୍ତ୍ରର ଜ୍ଞାନ ଅର୍ଜନ କରିଥିଲେ, ଯେଉଁ ନାରୀ ଜଣେ ସାଧାରଣ ନାରୀ ନୁହେଁ ବରଂ ଜଣେ ତପସ୍ୱିନୀ । ସୁତରାଂ ପ୍ରେମ ସଂପର୍କରେ ସକ୍ରେଟିସଙ୍କର ଧାରଣା ଡିୟୋତମାଙ୍କ ଅନୁଶୀଳନରୁ ପ୍ରସୂତ ।

Digitized by srujanika@gmail.com

ତାଙ୍କ ଯୁକ୍ତିରେ ଏରସ୍ ଶିବ ନୁହେଁ କି ସୁନ୍ଦର ବି ନୁହେଁ । ବରଂ ଏକାବେଳକେ ଶିବ-ସୁନ୍ଦର ପ୍ରତି ଆଶାୟୀ । ତେଣୁ ଏରସ୍ କୌଣସି ଦେବତା ନୁହେଁ କାରଣ ସବୁ ଦେବତା ଶିବ ଓ ସୁନ୍ଦରର ପ୍ରତୀକ । ତେବେ ଏରସ୍ ବା କାମଦେବ ଓ ମାନବର ମଧ୍ୟବର୍ତ୍ତୀ କୌଣସି ଶକ୍ତି । ମନୁଷ୍ୟ ଓ ଦେବତା ମଧ୍ୟରେ ଯୋଗସୂତ୍ର ସ୍ଥାପନ ହିଁ ଏରସ୍‌ର ଧର୍ମ ।

## ଏରସ୍‌ର ସୃଷ୍ଟି ପ୍ରସଂଗ

ଗ୍ରୀକ୍ ପୁରାଣରେ ଏରସର ସୃଷ୍ଟି ପ୍ରସଙ୍ଗରେ ଏକ କୌତୂହଳପୂର୍ଣ୍ଣ କାହାଣୀ ପ୍ରଚଳିତ । ତାହା ଡିୟୋଟିମାଙ୍କ ଦ୍ୱାରା କଥିତ । କଥିତ ଅଛି ଯେ ପୁରାଣର କୌଣସି ଏକ ସମୟରେ ପୋରସ (ପ୍ରାଚୁର୍ଯ୍ୟ) ଓ ପେନିୟା (ଦାରିଦ୍ର୍ୟ)– ଏଇ ଉଭୟଙ୍କ ମଧ୍ୟରେ ସଂଗମ ଫଳରେ ଯେଉଁ ସନ୍ତାନ ସଂଭୂତ ହୋଇଥିଲା; ତାହା ଏରସ ବା ପ୍ରେମ ନାମରେ ପରିଚିତ ହେଲା । ପ୍ରେମର ପିତାମାତା ଯେହେତୁ ପୋରସ ଓ ପେନିୟା, ତା' ମଧ୍ୟରେ ତେଣୁ ସେମାନଙ୍କର ସ୍ୱଭାବ ଧର୍ମ ପ୍ରତିଫଳିତ । ମାତାର ସ୍ୱଭାବରେ ସେ ଦରିଦ୍ର ଓ ଆଶ୍ରୟହୀନ । ଅଭାବ ତାହାର ଚିର ସହଚର । ପିତାର ସ୍ୱଭାବ ବଶତଃ ସେ ଶିବ-ସୁନ୍ଦରର ଉପାସକ, ନନ୍ଦନବନର ଅଭିସାରୀ ଓ ଅମିତ ବଳଶାଳୀ । ଏହି ଯୁକ୍ତିଟିର ସତ୍ୟତା କେତେଦୂର ଗଭୀର ତାହା ଉପଲବ୍ଧିର ସାମଗ୍ରୀ, ମାତ୍ର ଏହା ଖୁବ୍ ସ୍ପଷ୍ଟ ଯେ ମାନବ ଜୀବନ ଉପରେ ଏରସ'ର ପ୍ରଭାବ ହେଉଛି ସୁନ୍ଦରର ଉପାସନା । ସୁନ୍ଦରକୁ ଭଲ ପାଇବା ଅର୍ଥ ସୁନ୍ଦରକୁ ଲାଭ କରିବା ଏବଂ ସୁନ୍ଦର ମାଧ୍ୟମରେ ଶିବକୁ ଅନୁଭବ କରିବା । ପୁଣି ଶିବ ପ୍ରତି ଆସକ୍ତ ହେବା ଅର୍ଥ ସୁଖର ଅନୁଭୂତି ଲାଭ କରିବା । କାରଣ ଶିବ ଓ ସୁନ୍ଦରର ସମବାୟରେ ସୁଖାନୁଭୂତିର ବୀଜ ନିହିତ । ତେଣୁ କୁହାଯାଇଥାଏ– 'If is a breeding in the beautiful both of body and soul. ଅର୍ଥାତ୍ ସୁନ୍ଦର ଦେହ ଓ ସୁନ୍ଦର ଆତ୍ମା ଦ୍ୱାରା ସନ୍ତାନ ଜନନ ମଧ୍ୟ ଦେଇ ଅମରତ୍ୱ ପ୍ରାପ୍ତି ଏବଂ ତତ୍‌ଜନିତ ସୁଖଲାଭହିଁ ମାନବ-ଜୀବନକୁ ଏରସ୍ ବା ପ୍ରେମର ଦାନ । ଯାହାକି ଆମ ସଂସ୍କୃତିରେ 'ପୁତ୍ରାର୍ଥେ କ୍ରିୟତେ ଭାର୍ଯ୍ୟା' ରୂପରେ ଗୃହୀତ ।

ତେବେ ମାନବର ପ୍ରେମ-ଚେତନା ବ୍ୟକ୍ତିସୌନ୍ଦର୍ଯ୍ୟ ପ୍ରୀତିରେ ନିବିଷ୍ଟ ହେଲେ ବି ଏହା ପରମ ସୌନ୍ଦର୍ଯ୍ୟ ଅନ୍ୱେଷଣରେ ପ୍ରଧାବିତ । ଦେହ ଓ ସୌନ୍ଦର୍ଯ୍ୟ ମାଧ୍ୟମରେ ଚିର-ସୁନ୍ଦର ଆତ୍ମାର ସୌନ୍ଦର୍ଯ୍ୟ ଅନୁଶୀଳନ ଓ ତା'ର ଉପଲବ୍ଧି ହିଁ ପ୍ରେମ ପରିକ୍ରମାର ପରବର୍ତ୍ତୀ ସ୍ତର । ପ୍ରଥମେ ଦେହକେନ୍ଦ୍ରିକ, ପରେ ଦେହାତୀତ, ପ୍ରଥମେ ଶାନ୍ତ ପରେ ଅନନ୍ତ, ପ୍ରଥମେ ନୃତ ପରେ ଅନୃତ ଏହାହିଁ ବୋଧହୁଏ ପ୍ରାଚୀନ ପ୍ରାଚ୍ୟ ଓ ପ୍ରତୀଚ୍ୟ ପ୍ରେମ ଚେତନାର ମର୍ମ୍ମସ୍ୱର ।

Digitized by srujanika@gmail.com

# ଲୋକ ଜୀବନ ଓ ପ୍ରେମ ଚେତନା

ଏହା ସ୍ଥିର ନିଶ୍ଚିତ ଯେ ପ୍ରେମ ଏକ ସହଜାତ ଅନୁଭୂତି । କ୍ଷୟଂକର ନୁହେଁ ବରଂ ଶୁଭଙ୍କର । ସୃଷ୍ଟିଧର୍ମୀ ଓ ସୃଜନଶୀଳ । ଅନୁଶାସନର ଅବଗୁଣ୍ଠନରେ ଏହାର ବିଚ୍ୟୁତି– ବିମୁକ୍ତ ବାୟୁମଣ୍ଡଳରେ ଅବାରିତ ଏହାର ଗତି । ଯେଉଁଠି ସଂଯମର ଆଧିକ୍ୟ ସେଇଠି ସ୍ଖଳନର ମାତ୍ରା ବେଶୀ । ଏହା ଆଦୌ ଭିତ୍ତିହୀନ ନୁହେଁ । ଭାରତୀୟ ଲୋକ-ଜୀବନ ଓ ପ୍ରେମ ପରମ୍ପରାରେ ଏହାର ପ୍ରମାଣ ବିରଳ ନୁହେଁ ।

ପ୍ରକୃତିର ଲଳନା କେବେ କେଉଁଠି କୃତ୍ରିମତାର ଆବରଣ ଘେନି ନିଜର ତନୁମନକୁ ଆବୃତ୍ତ କରିବା ଜଣାଯାଏନା । ସେହିପରି ପ୍ରକୃତିର ସନ୍ତାନ କୌଣସି ପୁରୁଷ, ନାରୀର ଚପଳ ଆଳାପରେ ଆସକ୍ତି ପ୍ରକାଶ କରିଥିବା ବୋଧହୁଏନା କିମ୍ବା ପ୍ରେମ-ପ୍ରମତ୍ତ ହୋଇ ପ୍ରେମ କବିତା ରଚନା କରି ନିଜର କ୍ଷୁଧା ମେଣ୍ଟାଇଥିବା ବିଶ୍ୱାସ କରି ହୁଏନା । ବାସ୍ତବିକ ସେ ସବୁର ଅପ୍ରାକୃତିକ ଅଭ୍ୟାସରେ ସେମାନେନିଜକୁ ମଦମତ୍ତ କରି ନାହାଁନ୍ତି କିମ୍ବା ଜୀବନର ସ୍ୱାଭାବିକ ଗତିସ୍ରୋତରେ ପ୍ରତିବନ୍ଧକ ତିଆରି କରି ନାହାନ୍ତି । ତୁଚ୍ଛାଟାରେ ସତୀତ୍ୱ ସଂଯମ ବୋଲିବା ଆଚରଣଗୁଡ଼ିକୁ ଚିରକାଳ ଅତି ଯତ୍ନରେ ପାଳନ କରି ଶେଷରେ ହୋମକୁଣ୍ଡରେ ବିସର୍ଜନ ଦେଇ ନାହାଁନ୍ତି ।

ସମୟ ଆସିଛି, ଅବସ୍ଥା ବଦଳିଛି, କ୍ରମେ କ୍ରମେ କୃତ୍ରିମତା ପ୍ରକାଶ ପାଇଛି । ଆବରଣ ଦେଇ ଆମେ ଯେତେ, ନିଜକୁ ଲୁଚାଇବାକୁ ଚେଷ୍ଟା କରୁଛୁଁ ତାହା ସେତେ ପ୍ରକାଶ ଆଲୋକ ଦେଖୁଛି । ସଂଯମ ଓ ଅବରୋଧ ନାଁରେ ସମାଜ ନାରୀ ପୁରୁଷର ସଂପର୍କକୁ ଯେତେ ବାନ୍ଧି ରଖିବାକୁ ଚେଷ୍ଟା କରୁଛି; ଫଳରେ ସେ ସେତେ ଅପଦସ୍ତ ହେଉଛି । ଏ ସଂପର୍କରେ କବି ଶ୍ରୀ କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ 'ନେତୃତ୍ୱ ଓ ନେତୃତ୍ୱ' ଗ୍ରନ୍ଥରୁ ଗୋଟିଏ ଉକ୍ତି ଉଦ୍ଧାର କରାଯାଇପାରେ । ସେ କହନ୍ତି– 'ଭାରତବର୍ଷରେ ଯେତେବେଳେ ସଂଯମର ଚର୍ଚ୍ଚା ବେଶୀ ହୋଇ ପଡ଼ିଛି, ସେତେବେଳେ ନିରୁପାୟ ହୋଇ ବେଶ୍ୟାର ଆଶ୍ରୟ ନେବାକୁ ହୋଇଛି । ସ୍ମୃତି ସଂହିତାର କଠୋର ବନ୍ଧନ ଭିତରେ ଭାରତୀୟ ପ୍ରେମ ଯେ ଅସ୍ୱାଭାବିକ ଗତିରେ ଚାଳିତ ହୋଇଛି; ଏଥିରେ ବିଶ୍ୱାସ କରିବାକୁ ପ୍ରମାଣର ଅଭାବ ନାହିଁ । ପ୍ରକୃତରେ ଏ ଦେଶର ପ୍ରେମିକା ହୋଇଛନ୍ତି ବେଶ୍ୟା, ନହେଲେ ବିଧବା କିମ୍ବା ଦେବଦେବୀଙ୍କର ବାହାନା କରି ଏକାବେଳକେ ଷୋଳହଜାର ସଧବା ।'' ଭାରତୀୟ ସଂଯମ ସାଧନାରେ ଯେତିକି ନିଷ୍ଠାବାନ, ପ୍ରେମ ଅଭିସାରରେ ସେତିକି ସ୍ୱାଧୀନ । ପ୍ରେମର ଅଭିନୟ ପାଇଁ ଭାରତୀୟ କବି ପ୍ରହର ପ୍ରହର ବ୍ୟାପି ବେଶ୍ୟାପ୍ରୀତିର ଉତ୍କର୍ଷ କଳ୍ପନା କରିଛି । ଉନ୍ମତ୍ତ ଚାରୁଦତ୍ତ, ବସନ୍ତସେନାର ଭୁଜତଳେ ଆତ୍ମଗୋପନ କରି ଶାନ୍ତି ଲଭିଛି । ଜାରଜ କନ୍ୟା ତପୋବନର ପରିବେଷ୍ଟନୀ ଭିତରେ ସୁକୁମାରୀ ପ୍ରେମ କଲ୍ୟାଣୀ ରୂପେ ଅଭିଷିକ୍ତ

Digitized by srujanika@gmail.com

ହୋଇଛି । ବିରହିଣୀ ରକ୍ଷିବଧୂ କେଉଁ ପାଷାଣୀ, ପ୍ରିୟ ଅଭିଶାପେ ଜର୍ଜ୍ଜରିତା ହେଲେ ବି ସତୀକନ୍ୟା ରୂପେ ଅଭିନନ୍ଦିତା । ହୁଏତ ବର୍ଜ୍ଜନୀୟା ତଥାପି ପୂଜନୀୟା । ପରପୁରୁଷ ଅପହୃତା ଗୁରୁବଧୂ ଆଜି ସୁଦ୍ଧା ପ୍ରାତଃ ସ୍ମରଣୀୟା । ବ୍ୟଭିଚାରୀ ବାରନାରୀ ହେଲେ ବି ସେ 'ଚିନ୍ତାମଣି', ଧର୍ମାନୁଚିନ୍ତା ଜାଗରଣରେ ସେ ବିଲ୍ୱମଙ୍ଗଳର ସହଯାତ୍ରୀଣୀ । ସିଏ ପୁଣି କିଏ ଉତ୍‌ଫୁଲ୍ଲ ଯୌବନା ଅମର କନ୍ୟା ଯାହା ପାଇଁ ଆଜି ବିଦେହ ନଗରୀ ଶୂନ୍ୟ । ସରଗର ସିଏ ଅମର କନ୍ୟା, ସିଏ ନାରୀ, ସିଏ ଦେବୀ, କିନ୍ତୁ ପୁଣ୍ୟ ମରତେ ପତିତା ସାଜିଛି ଘୃଣ୍ୟ ଜୀବନରେ ବି । ସର୍ପିଣୀସମ ସୃଷ୍ଟିର ତଳେ ସୃଜିଛି ବିଷମ ବିଷ, ସେ ବିଷର ତାପେ ଜାଳିଛି ନିଜକୁ ଜାଳିଛି ସମଗ୍ର ଦେଶ ଏବଂ ପାପ ଗର୍ଭରେ ଥାଇ ବି ଜୀବନେ ପାଇଛି, ପୁଣ୍ୟ ପରମ ନିର୍ଦ୍ଦେଶ । ସିଏ ପିଂଗଳା, ରୂପ ମଂଜୁଳା କିନ୍ତୁ ଶୁଭ ମଙ୍ଗଳା ।(ଗଡ଼ନାୟକ)

ଏହିପରି ଦୃଷ୍ଟାନ୍ତର ବିପୁଳତାରୁ ଭାରତୀୟ ସାଧନାରେ ପରକୀୟା ପ୍ରେମର ଇତିକଥା ସହଜରେ ଅନୁମେୟ । ବେଶ୍ୟ ପ୍ରୀତି, କିମ୍ବା ପରକୀୟା ପ୍ରୀତିରେ ଯେଉଁଠି ବିତୃଷ୍ଣା ଦେଖା ଦେଇଛି, ସେଠାରେ ପ୍ରେମପ୍ରବୃତ୍ତି ଭିନ୍ନ ପନ୍ଥା ଅନୁସରଣ ପାଇଛି ।

ଏଇ ସହଜାତ ପ୍ରବୃତ୍ତିଟିର ସନ୍ତୋଷ ବିଧାନ ପାଇଁ ଅନେକ ଦୈବୀ ପ୍ରେମର ଆଶ୍ରୟ ନେଇଛନ୍ତି । ଏହା ଯେ କେବଳ ଭାରତୀୟ ପ୍ରେମ ଦରବାରର ସତ୍ୟ କାହାଣୀ ତାହା ନୁହେଁ ପ୍ରତୀଚ୍ୟ ଜଗତରେ ଏତାଦୃଶ୍ୟ ଦୃଷ୍ଟାନ୍ତ ବିରଳ ନୁହେଁ ।

## ପ୍ରେମିକ ସନ୍ନ୍ୟାସୀ

ବହୁ ଯୋଗୀ ସନ୍ନାସୀ ବାସର ରାତ୍ରୀରୁ ସ୍ତ୍ରୀଙ୍କୁ ତ୍ୟାଗକରି ପଳାୟନ କରିଥିବା ଘଟଣା ଜଣାଅଛି । ରାମକୃଷ୍ଣ, ଚୈତନ୍ୟ, ବୁଦ୍ଧଦେବ, ସେଣ୍ଟ ଆବ୍ରାହମ, ଇତ୍ୟାଦିଙ୍କର ଜୀବନୀ ଏକଥା ସୂଚନା ଦେଇଥାଏ । ପୁଣି ଅନେକ ସନ୍ଥ ସାଧକ ସାଧନା କାଳରେ ବିଶ୍ୱାମିତ୍ର ତୁଲ୍ୟ ବହୁ ଜାରଜ ସନ୍ତାନଙ୍କର ଜନକ ହୋଇଥିବାର ପ୍ରମାଣ ମଧ ମିଳିଥାଏ । ଅନେକ ମଠ-ମାଲିକ ଏକାଧିକ ରକ୍ଷିତା ସ୍ତ୍ରୀଙ୍କର ଭର୍ତ୍ତା ହୋଇ ମଠ-ଜୀବନ ଯାପନ କରୁଥିବାର ବିବରଣୀ ମିଳୁଛି । ସେଣ୍ଟ ଅଗଷ୍ଟିନ ସତର ଗୋଟି ଜାରଜ ସନ୍ତାନଙ୍କର ଜନକ, ସେଣ୍ଟ ପଲାଗୋ ସତୁରି ଗୋଟି ରକ୍ଷିତା ନାରୀଙ୍କର ସ୍ୱାମୀ । ସନ୍ନ୍ୟାସ ଓ ସଂସାର– ଉଭୟ ଅର୍ଥରେ ସେ ସ୍ୱାମୀ । ଅନେକ ବିଶପ ନିଜ ନିଜର କନ୍ୟା ଭଗ୍ନୀମାନଙ୍କ ସହ ଯୌନସଂପର୍କ ରଖିବା ପାଇଁ ଏକ ସହଜ ପନ୍ଥା ସଦୃଶ ବହୁ 'ନନେରୀ'ର ପ୍ରତିଷ୍ଠା କରିଛନ୍ତି । ଏବେ ଯେଉଁ କେରଳୀ କନ୍ୟାମାନଙ୍କୁ ବିକ୍ରୀ କରାଯାଇଛି ତାହାର ଅନ୍ତରାଳରେ 'ନନେରୀ' ସୃଷ୍ଟିର ଉଦ୍ଦେଶ୍ୟ ନାହିଁକି ? ଯଦି କେହି ପ୍ରତ୍ନତାତ୍ତ୍ୱିକ ଭବିଷ୍ୟତରେ ପ୍ରାଚୀନ 'ନନେରୀ' ମାନଙ୍କ ଉପରେ ଗବେଷଣା

Digitized by srujanika@gmail.com

କରେ ତାହାହେଲେ ହୁଏତ ବହୁ ଶିଶୁକଙ୍କାଳର ସଂଧାନ ସେ ହୁଏତ ପାଇ ପାରିବ । ଆମ ସମାଜ ଉପରେ ଏହାର ପ୍ରଭାବ କଣ ? ଯୌନଜୀବନର ପରିଣାମ କିପରି ? ଏହାର କାରଣ ହୁଏତ ମନସ୍ତତ୍ତ୍ୱବିଦ୍ କିମ୍ବା ନୃତତ୍ତ୍ୱବିଦ୍‌ମାନେ ନିର୍ଣ୍ଣୟ କରିବେ । ଜଣେ ରସ-ପ୍ରାଣ ବ୍ୟକ୍ତି ହିସାବରେ, ଜଣେ ଆବେଗଚାଳିତ ଲିପିକାର ହିସାବରେ ଅନୁଭବ ହେଉଛି—ପ୍ରେମ ଯଥାର୍ଥରେ ଏକ ଚେତନା-ଯାହାର ଚେର ଖୁବ୍ ତଳେ । ବ୍ୟକ୍ତି ମାତ୍ରକେ କେହି ପ୍ରେମ ପ୍ରଭାବରୁ ମୁକ୍ତ ନୁହଁନ୍ତି । କବି, ଦାର୍ଶନିକ, ଐତିହାସିକ, ବୁଦ୍ଧିଜୀବୀ ପ୍ରତ୍ୟେକ ଜୀବନର ପ୍ରେମମୟ ସତ୍ତା ଅନୁଭବୀ ।

କିନ୍ତୁ ପ୍ରତ୍ୟେକଙ୍କ ନିକଟରେ ପ୍ରେମ ଧାରଣା ଏକ ନୁହେଁ । ରୂପର ବିଭିନ୍ନତାରେ ପ୍ରେମଚେତନା କ୍ଷେତ୍ର ବରଣ କରେ । ବ୍ୟକ୍ତି ଚେତନାର ଚାରଣ ଭୂମିରେ ପ୍ରେମ ସ୍ୱୟଂରୂପ ଧାରଣ କରିଥାଏ । ବିଶ୍ୱ ଇତିହାସରେ ବହୁ ପ୍ରେମିକ, ସେମାନଙ୍କ ପ୍ରେମ ମଧ୍ୟ ବିଚିତ୍ର । କେତେବେଳେ କିଏ ଦାଂପତ୍ୟ ପ୍ରେମର ସମ୍ମୋହିନୀ ଶକ୍ତି ବଳରେ ଆବଦ୍ଧ ଥାଇ ସୁଦ୍ଧା ସ୍ୱପ୍ନ ସଙ୍ଗିନୀର ଆଶ୍ରୟ ନିଏ । କିଏ ପୁଣି କ୍ଲିଓପାଟ୍ରାର ସ୍ୱୈରାଚାରକୁ ପସନ୍ଦ କରେ, ବହୁ ସାନ୍ନିଧ୍ୟ ଲାଭରେ ସନ୍ତୋଷ ପାଏ । ଜନନୀ ଅପେକ୍ଷା ଚିର ପ୍ରଣୟିନୀ ହେବାରେ ଭାରି ଆନନ୍ଦ ଅନୁଭବ କରୁଥାଏ । ତେଣୁ ରୁଚି ଭେଦରେ ପ୍ରଣୟ କେତେବେଳେ ପାର୍ଥିବ ଇନ୍ଦ୍ରିୟାନୁରକ୍ତ ହୋଇ ବାସନା ବିଳାସୀ ହୁଏତ କେତେବେଳେ ଅଶରୀରୀ ଓ ଅତିନ୍ଦ୍ରିୟ ସତ୍ତା ଧାରଣ କରି ତାପସ ସୁରଭି ସଞ୍ଚାର କରିଥାଏ ।

## ପ୍ରଣୟତାପସ କବି ଓ କବି-ପ୍ରିୟା

କବି ପୁରୁଷ, ବ୍ୟକ୍ତିତ୍ୱର ଅମଳିନ ଦୀପ୍ତି ଦାନରେ ପ୍ରଣୟର ପ୍ରଶାନ୍ତ ରୂପଶ୍ରୀକୁ ଅମର ଅଭିବ୍ୟକ୍ତି ପ୍ରଦାନ କରିଥାଏ । ଶତାବ୍ଦୀର ଇତିହାସରେ ଏହା ସୁରକ୍ଷିତ । ଦୃଷ୍ଟି ଫେରାଇଲେ କାହାଣୀ ମିଳେ । ଶତାବ୍ଦୀର ସେଇ ସୁପ୍ତ ପାରାବାରକୁ ସନ୍ତରଣ କରି ପାରିଲେ ପାଠକର ସ୍ମୃତି-ତଳପରେ ସେଇ ପ୍ରେମ-କାହାଣୀ ନିଶ୍ଚୟ ଚେଇଁ ଉଠିବ । ଏବଂ ପ୍ରେମ-ଜାହ୍ନବୀରେ ଅଭିଷେକ ରଚନା କରିଥିବା ବିଶ୍ୱର ବିଶ୍ରୁତ କବି କୂଳକୁ ସଂଗ୍ରାହକ ଆବିଷ୍କାର କରି ପାରିବ ।

ଇତିହାସର ଫିସିଲ୍ ଭିତରେ ବହୁ ପ୍ରଣୟ କାହାଣୀ ସଂଜୀବିତ । କୀସନ-ଫେନି, ୱାର୍ଡସୱାର୍ଥ, ସ୍କଟ୍ ମାରଗାରେଟ, ଡିକେନ୍‌ସ-ମେରିଆ, ଦାନ୍ତେ-ବିଯେତ୍ରିଶ, କାଳିଦାସ-ମାଳିନୀ, ଅରବିନ୍ଦ-ମୃଣାଳିନୀ, ରବୀନ୍ଦ୍ରନାଥ-କାଦମ୍ବରୀ ଇତ୍ୟାଦି କବି ଓ କବି ମାନସୀଙ୍କର ପ୍ରଣୟ ସ୍ମୃତି ଏବେବି ଜୀବିତ ।

ଏମାନଙ୍କ ଭିତରୁ କେତେକ ବ୍ୟର୍ଥତାରେ ବେଦନାବିଦ୍ଧ, ତଥାପି ପ୍ରଫୁଲ୍ଲ । ଭୋଗ ବିଳାସ ଅପେକ୍ଷା ଭାବନାର ଅନୁଭୂତିରେ ସତେ ଯେପରି ସେମାନେ ବ୍ୟର୍ଥତାର

Digitized by srujanika@gmail.com

ନିଷ୍କରୁଣ ଶୋଚନା କିମ୍ବା ବିଶ୍ୱାସଘାତକତାର ନିର୍ଦ୍ଦୟ ନିଃସରଣକୁ ଭୁଲି ଯାଇଛନ୍ତି । ଏଇ ଦୁଃଖ ସେମାନଙ୍କୁ ନିର୍ବାକ, ନିର୍ବେଦ ବା ସ୍ଥାଣୁ କରି ପାରି ନାହିଁ । ନ ପାଇବାର ନିଃସ୍ୱ ଚେତନା ତାଙ୍କୁ ହୁଏତ ସ୍ୱପ୍ନର ଅସୀମ ଉନ୍ମାଦନାରେ ପାଗଳ କରି ସୃଷ୍ଟି କ୍ରିୟାର ଆଲୋକକୁ ଘେନି ଯାଇଚି । ତେଣୁ ତାଙ୍କ ମନର ଅତୃପ୍ତି କାବ୍ୟସୃଷ୍ଟିର ପରିଧିଭିତରେ ତୃପ୍ତିର ସ୍ୱାକ୍ଷର ଆଙ୍କିଛି । ବନ୍ଧ୍ୟା ପ୍ରଣୟ-ଚେତନା ଫଳବତୀ ହୋଇଛି କବିତାର ଜରାୟୁରେ । କବି ଚିରବାଞ୍ଛିତା ପ୍ରଣୟିନୀର ସାନ୍ନିଧ୍ୟଲାଭରେ ବିଫଳ ହୋଇ ହୁଏତ କେତେବେଳେ ଅଶରୀରୀ କାବ୍ୟ-ନାୟିକାର ସବୁଜ ସ୍ମୃତିରେ ସୃଷ୍ଟି ଉନ୍ମାଦ ହୋଇଛି । କେତେବେଳେ ପୁଣି ପ୍ରଣୟିନୀର ଉଦ୍ଭିନ୍ନ ଯୌବନର ଆସ୍ୱାଦନରେ ଆହ୍ଲାଦିତ ହୋଇ ଆସ୍ୱସ୍ତି ଅନୁଭବ କରିଛି । ବିବାହିତା ଅବିବାହିତା ଭେଦରେ କବିର ମାନସ ମନ୍ଦିରରେ ପ୍ରଣୟିନୀର ସ୍ଥିତି ଇତିହାସରେ ଏକ ଚିରନ୍ତନ ପୃଷ୍ଠା ଉନ୍‌ମୋଚନ କରିଛି ।

ସତେ କଣ କବି ଓ କବି ମାନସୀ ଗୋଟିଏ ଅଭିନ୍ନ ଏକକ ? ଯଦି ନୁହେଁ; ବିୟେତ୍ରିଶ କେଉଁଠି ? ଅନ୍ୟର କୁଳବଧୂ ହୋଇବି, ବିୟେତ୍ରିଶ ଦାନ୍ତେଙ୍କ ମାନସୀ ଓ ପ୍ରଣୟିନୀ । ତାଙ୍କ ସହ କବିଙ୍କର ପ୍ରଣୟର ପୂର୍ଣ୍ଣତା ଆସି ନାହିଁ । ବିୟେତ୍ରିଶ ସିମନ୍ ଦି ବାଦିଙ୍କର ପତ୍ନୀ ହୋଇଛନ୍ତି ଓ ପଚିଶ ବର୍ଷରେ ତାଙ୍କର ମୃତ୍ୟୁ ଘଟିଛି । ଦାନ୍ତେ ଡୋନାତିଙ୍କୁ ବିବାହ କରିଛନ୍ତି । ତଥାପି ବିୟେତ୍ରିଶଙ୍କର ଅମ୍ଳାନ ସ୍ମୃତି ଭୁଲି ପାରି ନାହାଁନ୍ତି କବି । ଏକ ନିରୁପମ ପ୍ରତିମାର ବିଲୟ ଘଟିଛି ସତ କିନ୍ତୁ ତାଙ୍କ ସ୍ମୃତିର ବିଲୟ ଘଟିନାହିଁ ।

ବିୟେତ୍ରିଶଙ୍କ ପ୍ରତି କବି ଚିତ୍ତର ଆର୍କଷଣ ଅକ୍ଷତ ଓ ଅତୁଟ ରହିଛି ଏବଂ ସେହି ପ୍ରଣୟାନୁରାଗର ସ୍ପନ୍ଦନ ଓ ଆଗ୍ନେୟତା ମଧ୍ୟରୁ ଜନ୍ମ ନେଇଛି Vita Nouva ଏବଂ Divine comedy. । ବିୟେତ୍ରିଶ ହୋଇଛନ୍ତି କବି ସୃଷ୍ଟିର ଉତ୍ସ । ଦାନ୍ତେଙ୍କପରି ଏକାଧିକ ସାରସ୍ୱତ ସାଧକ ପ୍ରେମ-ଚେତନାର ଗଭୀର ଆତ୍ମୀୟ ଅନୁଭୂତିରେ ସୃଷ୍ଟିପ୍ରାଣ ହୋଇପଡ଼ିଛନ୍ତି । କବିର ପ୍ରେମ-ଚେତନା ସହିତ ତା'ର ସୌନ୍ଦର୍ଯ୍ୟ ଚେତନା, ଜୀବନ-ଚେତନା ଇତ୍ୟାଦିର ଏକ ନିଗୂଢ଼ ସଂପର୍କ ରହିଛି । କବି ଯେ ପ୍ରଣୟର ଉପାସକ, ତାହା ତା'ର ବ୍ୟକ୍ତିତ୍ୱର ବିଶ୍ଳେଷଣରୁ ହିଁ ବୁଝା ପଡ଼ିଥାଏ । ପ୍ରତ୍ୟେକ କବିଙ୍କର ମାନସୀଙ୍କର ପରିଚୟ ସେମାନଙ୍କର ସାହିତ୍ୟ ଓ ଆତ୍ମବାଣୀ ହିଁ ପ୍ରଦାନ କରିଥାଏ । ସେ ସବୁର ଆଲୋଚନା ପାଇଁ ଆବଶ୍ୟକୀୟ ଉପାଦାନ ଅଛି; ପ୍ରବନ୍ଧର କଳେବର ଦୃଷ୍ଟିରୁ ବର୍ତ୍ତମାନ ତାହା ନ କରି ପରବର୍ତ୍ତୀ ସୁଯୋଗରେ ପର୍ଯ୍ୟାୟକ୍ରମେ ପ୍ରଣୟ ତାପସ କବି ଓ କବିପ୍ରିୟାଙ୍କର ପରିଚୟ ପ୍ରକ୍ଷାପିତ ହେବ ।



(ନବରବି-ପ୍ରଥମପର୍ବ ପଞ୍ଚମସଂଖ୍ୟା-୭୦)

Digitized by srujanika@gmail.com

# ସାହିତ୍ୟ ଓ ଆମ ସାହିତ୍ୟ

ମଣିଷକୁ ବୁଝିବା ଏବଂ ତାର ଜିଜ୍ଞାସାକୁ ସୁସ୍ଥ ଓ ପରିପୁଷ୍ଟ କରିବାର କଳାତ୍ମକ ବିନ୍ୟାସ ହେଉଛି ସାହିତ୍ୟ । ଏ ଦୃଷ୍ଟିରୁ ବିଚାରିଲେ ସାହିତ୍ୟ ହେବ ମାନବ-ଜଗତର ବିଶ୍ୱସ୍ତ ଉଚ୍ଚାରଣ ଏବଂ ମାନବ ମନର ଅକ୍ଷରଲିପି । ଆମେ ସାହିତ୍ୟକୁ ପ୍ରେମ କରୁଁ, କାରଣ ସେ ଜୀବନର କଥା କୁହେ, ଜୀବନ ସହିତ ଆଳାପ କରେ । ଜଣେ ମଣିଷ ଏଇ ସାହିତ୍ୟ ଜରିଆରେ ସକଳ ମଣିଷକୁ ବୁଝିପାରେ, ଚିହ୍ନା ଅଚିହ୍ନା ଭେଦ ଡେଇଁ ସେ ଅପର ମଣିଷଟିକୁ ଆପଣାର କରିପାରେ। ମନକୁ ମନ, ବା ଭାବକୁ ଭାବ ମିଳିଗଲେ ସହୃଦୟତାର ବାତାବରଣ ତିଆରି ହୋଇଯାଏ । ବିଶ୍ୱବାସୀ ସମସ୍ତେ ନିକଟତର ହେଇଯାଆନ୍ତି– ଯିଏ ଯେଉଁଠି ଥାଉନା କାହିଁକି, –ମଣିଷ ବୁଝେ ମଣିଷକୁ; ସାହିତ୍ୟ ହୁଏ ଯୋଗସୂତ୍ରର ମାଧମ । ଏତେବେଳେ ବିଶ୍ୱ-ବିବେକର ଭୂମିକାରେ ଆମେ ସାହିତ୍ୟକୁ ଚିହ୍ନୁଁ ।

ବିଶ୍ୱର ବିବେକ ବୋଲି ମର୍ଯ୍ୟାଦା ପାଉଥିବା ସାହିତ୍ୟ, ଆପଣା ମାଟିର ବାସ୍ତବ ବେଦୀ ଉପରେ ପାଦ ରଖି, ଆପଣାର ଆତ୍ମାକୁ ଆବିଷ୍କାର କରି, ଉତ୍ତରଣର ଶିଡ଼ିରେ ଅଗ୍ରଗାମୀ ହେବାକୁ ଉଦ୍ୟମ କରେ । ଆପଣା ମାଟିକୁ ଛାଡ଼େ ନାହିଁ, ଅନ୍ୟ ମାଟି ଲୋଭରେ । ଚାରା ଗଛଟିଏ ଭିନ୍ନ ମାଟିରେ ରୋପିତ ହେବା ଲାଗି ଅଣାଗଲା ବେଳେ ତା' ମୂଳରେ ସିଏ ଯେମିତି ନିଜ ଜନ୍ମ ମାଟିରୁ ମୁଠାଏ ହେଉ ପଛେ ସାଥିରେ ଘେନି ଆସିଥାଏ । ନଚେତ୍ ପରିଚିତ ମାଟିର ସ୍ପର୍ଶ ବିନା ଅପରିଚିତ ମାଟିର ଗନ୍ଧରେ ଉଧେଇବା ସହଜ ବା ସମ୍ଭବ ହୁଏ ନାହିଁ; ସେମିତି ହେଉଛି ସାହିତ୍ୟର କଥା । ସାହିତ୍ୟ, ଯେଉଁ ଦେଶ ବା ଜାତି କିମ୍ବା ବିଶ୍ୱର ହେଉ– ଯେଉଁଠୁ ଏହାର ଉତ୍ପତ୍ତି; ସେଇ ଭୂଇଁର ଦର୍ଶନ ଓ ଆତ୍ମା ଏଥିରେ ପ୍ରକାଶ୍ୟ ବା ପ୍ରଚ୍ଛନ୍ନ ଭାବେ ରହିବା ବାଞ୍ଛନୀୟ । ଯଦି ନଥାଏ, ତେବେ ତାହା ମଣିଷ ମନର ପ୍ରତିବିମ୍ବ ହୋଇପାରିବ

Digitized by srujanika@gmail.com

ନାହିଁ ଅଥବା ମଣିଷକୁ ବୁଝିବା ଓ ବୁଝେଇବାର ଶକ୍ତି ଯୋଗାଇ ପାରିବ ନାହିଁ । ସାହିତ୍ୟ ସଂପର୍କରେ ଏହାହିଁ ହେଉଛି ମୋର ସାଧାରଣ ବିଶ୍ୱାସ । ଏଇ ବିଶ୍ୱାସକୁ ସମ୍ବଳ କରି ମୁଁ ଓଡ଼ିଆ ସାହିତ୍ୟକୁ କଳୁଛି; ମୋ ଦୃଷ୍ଟି ଏହାକୁ କେମିତି ଘେନିଚି ସେଇ କଥା କହୁଛି ।

ଏକ ସୂକ୍ଷ୍ମ ବିଚାର ମାଧ୍ୟମରେ ଅନୁଧ୍ୟାନ କଲେ ଜଣାଯାଏ, ଆମ ମାଟିର ମହକୁମାରେ ଇନ୍ଦ୍ରଦ୍ୟୁମ୍ନ-ପରଂପରା ଏକ ବଳିଷ୍ଠ ଆସନ ଅଧିକାର କରିଛି । କୌଣସି କୀର୍ତ୍ତିରେ ଆତ୍ମଗର୍ବ ଅନୁଭବ କରିବା କିମ୍ୱା ତାହାକୁ ଆପଣା ଗୌରବର ପ୍ରତିପାଦକ ରୂପେ ଦେଖାଇ ହେବା ଆମ ମାଟିର ନିଜସ୍ୱ ଅଭିରୁଚି ନୁହେଁ । ଅନ୍ୟ କଥାରେ କହିଲେ, ଆତ୍ମପ୍ରଚାରଧର୍ମୀତା ଉକ୍ରଳୀୟ ଚେତନାର ସ୍ୱଧର୍ମ ନୁହେଁ । ତେଣୁ ବୋଧହୁଏ ଇନ୍ଦ୍ରଦ୍ୟୁମ୍ନ, ଜଗନ୍ନାଥଙ୍କୁ ଏକମାତ୍ର ବର ମାଗିନେଲେ- ନିଜ କୀର୍ତ୍ତିର ଗର୍ବରେ ଗର୍ବୀ ହେବାକୁ ତାଙ୍କ ବଂଶରେ କେହି ନ ରହୁ ।

ତୁମ୍ଭେ ଯେବେ ବରଦେବ ମାଗୁଅଛି ମୁହିଁ,
ମୋହ ବଂଶରେ କେହି ନଥିବେ ଗୋସାଇଁ ।
ଠାକୁରେ ବୋଇଲେ ଏହା ମାଗୁ କାହିଁ ପାଇଁ
ତୋତେ ଘେନି ଯୁଗରାଜ୍ୟ କରୁଥିବି ମୁହିଁ ।
ଇନ୍ଦ୍ରଦ୍ୟୁମ୍ନ ବୋଲେ ମୋର ତେଣେ କାର୍ଯ୍ୟ ନାହିଁ
ସବୁଦିନେ କୀରତି ମୋହର ଥିବ ରହି ।
ପୁତ୍ରନାତି ବୋଲିବେ ଯେ ଦେଉଳ ଆମ୍ଭର
ଆମ୍ଭର ବୋଇଲେ ଧର୍ମ ଯିବ ଯେ ମୋହର । (କୃଷ୍ଣ ଦାସ- ଦେଉଳତୋଳା)

କିମ୍ବଦନ୍ତୀରେ ଆମେ ଶୁଣୁଛୁଁ- ଇନ୍ଦ୍ରଦ୍ୟୁମ୍ନଙ୍କ ବଂଶ ବୁଡ଼ିଗଲା, ସେଥିପାଇଁ ଜଗନ୍ନାଥ ନିଜେ ଦୀପାବଳୀ ଉତ୍ସବ ଅବସରରେ ଇନ୍ଦ୍ରଦ୍ୟୁମ୍ନଙ୍କୁ ଶ୍ରାଦ୍ଧ ଦେବାର ଚଳଣି ଶ୍ରୀମନ୍ଦିରରେ ଏବେସୁଦ୍ଧା ପ୍ରଚଳିତ । ଏହି ଚଳଣିର ଅନ୍ତରାଳରେ ଯେଉଁ ଆକୁଳ ସଂବେଦନ ନିହିତ ତା'ର ଅନ୍ୟ ଏକ ଉଚ୍ଚାରଣ ହେଉଛି, "ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ ।"

ଏହି ଦୁଇଟି ଆଭିମୁଖ୍ୟର ସ୍ୱରୂପ ବିଚାର କଲେ ଆମେ ଜାଣିପାରୁଁ ଯେ, ଏହା ଆମରି ସଂସ୍କୃତି ଓ ମାଟିର ନିଜସ୍ୱ ଦର୍ଶନର ଅଭିବ୍ୟକ୍ତି ମାତ୍ର । ଆମର ମନୋଭୂମିରେ ଯେଉଁ ସ୍ୱକୀୟ ଚିନ୍ତନର ଆତ୍ମସତ୍ତା ବିଦ୍ୟମାନ ଏବଂ ଯାହା ସହିତ ପରିବେଶ ବା ବହିଃପ୍ରଭାବ ମିଶ୍ରଣ ସତ୍ତ୍ୱେ ଆପଣା ଅସ୍ତିତ୍ୱର ସଂପୂର୍ଣ୍ଣ ବିଲୟ ଘଟି ନଥାଏ, ତାହାକୁ ହିଁ ମାଟିର ନିଜସ୍ୱ ଶକ୍ତି ବୋଲି ବିବେଚନା କରାଯାଏ । ଏହା ଏକ ସାଧାରଣ ସତ୍ୟ ଯେ, ପ୍ରତ୍ୟେକ ଜାତି, ସବୁକିଛି ବହିଃପ୍ରଭାବର ସଂକ୍ରମଣ ସତ୍ତ୍ୱେ ଆପଣା ତୁଳେ କିଛି

Digitized by srujanika@gmail.com

ନା କିଛି ନିଜସ୍ୱ ଭାବର ଏକକତା ବଜାୟ ରଖିଥାଏ । ଏହାର ପ୍ରତିଫଳନ ସାହିତ୍ୟ ହେଉ ବା କଳା ହେଉ କିମ୍ୱା ବାସ୍ତବ ଜୀବନର ସାଧାରଣ ଆଚରଣରେ ହେଉ ସର୍ବତ୍ର ଦେଖାଦେଇଥାଏ ।

ଓଡ଼ିଆ ସାହିତ୍ୟରେ ଓଡ଼ିଆ ମାଟିର ନିଜସ୍ୱ ଦର୍ଶନର ପ୍ରତିଫଳନ କାଳର କେତେକ ପ୍ରସ୍ଥରେ ବିଶ୍ୱସ୍ତ ଭାବେ ଉତ୍‌କୀର୍ଣ୍ଣ ହୋଇଥିବା ମୁଁ ଲକ୍ଷ୍ୟ କରିଛି । ମୋର ସାଧାରଣ ଧାରଣା ଯେ, ଓଡ଼ିଶା ହେଉଛି କାବ୍ୟର ଭୂମି– ଏହି କାବ୍ୟ ପ୍ରବାହ ନବମ ଶତାବ୍ଦୀରୁ ଅଦ୍ୟାବଧି ନିଜସ୍ୱ ଶକ୍ତିରେ ଗରୀୟାନ୍ ହୋଇ ବହିଚାଲିଛି ସିନା, କେଉଁଠି ହେଲେ ଗତିହତ ହୋଇ ନାହିଁ । ଏକେତ ଓଡ଼ିଆର ମାନସିକ ପ୍ରବୃତ୍ତି ରସଗ୍ରାହୀ ଆବେଗରେ ଅଧୀର, ପୁଣି ତାହା କଳାମୋଦୀ ଓ ରୂପଭୋଗୀ; ଅତଏବ ଓଡ଼ିଆ ଜାତିର ସାହିତ୍ୟରେ ଏହି କଳା ଓ କାବ୍ୟାମୋଦୀ ଆକର୍ଷଣ ମାଟିର ଅନ୍ୟତମ ଜାତୀୟ ଲକ୍ଷଣ ରୂପେ ହିଁ ଚିହ୍ନିତ ହୋଇଛି ।

ମୁଁ ହୁଏତ ଏହି ଉପଲବ୍ଧିରେ ପହଂଚିଛି ଯେ, ଉନ୍ମେଷ କାଳରୁ ଅଦ୍ୟାବଧି ଓଡ଼ିଆ ସାହିତ୍ୟ ଭୋଗ ଓ ବୈରାଗ୍ୟବୋଧକୁ ଅଂଗୀକାର କରି ପରିପୁଷ୍ଟ । ଏହି ଦୁଇ ଭାବ ଓଡ଼ିଆ ସାହିତ୍ୟର ମୁଖ୍ୟ ପୁଞ୍ଜିରୂପେ ବିଭିନ୍ନ ସାହିତ୍ୟିକ ବିଭାଗରେ ପ୍ରକାଶ ପାଇଥିଲା । ପ୍ରାଚୀନ ଓ ମଧ୍ୟଯୁଗର ସାହିତ୍ୟିକମାନେ ଜୀବନକୁ ସମ୍ଭୋଗ ଓ ଐଶ୍ୱର୍ଯ୍ୟର ବିଳାସ ପୀଠରୁ ଦେଖୁଥିଲେ କିମ୍ୱା ଅତୀନ୍ଦ୍ରିୟ ମାନସ ଲୋକରେ ବିଚରଣ କରି ଜୀବନ ପ୍ରତି ମିଷ୍ଟିକ୍ ଦୃଷ୍ଟିକୋଣ ପ୍ରକାଶ କରୁଥିଲେ । ତେଣୁ ଏ କାଳର ଓଡ଼ିଆ ସାହିତ୍ୟରେ ଦେହବାଦୀ ଚିନ୍ତନ ସାଥେ ସାଥେ ଦେହୋତ୍ତର ଆଧ୍ୟାତ୍ମିକ ଚେତନାର ସ୍ରୋତ ପ୍ରବାହିତ ହୋଇଥିବା ଦେଖାଯାଏ ।

ଏହି ଐଶ୍ୱର୍ଯ୍ୟ ଓ ସଂଭୋଗର ବିଚିତ୍ର ପରିଚୟ ଓଡ଼ିଆ ସାହିତ୍ୟର ବିଭିନ୍ନ ପୋଥିପତ୍ରରୁ ମିଳେ । କେବଳ ଭାବ ନୁହେଁ, ଭୂମିର ଐଶ୍ୱର୍ଯ୍ୟବୃଦ୍ଧି ମଧ୍ୟ ଓଡ଼ିଆର କୃତିତ୍ୱ ହୋଇ ଯେତେବେଳେ ଦେଖାଦେଇଥିଲା, ସେତେବେଳେ ତା'ର ସାହିତ୍ୟ ଏହି ଐଶ୍ୱର୍ଯ୍ୟବାଦୀ ମନନ ଓ ଭୌଗୋଳିକ ପ୍ରସାରଣର ମାନସିକ ଉଦ୍ଦାମତାକୁ ସାହିତ୍ୟରେ ଅଭିଳିପ୍ତ କରିଦେଇଥିଲା ।



Digitized by srujanika@gmail.com

# ଆଧୁନିକତା ଓ ଓଡ଼ିଆ ସାହିତ୍ୟ

ଆପଣମାନେ ମୋ ସହିତ ପ୍ରାୟ ଏକମତ ହେବେ ଯେ, ଆମେ ସମସ୍ତେ ଯେଉଁ କାଳର ପରିଧି ଭିତରେ ଚଳପ୍ରଚଳ ହେଉଛୁଁ ବା ବଂଚିରହିବାର ଉପାଦାନ ଖୋଜୁଛୁଁ, ସେଇ କାଳ ବା ତା'ର ବ୍ୟକ୍ତିଦୃଟିକୁ ସାଧାରଣତଃ ଆମେ କହୁଛୁଁ ଆଧୁନିକ । ଆହୁରି ଟିକିଏ ସଳଖ ଭାବରେ କଥାଟିକୁ ବୁଝିଲେ ଏଇଆ ହେବ ଯେ, ବର୍ତ୍ତମାନର ବେଦୀ ଉପରେ ଯେଉଁ ସମୟ-ପୁରୁଷଟି ଠିଆ ହୋଇଛି, ଆମେ ସାଧାରଣ ଆଖିରେ ତାକୁ ଆଧୁନିକ ବୋଲି ଚିହ୍ନିଛୁଁ । କିନ୍ତୁ ଏଇ ଆଧୁନିକତାର କଥା ଚିନ୍ତାକଲା ବେଳେ ମନକୁ ଆଉ ଏକ ଜିନିଷ ପ୍ରବେଶ କରୁଛି; ତାହା ହେଉଛି ସାଂପ୍ରତିକତା । ସାମ୍ପ୍ରତିକତା ଓ ଆଧୁନିକତା ଗୋଟିଏ ଶିବିରରେ ଆଶ୍ରିତ କି ଭିନ୍ନ ଦେଶର ବାସିନ୍ଦା ସେ ସମ୍ପର୍କରେ ଆମର ଅନେକ ଜିଜ୍ଞାସା ଥାଇପାରେ । ସେହିପରି ସେମାନଙ୍କର ପ୍ରଭାବ-ସ୍ପର୍ଶର ମୌଳିକ ଲକ୍ଷଣ ମଧ୍ୟରେ ତାରତମ୍ୟ କେତେ ତାହାକୁ ବୁଝିବା ଲାଗି ପ୍ରସଙ୍ଗ କ୍ରମେ ଆମ ମନ ଭିତରେ କୌତୂହଳ ମଧ୍ୟ ଜାଗିପାରେ ।

ସାମ୍ପ୍ରତିକତା ହେଉ ବା ଆଧୁନିକତା ହେଉ, ଉଭୟଙ୍କର ସମ୍ପର୍କ-କ୍ଷେତ୍ର ହେଉଛି ମନୁଷ୍ୟ ସମାଜ ଓ ସଭ୍ୟତାର ଚାରଣଭୂମି । ମାନବ ଇତିହାସ ଅଧ୍ୟୟନ କଲେ ଆମେ ଉପଲବ୍ଧି କରୁଁ ଯେ, ସଭ୍ୟତା ହେଉଛି ମଣିଷ ଜୀବନର ଭୌତିକ ଆବରଣର ରୂପ ମାତ୍ର । ଏ ବିଷୟରେ ମୁଁ, ଆପଣମାନେ କିମ୍ବା ସମାଜବିଦ୍ ଡୁରାଣ୍ଟ୍ କେହି ସନ୍ଦିହାନ ନୋହୁଁ । ସଭ୍ୟତା ସହିତ ଆମ ଆତ୍ମାର ମିଳାମିଶା ଊଣା । ସଂସ୍କୃତି ହେଉଛି ମାନବ ଇତିହାସର ଏକ ଆତ୍ମିକ ସଂପଦ । ଏ ସଂପର୍କରେ ଆଚାର୍ଯ୍ୟ ସିଦ୍ଧାନ୍ତାଳଙ୍କାର କିମ୍ବା ଟି.ଏସ୍. ଇଲିଅଟ୍ ପ୍ରତ୍ୟେକଙ୍କର ସ୍ୱର ପ୍ରାୟ ସମାନ । କୁଳପତି ସତ୍ୟବ୍ରତ ସିଦ୍ଧାନ୍ତାଳଙ୍କାରଙ୍କର ମତ ହେଲା– 'ସଭ୍ୟତା ଶରୀର, ସଂସ୍କୃତି ହେଉଛି ଆତ୍ମା । ଆତ୍ମାହୀନ ଦେହ ଯେପରି ଶବ ରୂପେ ଗଣ୍ୟହୁଏ, ସେହିପରି ସଂସ୍କୃତିହୀନ ଦେଶ ଏକ ଜଡ଼ ଭୂଭାଗ ପରି ପଡ଼ିରହିଥାଏ ।'

Digitized by srujanika@gmail.com

ଟି.ଏସ୍. ଇଲିଅଟ୍‌ଙ୍କର ଚିନ୍ତାଧାର ହେଉଛି, ସଂସ୍କୃତି ଏକ ଅକ୍ଷୟ ଚେତନା, ଯାହା ଯୁଗ ଯୁଗ ଧରି ଜାତିର ସ୍ଥିତକୁ ଧରିରଖିଥାଏ । ସଭ୍ୟତା ହୁଏତ ଆମର ଭୌତିକ ସ୍ଥିତିରେ ପରିବର୍ତ୍ତନ ଆଣେ, ଆମକୁ ଗୋଟିଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତକୁ ନେଇଯାଏ; କିନ୍ତୁ ତଦ୍‌ଦ୍ୱାରା ମାନବୀୟ ମୌଳିକ ଶକ୍ତିର ଯଦି କିଛି ପରିବର୍ତ୍ତନ ହେଉଥାନ୍ତା, ତାହାହେଲେ ବୁଝନ୍ତୁ ସଭ୍ୟତା ହିଁ ମଣିଷ ମନର ଦେବତା । କିନ୍ତୁ ତା' ନୁହେଁ; ଆପଣା ଆପଣାର ସଂସ୍କୃତି ହେଉଛି ଯଥାର୍ଥତଃ ମଣିଷ ସମାଜର ପାଳନପିଣ୍ଡ ।

ତେଣୁ ଆପଣମାନେ ଧାରଣା କରିବା ସମୀଚୀନ ହେବ ଯେ, ମୋର ବକ୍ତବ୍ୟ ଯେଉଁ ଆଧୁନିକତାର ଦର୍ଶନ ଉପରେ ଆଧାରିତ ହେବ, ତାହା ଏ ସମସ୍ତଙ୍କ ଭାବ-ରୂପକୁ ବିଶ୍ଳେଷଣ କରିବ ଏବଂ ଏଗୁଡ଼ିକୁ ପ୍ରତିବିମ୍ବିତ କରୁଥିବା ମାଧ୍ୟମ (ଯଥା ସାହିତ୍ୟରେ) ଏହାରି ପ୍ରତିଫଳନର ମୌଳିକ ଉପଯୋଗକୁ ପ୍ରକଟ କରିବ । ମୋଟାମୋଟି ଭାବେ ମୁଁ କହିବି ଆଧୁନିକତାର ଦର୍ଶନ, ଜୀବନ ଓ ସାହିତ୍ୟରେ କିପରି ପ୍ରତିଫଳିତ । ଏହି ମୂଳବସ୍ତୁ ସହିତ ପ୍ରସଙ୍ଗକ୍ରମେ ଆଉ ଯେତେ ଉପସର୍ଗ ଆସିବା ବାଞ୍ଛନୀୟ ତାହାର ମଧ୍ୟ ସୂଚନା ଏଠାରେ ଦିଆଯିବ । ଏହି ବିଷୟବସ୍ତୁଟିର ଚର୍ଚ୍ଚାର ସୀମା ଖୁବ୍ ବ୍ୟାପକ । ମୁଁ ଯେ ମୋର ଚର୍ଚ୍ଚାକ୍ରମରେ ଆପଣମାନଙ୍କ ମନରେ ଏକ ସମ୍ପୂର୍ଣ୍ଣ ଉପଲବ୍ଧ ସଂଚାର କରେଇପାରିବି ବା ଯାହା କହିବି ତାହା ହିଁ ଶେଷ କଥା, ଏପରି ବିଚାର ଆପଣମାନେ କରିବେ ନାହିଁ । ଏ ବାବଦରେ ବହୁ ବ୍ୟକ୍ତି ଚିନ୍ତା କରୁଛନ୍ତି, ଅନାଗତ ବୁଦ୍ଧିଜୀବୀଗଣ ମଧ୍ୟ ଚିନ୍ତା କରିବେ । କିନ୍ତୁ ଆପାତତଃ ମଧ୍ୟବିନ୍ଦୁରେ ଥାଇ ମୁଁ କହିବି ମୋର ଏକାନ୍ତ ବ୍ୟକ୍ତିଗତ ଚର୍ଚ୍ଚାର ସୂତ୍ରଗୁଡ଼ିକୁ ।

ମୋ ବିଚାରରେ, ଆଧୁନିକତା ହେଉଛି ବିପ୍ଳବର ଏକ ଫଳଶ୍ରୁତି, ବିଦ୍ରୋହର ନୁହେଁ । ବିପ୍ଳବ ଓ ବିଦ୍ରୋହ ମଧ୍ୟରେ ଭେଦ ଅଛି, ସମାଜର ନିଗଡ଼ ନ ବଦଳାଇ ତା'ର କୌଣସି କୌଣସି ବିଶେଷ ଅବସ୍ଥାର ପରିବର୍ତ୍ତନ ପାଇଁ ଯଦି ଆନ୍ଦୋଳନ ଘଟେ, ତାହା ହୁଏ ବିଦ୍ରୋହ । ମନେକରାଯାଉ, ଅଭାବବୋଧ ଓ ଅସନ୍ତୋଷ ଯୋଗୁଁ ପ୍ରଚଳିତ ଆର୍ଥନୀତିକ ବ୍ୟବସ୍ଥା ବିରୁଦ୍ଧରେ ଜନଗଣ କିଛି ଗୋଟାଏ ଆନ୍ଦୋଳନ ଘଟାଇଲେ, କିମ୍ବା କୌଣସି ସାମାଜିକ ସଂସ୍କାର ଉନ୍ନୟନ ଅବହେଳିତ ହେଉଛି ବୋଲି ଦଳେ ପଟୁଆର କାଢ଼ିଲେ, ଝଣ୍ଡା ଉଡ଼ାଇଲେ ବା କର୍ତ୍ତୃପକ୍ଷଙ୍କ କର୍ମକୁ ରୋଧ କରିବା ଲାଗି ଦୃଢ଼ ବାଧା ସୃଷ୍ଟିକଲେ– ଏହିସବୁ ସାମୟିକ ପ୍ରତିକ୍ରିୟାକୁ କୁହାଯିବ ବିଦ୍ରୋହ । ଚାହିଦା ପୂରଣ ହୋଇଗଲେ ବିଦ୍ରୋହ ମଉଳିଯିବ, ସବୁ ଶାନ୍ତ ଓ ସ୍ଥିର ପଡ଼ିଯିବ । ଅଭ୍ୟାସ-ଅନୁଗତ ଚଲାପଥରେ ସମସ୍ତଙ୍କର ଜୀବନଯାତ୍ରା ପୁଣି ଆରମ୍ଭ ହୋଇଯିବ । ଏହା ହେଉଛି ବିଦ୍ରୋହ । ଏହାରି ଅନ୍ତରାତ୍ମାରେ ମୂଲ୍ୟବୋଧର ପରିବର୍ତ୍ତନ ପାଇଁ କୌଣସି ଫଳଶ୍ରୁତି ମିଳେନା, ମାନବ ଇତିହାସର ମୋଡ଼ ବଦଳେଇ ଦେବାର

Digitized by srujanika@gmail.com

ସଚେତନତା ଏଥିରେ ନଥାଏ, କିମ୍ବା ଆର୍ଥନୀତିକ, ସମାଜନୀତିକ ବା ବ୍ୟକ୍ତିସତ୍ତାଭିତ୍ତିକ ପରିବର୍ତ୍ତନ ଲାଗି କୌଣସି ଅନାହତ ପ୍ରଯତ୍ନର ହୃଦୟଦିଆ ଅନୁରକ୍ତି ମଧ୍ଯ ନଥାଏ । ତେଣୁ ଏହା ଭସାଣିଆ ମେଘ ପରି ସାମୟିକ; ସମୟ-ପିଠିରେ ସେଇପରି ତା'ର ପରିଚୟ ଧୂଳିର ଗାର ପରି ।

କିନ୍ତୁ ଭବିଷ୍ୟତ ସମାଜର ରୂପ କ'ଣ ହେବ, କେଉଁ ମାନବୀୟ ଆଦର୍ଶ ଉପରେ ସେହି ସମାଜ ଠିଆହେବ ଏପରି ଖସଡ଼ା ବା ମତବାଦ ଉପରେ ଆସ୍ଥା ରଖି ସମାଜର ଦର୍ଶନ ଓ ମଣିଷର ଚିରପୋଷିତ ଚେତନାକୁ ବଦଳାଇବା ପାଇଁ ଯେଉଁ ସଂଗ୍ରାମ ଚାଲେ, ତାହା ବିପ୍ଳବର ରୂପ ଧାରଣ କରିଥାଏ । ଏହା ଅବ୍ୟାହତ ରହି ସମାଜର ଚଳନ୍ତି ରାସ୍ତା ଏବଂ ମଣିଷର ବିଶ୍ୱାସ-ବିଭୂତିକୁ ବଦଳାଇ ଦେବା ଭଳି ଶକ୍ତିଶାଳୀ ହୋଇଉଠିଲେ ଏହାକୁ ଲକ୍ଷ୍ୟ କରୁଥିବା ମଣିଷର ମନ କିମ୍ବା ଅନୁସରଣ କରୁଥିବା ପଦାତିକମାନଙ୍କ ଚିତ୍ତରେ ଭୂମିକମ୍ପ ସୃଷ୍ଟି ହୁଏ । ସୁତରାଂ ବୁଝିବା ସଂଗତ ଯେ, ବିପ୍ଳବ ଜନ୍ମଦିଏ ନୂତନ ମାଟି ଓ ତା'ର ମଣିଷକୁ । ଏଇ ବିପ୍ଳବ ହେଉଛି ଆଧୁନିକତାର ପ୍ରସୂତି । ଏ ବିପ୍ଳବ ଭୌତିକ ବିପ୍ଳବ ନୁହେଁ, ଭାବ-ବିପ୍ଳବ । ଭୌତିକ ବିପ୍ଳବରୁ ଯାହା ମିଳେ, ତାହା ହେଉଛି ସଭ୍ୟତାର ଫସଲ । ସଂସ୍କୃତିର ପ୍ରସାରଣ ପାଇଁ ତାହା ସେତେ ମୂଲ୍ୟବାନ ନୁହେଁ, ମୂଲ୍ୟବାନ ହେଉଛି ଚିନ୍ତା ଓ ଚେତନା ଏବଂ ଭାବର ମୌଳିକତା ।

ଆଧୁନିକତା ହେଉଛି ସେହିପରି ଏକ ଚେତନା । ମଣିଷର ମାନସବୃତ୍ତିକୁ ଅଧ୍ୟୟନ କଲେ ଏଇ ଚେତନାକୁ ଚିହ୍ନିହୁଏ । ଏହି ଚେତନାର ଶକ୍ତିଶିଖା ସମସ୍ତଙ୍କ ଆଚରଣରେ ପ୍ରବେଶ କରି ସେମାନଙ୍କୁ ଅତୀତଠାରୁ ଯଦି ଭିନ୍ନ କରିଦିଏ, ତାହାହେଲେ ମଣିଷ ଇତିହାସର ସେଇ ପର୍ଯ୍ୟାୟକୁ ଆମେ କହୁଁ ଆଧୁନିକ । ଅତଏବ ସମୟର ନୂତନ ପ୍ରଣାଳୀ ଉପରେ ଯେଉଁ ମୂଲ୍ୟବୋଧ ବା ଭାବରୂପର ସୌଧ ଗଢ଼ିଉଠେ ତାହାହିଁ ହେଉଛି ଆଧୁନିକତା । ଏହି ଆଧୁନିକତାର ଚଳଣିର ଇତିହାସରେ ଯେଉଁ ଭାବସତ୍ତାଟି ପ୍ରତିଷ୍ଠା ପାଏ, ତାହା ମଣିଷ ଜାତିର ସଂସ୍କୃତିରେ ମିଶେ; ଏହାରି ଯୋଗଫଳରୁ ସଂସ୍କୃତିର ପ୍ରସାରଣ ଘଟେ । ପୂର୍ବରୁ କହିଛି, ସଂସ୍କୃତିର କ୍ଷୟ ନାହିଁ- ଏହା ଆତ୍ମା ପରି ଅବିନାଶୀ ଓ ଅପରିବର୍ତ୍ତନୀୟ; ମଣିଷ ଜାତିର ଯାହା ମୌଳିକ ଉପାର୍ଜନ ତାହା କାଳକାଳକୁ ସଂସ୍କୃତିର ଭଣ୍ଡାରରେ ସାଇତା ହୋଇ ରହେ । ନୂଆ ପୁରୁଣାରେ ମିଶେ ସେହିପରି ଆଧୁନିକତାର ଦେଣ ସଂସ୍କୃତିକୁ ।

ଚେତନାର ଏଇ ନୂତନ ଶିଶୁଟିର ଉଦୟଲିପି କେବେ ପ୍ରସ୍ତୁତ ହୋଇଥିଲା, ମାନବ-ଇତିହାସରେ ଏହାରି ବାର୍ତ୍ତା କିପରି ସଂକ୍ରମିତ ହେଲା, ସେଇ ବିଷୟର ଉତ୍‌ଥାପନ ହୁଏତ ଏଇଠି କରାଯାଇପାରେ । ଆପଣମାନେ ଭଣାଅଧିକେ ଜାଣିଥିବେ

Digitized by srujanika@gmail.com

ଯେ, ବିଶ୍ୱରେ ଯେତେ ବିପ୍ଳବ ଘଟିଯାଇଛି, ସେଥିଭିତରୁ ଶିଳ୍ପବିପ୍ଳବ ଓ ଫରାସୀ ବିପ୍ଳବ (୧୭୮୯) ହେଉଛି ଖୁବ୍ ପ୍ରଭାବଶାଳୀ । ଶିଳ୍ପବିପ୍ଳବ ଫଳରେ ଯେଉଁ ପରିବର୍ତ୍ତନ ଘଟିଲା, ତାହାରି ପ୍ରସାଦରୁ ଗ୍ରାମ୍ୟ ଶିଳ୍ପସଂସ୍ଥାଗୁଡ଼ିକ ଭାଙ୍ଗିରୁଜିଗଲା, ଲୋକେ ଆସ୍ତେ ଆସ୍ତେ କଳକାରଖାନାରେ ପ୍ରବେଶ କଲେ । ୧୭୬୦ ପୂର୍ବରୁ ସାଧାରଣ ଶିଳ୍ପସଂଗଠନଗୁଡ଼ିକ ଗ୍ରାମ-କେନ୍ଦ୍ରିକ ଥିଲା । ୧୮୨୦ ବେଳକୁ ଏହା କାରଖାନାକେନ୍ଦ୍ରିକ ହୋଇଉଠିଲା ବୋଲି ଇତିହାସ କହେ । ଏହାର ପ୍ରସାରଣ ଆଜିଯାଏ ଚାଲିଛି । ଦେଖାଗଲା ଯେ, ଲୋକେ ଗ୍ରାମ ଛାଡ଼ି ସହର ଭୂଇଁରେ ଆଶ୍ରୟ ନେଲେ । "ଡେଜର୍ଟେଡ଼ଭିଲେଜ" ପଲ୍ଲୀଚିତ୍ର କିମ୍ବା "ପଲ୍ଲୀଶ୍ରୀ"ରୁ ଏହାର ସତ୍ୟତା ପାଇପାରିବେ । ପ୍ରକୃତରେ ଗାଁ ଉଚ୍ଛନ୍ନ ହେଲା, ପାରିବାରିକ ଏକତା କ୍ରମଶଃ ଭାଙ୍ଗିଗଲା, ବିଚ୍ଛିନ୍ନତାବୋଧ ବେଶି ଜଣାପଡ଼ିଲା, ଏଥିରୁ ଯେଉଁ ସମାଜ ବା ମଣିଷର ଭାବ-ରୂପଟି ଫୁଟିଉଠିଲା, ତାହାକୁ କେତେକ ଆଧୁନିକତାର ଅନୁପ୍ରବେଶ ବୋଲି ବୁଝିଲେ । ଶିଳ୍ପ ବିପ୍ଳବର ପରିଣାମରୁ ଆଧୁନିକତାର ରୂପ କ୍ରମେ ମଣିଷ ସମାଜରେ ଚିହ୍ନିତ ହେଲା ବୋଲି ଅନେକ ମତ ଦେଲେ । ସେହିପରି ଫରାସୀ ବିପ୍ଳବ (୧୭୮୯) ଯେଉଁ ମତବାଦକୁ ଭିତ୍ତିକରି ସୃଷ୍ଟି ହେଲା;- ସାମ୍ୟ, ମୈତ୍ରୀ ଓ ବ୍ୟକ୍ତିର ମୁକ୍ତି– ଏଇ ବିଶ୍ୱାସବୋଧ ଉପରେ ଭବିଷ୍ୟତର ମଣିଷ ସମାଜ ଗଢ଼ା ହେବ ବୋଲି ଯେଉଁ ପ୍ରଯତ୍ନ ଚାଲିଲା, ସେଥିରୁ ଆଧୁନିକତାର ଜନ୍ମ ବୋଲି ମଧ୍ୟ ଅନେକଙ୍କର ଧାରଣା । ଲୋକେ ଫରାସୀ ବିପ୍ଳବ ଘଟାଇବା ଲାଗି ପ୍ରେରଣା ପାଇଥିଲେ ସାହିତ୍ୟରୁ । ଗୋଟିଏ ସତ୍ୟ ସମ୍ବାଦ ସହିତ ଆପଣଙ୍କୁ ପରିଚିତ କରାଇବା ଏଠି ପ୍ରାସଙ୍ଗିକ ବୋଧ କରୁଛି ।

ସମ୍ବାଦଟି ହେଲା– ଫ୍ରାନ୍ସ ଯେତେବେଳେ ଷୋଡ଼ଶ ଲୁଇଙ୍କ ଦ୍ୱାରା ଶାସିତ ହେଉଥିଲା, ସେତେବେଳେ ସାଆନ୍ତ ଗୋଷ୍ଠୀ ସୁବିଧାଜନକ ଇଲାକାରେ ରହୁଥିଲେ, ସମସ୍ତ ପ୍ରକାର ସୁବିଧା ଭୋଗ କରୁଥିଲେ । ସାଆନ୍ତ-ସମଷ୍ଟିର ଆୟତ୍ତରେ ରହୁଥିଲେ ଆଉ ଯେତେ ତଳଶ୍ରେଣୀର ଜନତା । ଜନତା ଗୋଟିଏ ପକ୍ଷରେ ଚର୍ଚ୍ଚ ଓ ଅନ୍ୟ ପକ୍ଷରେ ଶାସକ ଓ ତାଙ୍କ ପାରିଷଦଙ୍କ କଷଣରେ ପେଷି ହୋଇଯାଉଥିଲା ବେଳେ ମୁକ୍ତି ପାଇଁ ବ୍ୟାକୁଳତା ପ୍ରକାଶ କରିବା ସ୍ୱାଭାବିକ । ତେବେ କାହା କବଳରୁ ମୁକୁଳିବା ପାଇଁ ଏଇ ମୁକ୍ତିର ଇଚ୍ଛା ? କର୍ତ୍ତୃତ୍ୱରୁ ମୁକ୍ତି, ଶୋଷଣରୁ ମୁକ୍ତି, ଉପର-ତଳ ଭେଦରୁ ମୁକ୍ତି । ସେତେବେଳେ ଲୋକଙ୍କର ଶିଥିଳ ମୁକ୍ତିଇଚ୍ଛାକୁ ସାହିତ୍ୟ ଉତ୍ତେଜିତ କରିଦେଇଥିଲା । ଫରାସୀ ନାଟ୍ୟକାର ବିଓମାରସିସ୍ (Beaumarchais, 1732-99)ଙ୍କର ନାଟକ 'ଦି ମ୍ୟାରେଜ୍ ଅଫ୍ ଫଗାରୋ (୧୭୭୮-୧୭୮୪) ଓ 'ଦି ବାରବାର ଅଫ୍ ସେଭିଲି' (୧୭୭୫) ବହୁ ପ୍ରତିବନ୍ଧକ ସତ୍ତ୍ୱେ ରାଜପ୍ରାସାଦରେ ସମୟକ୍ରମେ ଅଭିନୀତ ହେଲା । ତହିଁରେ ଥିବା ବିପ୍ଳବର ଚିତ୍ର ଓ ଘଟଣାର ସଜ୍ଜା

Digitized by srujanika@gmail.com

ଦେଖି ଲୋକେ ଏପରି ପ୍ରଭାବିତ ହେଲେ ଯେ, ନାଟକ ଚାଲୁଥିଲା ବେଳେ ସ୍କ୍ରିନ୍ ପାଖେ ଦର୍ଶକମାନେ ବିଦ୍ରୋହ ଆରମ୍ଭ କରିଦେଲେ । ଉଲ୍ଲିଖିତ ପ୍ରଥମ ନାଟକଟିର ଅନ୍ୟତମ ଚରିତ୍ର ଫିଗାରୋ ଆପଣା ତୁଣ୍ଡରେ ଯେଉଁ ସଂଳାପ ପ୍ରକାଶ କରିଥିଲେ, ତାକୁ ଟିକିଏ ଆପଣମାନେ ଅନୁଧାନ କରନ୍ତୁ ! ଫିଗାରୋ ସାମନ୍ତବର୍ଗଙ୍କର ବାବଦରେ କହୁଥନ୍ତି– 'ଆପଣମାନେ ଅଭିଜାତ ସାଆନ୍ତବର୍ଗ ହୋଇଥିବାରୁ ଆପଣାକୁ ମନେ ମନେ ପ୍ରତିଭାବାନ ବୋଲି ବିବେଚନା କରୁଛନ୍ତି । ରାଜକୀୟ ମର୍ଯ୍ୟାଦା, ପଦବୀ ଓ ଭାଗ୍ୟ ଆପଣଙ୍କୁ ଏତେ ଗର୍ବୀ କରିଛି । କିନ୍ତୁ ଏସବୁର ଅଧିକାରୀ ହେବା ପାଇଁ ବାସ୍ତବରେ ଆପଣମାନେ ଯୋଗ୍ୟ କି ? କାହିଁ ସେପରି କିଛି ଯୋଗ୍ୟତାର କାର୍ଯ୍ୟ ତ କରିନାହାନ୍ତି । କେବଳ ଅଭିଜାତ କୁଳରେ ଜନ୍ମ ହେବାର ଏକ ଆନନ୍ଦମୟ ଯନ୍ତ୍ରଣା ଛଡ଼ା ଆଉ ତ କିଛି ଅବଦାନ ଆପଣଙ୍କର ନାହିଁ । ଏହାଛଡ଼ା ଅନ୍ୟ ସବୁଥିକି ଆପଣମାନେ ସାଧାରଣ ମଣିଷ ତୁଲ୍ୟ । କିନ୍ତୁ ହେ ସାମନ୍ତବର୍ଗ ! ମୋତେ ଦେଖନ୍ତୁ ମୁଁ ବଂଚିବା ପାଇଁ କେତେ ସଂଗ୍ରାମ କରୁଛି, ଜ୍ଞାନ ପାଇଁ କେତେ ଦୁଆରରେ ପହଞ୍ଚିଛି, ଗୋଟିଏ ସମ୍ମାନଜନକ ଜୀବିକା ପାଇଁ କେତେ ଯତ୍ନ କରିଛି– ସାଆନ୍ତଙ୍କଠାରୁ ମୁଁ ବହୁ ବିଦ୍ୟା ହାସଲ କରିଥିଲେ ସୁଦ୍ଧା ମୋ ଗଳାରେ ତ କାହିଁ କେହି ସାଆନ୍ତ-ପଦକଟିଏ ଲମ୍ବାଇ ଦେଇ ନାହିଁ ।"

ଏହି ସଂଳାପ ଭିତରେ ଥିବା ବିପ୍ଳବର ଆହ୍ୱାନୀଶକ୍ତିଟି ଏତେ ଶକ୍ତିଶାଳୀ ଥିଲା ଯେ, ଏହାର ଡାକରା ଲୋକଙ୍କୁ ତତ୍‌କ୍ଷଣାତ୍ ତତେଇ ଦେଇପାରିଲା । ସେ ଦେଶରେ ଲୋକେ ମଣିଷମନର ଭାବ-ସତ୍ତାର ପରିବର୍ତ୍ତନ ଲାଗି ସଚେତନ ହୋଇଥିବାରୁ ବିପ୍ଳବ ଘଟାଇଥିଲେ । ଏଇସବୁ ବିପ୍ଳବରୁ ଜନ୍ମନେଲା ଆଧୁନିକତାର ଦର୍ଶନ ।

ଯେଉଁ ମୂଲ୍ୟବୋଧ ଉପରେ ବିଶ୍ୱାସ କରି ପାଶ୍ଚାତ୍ୟରେ ଆଧୁନିକତାର ଦର୍ଶନ ଗଠିତ, ସେଗୁଡ଼ିକ ହେଲା– ଜୀବନର ବାସ୍ତବ ପକ୍ଷ ଉପରେ ପ୍ରାଧାନ୍ୟ ଆରୋପଣ; ଏହାର ଅର୍ଥ ହେଲା– ବଂଚିବାର ଉଦ୍ୟମ ଭିତରେ ଜୀବନକୁ ବୁଝିବା ଓ ଜୀବନର ପରିପୂର୍ଣ୍ଣତା ଆଣିବା ପାଇଁ ଯତ୍ନ କରିବା । ଜୀବନ ପାଇଁ ଜୀବନର ଉପାସନା ହେଉଛି ଏହାର ମୂଳ ଲକ୍ଷ୍ୟ । ଏହି ଦୃଷ୍ଟିଭଂଗୀ କେବେହେଲେ ଜୀବନ ଲାଗି ନିର୍ବାଣ ବା ସଂସାର-ମୁକ୍ତିର ଦର୍ଶନ ପୋଷଣ କରେ ନାହିଁ, ତେଣୁ ଆଧୁନିକ ବିଶ୍ୱବାସୀଙ୍କ ବିଶ୍ୱାସ ଯେ, ମଣିଷ କେବଳ ମାତ୍ର ମଣିଷର ଗୌରବ ପାଇଁ ବଂଚୁ । ଏଇ ବଂଚିବା ମଧ ହେଉ ଏକ ସମ୍ମାନଜନକ ବଂଚିବା । ସେଥିପାଇଁ ସବୁ ପ୍ରଯତ୍ନ ଓ କର୍ମର ନିବନ୍ଧନ ତିଆରି ହେଉ । ଏଇ ସ୍ୱଚ୍ଛନ୍ଦରେ ବଂଚିବା ଲାଗି ଯେତେ ସବୁ ଉଦ୍ୟମ କରାହେଲା ତାହା ଆଣିଲା ସାମାଜିକ ସ୍ଥିତି, ଏକ ବର୍ଦ୍ଧିଷ୍ଣୁ ସମାଜ (Affluent society)ର ଅଭ୍ୟୁଦୟକୁ ଏହା ପସନ୍ଦ କଲା । ବହିର୍ଜଗତର ଏଇ ଅର୍ଥନୀତି-ସମ୍ବଳିତ-

Digitized by srujanika@gmail.com

ସାମାଜିକ-ପ୍ରସାରଣକୁ ଆଧୁନିକତାର ପ୍ରତିଫଳ ବୋଲି ଧରିନିଆଗଲା । ଉଦାହରଣ ଲାଗି ଆମେରିକାର ସାମାଜିକ ସ୍ଥିତିକୁ ଅନିଷା କରାଯାଇପାରେ । ମାନବୀୟ ପ୍ରେମବୋଧ ଓ ବ୍ୟକ୍ତି ପ୍ରତି ଗଭୀର ମର୍ଯ୍ୟାଦାବୋଧର ଅନୁପ୍ରେରଣାରେ ଗଢ଼ିଉଠିଥିବା ସବୁ ମାନବୀୟ ନୀତିକୁ ସ୍ୱୀକୃତି ଦିଆଗଲା; ମଣିଷ-ମଣିଷର ସହୋଦର ତୁଲ୍ୟ ପରସ୍ପରରେ ଭଲପାଇବାର ଦର୍ଶନ ପୋଷଣ କଲା, ଦାସତ୍ୱର ପ୍ରରୋଚନାରେ ଉଚ୍ଚସ୍ଥଙ୍କୁ ଭଲପାଇବା କିମ୍ବା କୌଣସି ଯୁକ୍ତି ଥାଉ କି ନଥାଉ ପରଂପରା ଅନୁକ୍ରମରେ ଚର୍ଚ୍ଚାର ବିଶ୍ୱାସ ଓ ବିଧାନକୁ ଖାଲି ଭଲପାଇବାର ଧାରାକୁ ଆଉ ଗୁରୁତ୍ୱ ଦିଆଗଲା ନାହିଁ । ଏଇ ମାନବ ପ୍ରେମର ଆଭିମୁଖ୍ୟ କିମ୍ବା ବ୍ୟକ୍ତିପ୍ରେମ ଭାବନାର ପରିସର କ୍ରମେ ଦେଶପ୍ରେମର ମହତ ଆଦର୍ଶରେ ରୂପାନ୍ତରିତ ହୋଇଗଲା ।

ଆପଣମାନେ ଗର୍କୀଙ୍କର 'ମଦର୍' ଉପନ୍ୟାସ ପଢ଼ିଥିବେ । କାରଖାନାରେ ଶ୍ରମିକ ପାଭେଲ୍ ତା' ମା'କୁ ସ୍ନେହ କରିଛି, ତା'ରି ଭିତରେ ଦେଶମାତୃକାକୁ ଦେଖିଛି, ସରଳା ମା'ର ପୁତ୍ର ସେବା ଅଜାଣତରେ ହେଉ ବା ଜଣାଶୁଣାରେ ହେଉ, ଦେଶସେବାରେ ପରିଣତ ହୋଇଯାଇଛି । କାରଖାନାରେ ବିରତି ଘଣ୍ଟା ବାଜିଲା ବେଳକୁ ପାଭେଲ୍‌ର ମା' ପୁଅ ପାଇଁ ଖାଦ୍ୟ ଘେନି ଫାଟକ ପାଖରେ ପହଞ୍ଚେ, ସେଇ ଖାଦ୍ୟ-ଟୋକେଇ ଭିତରେ ଥାଏ ବିପ୍ଳବର ପ୍ରଚାରପତ୍ର । ତାହା କାରଖାନା ଭିତରେ ପାଭେଲ୍ ଶ୍ରମିକମାନଙ୍କୁ ବିରତି ବେଳେ ବାଣ୍ଟେ, ଏ କଥା ବା କେତେଦିନ ଗୋପନୀୟ ରହିବ ? ପୋଲିସ ଜାଣିଛି, ମା'କୁ ଅତ୍ୟାଚାର ବରଣ କରିବାକୁ ପଡ଼ିଛି । ଜାର୍‌ଙ୍କ ବନ୍ଧନ ଓ କଷଣରୁ ସେ ମୁକ୍ତି ପାଇନାହିଁ । ତା'ରି ରକ୍ତରେ ମାଟି ରଂଜିତ ହୋଇଛି, କିନ୍ତୁ ବିପ୍ଳବ ତେଜି ଉଠିଛି । ପାଭେଲ୍ ମା'ର ଅପମୃତ୍ୟୁ ପାଇଁ ଭାବପ୍ରବଣ ହୋଇ ଅଶ୍ରୁମୋଚନ କରିବା ଅପେକ୍ଷା ଦେଶମାଟିର ମୁକ୍ତି ଲାଗି ଶକ୍ତି ସଂଚୟ କରିଛି । ଏଥିରୁ ଆପଣମାନେ ଅନୁମାନ କରୁଥିବେ, ଗୋଟିଏ ଜାତିର ଯାତ୍ରାପଥକୁ ବଦଳେଇ ଦେଲା ଏଇ ଆଭିମୁଖ୍ୟ ଏବଂ ଏଇ ଆଭିମୁଖ୍ୟ ଦ୍ୱାରା ଅନୁପ୍ରେରିତ ବିପ୍ଳବ । ସେହିପରି ଆଧୁନିକତାର ଦର୍ଶନ ବିଶ୍ୱାସ ରଖିଲା, ଆଧାତ୍ମିକ ସ୍ୱାୟତ୍ତବୋଧ ଉପରେ । ଏହି ମୂଲ୍ୟବୋଧର ବିଶ୍ୱାସ ବଳରେ ମଣିଷ ଚାହିଁଲା ଆଭ୍ୟନ୍ତରୀଣ ମୁକ୍ତି ! ମଣିଷ ହେଉ ମଣିଷର ବିଧାତା, ଶାସ୍ତ୍ର କୁହ ବା ଭଗବାନ କୁହ, କୌଣସି ବାହ୍ୟଶକ୍ତି ପ୍ରତି ଦାୟୀ ହୋଇ ରହିବାକୁ ସେଇ ଇଚ୍ଛା କଲାନାହିଁ; କେବଳ ଆପଣା ଭିତରେ ଥିବା ସେଇ 'ଆତ୍ମସତ୍ତା' ପାଖରେ ଦାୟବଦ୍ଧ ହୋଇ ରହିବାକୁ ସେ ଉଚିତ ମଣିଲା ।

ଏଇ ମୂଲ୍ୟବୋଧ ପ୍ରତି ଆନୁଗତ୍ୟ ଆସିବା ପାଇଁ ଟଲଷ୍ଟୟ ଲେଖିଲେ 'ଦି କିଙ୍ଗଡମ୍ ଅଫ୍ ଗଡ୍ ଇଜ୍ ଉଇଦିନ୍ ଇଉ' । ସାମୂହିକ ସାମ୍ୟ ସ୍ଥାପନା ପାଇଁ ଯତ୍ନ କଲେ ବିଶ୍ୱର ଆଧୁନିକ ମଣିଷମାନେ । ଯେଉଁ ଜମିଦାର ଗୋଷ୍ଠୀ ଗଣବାଦକୁ ହତ୍ୟାକରି

Digitized by srujanika@gmail.com

ଚାଲିଥିଲେ, ସେମାନଙ୍କର ଉଚ୍ଛେଦ ଘଟାଇ ଏକ ସର୍ବସାଧାରଣ ସମାଜ ଗଠନର ଆଦର୍ଶ ଆଧୁନିକ ବିପ୍ଳବୀମାନେ ପୋଷଣ କଲେ । ସେମାନେ 'ଅଛୁଁ' ଅପେକ୍ଷା 'ହେବୁଁ'ର ଦର୍ଶନ ଉପରେ ଗଭୀର ଆସ୍ଥା ରଖିଲେ । ସକଳ ନୂତନ ପରିସ୍ଥିତିରେ ବ୍ୟକ୍ତିର ଶକ୍ତିକୁ ପ୍ରଶସ୍ତ ଭାବେ ହିତଦାୟୀ ମାନବିକ କାର୍ଯ୍ୟକ୍ରମରେ ଲାଗୁ କରାଇବା ପାଇଁ ଉଦ୍ୟମୀ ହେଲେ । ଫଳରେ ସେମାନଙ୍କର କାର୍ଯ୍ୟକ୍ରମ ସବୁ ସର୍ଜନାତ୍ମକ ମୂଲ୍ୟବୋଧର ସଂରକ୍ଷଣରେ ତତ୍ପରତା ପ୍ରକାଶ କଲେ; ରୁଦ୍ଧ ଓ ସ୍ଥିତଶୀଳ ଦୃଷ୍ଟିକୋଣକୁ ବାଛନ୍ଦ କଲେ । ପ୍ରଗତିଶୀଳ ଦୃଷ୍ଟିକୋଣକୁ ମାନ୍ୟ ଦିଆଗଲା– ଯାହା ମୋଟାମୋଟି ଭାବେ ସାର୍ବଜନୀନତା ଓ ମାନବିକତାର ଗୌରବ ଉନ୍ମୋଚନ ପାଇଁ ଯତ୍ନଶୀଳ ହୋଇଥିଲା, ତାହାକୁ ପ୍ରଗତିଶୀଳ ଦୃଷ୍ଟିକୋଣର ମର୍ଯ୍ୟାଦା ଦିଆଯାଇଥିଲା ।

ଏତେବେଳେ ସମସ୍ତେ ନୂତନ ମୂଲ୍ୟବୋଧକୁ ଆପଣା ରୁଚିର ସୀମା ଭିତରେ ମିଶେଇ ଦେବା ପାଇଁ ପ୍ରଯତ୍ନ କଲେ । ଏକ ନୂତନ ସମାଜର ସ୍ୱରୂପ ଗଠନ କାମରେ ସମସ୍ତେ ଲାଗିପଡ଼ିଲେ– ଏହି ଗଠନକର୍ମର ମୁଖ୍ୟ ଲକ୍ଷ୍ୟ ରହିଲା– କୌଣସି ଦେଶର ଅର୍ଥନୀତି-ମୂଳ-ସାମାଜିକ ଆଙ୍ଗିକର ପରିବର୍ତ୍ତନ ଉପରେ ।

ଏହା ସ୍ପଷ୍ଟତଃ କୁହାଯାଇପାରେ ଯେ, ଯେତେବେଳେ ଏଇ ଆଧୁନିକ ମୂଲ୍ୟବୋଧଗୁଡ଼ିକ ପାଶ୍ଚାତ୍ୟ ଦେଶର ଲୋକଙ୍କ ଚିନ୍ତାସ୍ତରକୁ ଓହ୍ଲାଇ ଆସି ଚରିତ୍ର ଓ କର୍ମରେ ପ୍ରତିଫଳିତ ହେଲା, ସେତେବେଳେ ଆସିଲା 'ଆଧୁନିକତା'; ପୃଥିବୀର ଯେଉଁ ଭୂଖଣ୍ଡ ଏକ ଚିନ୍ତାଧାରକୁ ଗ୍ରହଣ କରିପାରିଲା, ସେ ହେଲା କ୍ରମଶଃ ଆଧୁନିକ । ଯେଉଁଠି ଏହା ପଶିପାରିଲା ନାହିଁ ସେହି ଅଞ୍ଚଳ ରହିଲା ଅନ୍ଧାର ଓ ଅନ୍ଧାର ଗର୍ଭରେ । ଇଂରେଜି ଶିକ୍ଷା ଏଇ ନୂତନ ଚେତନାକୁ ଚାରିଆଡ଼େ ବିଞ୍ଚି ଦେଇଥିଲା । ଆମେ ମଧ୍ୟ ଏଇ ଇଂରେଜି ଶିକ୍ଷା ମାଧ୍ୟମରେ ଆଧୁନିକତାର ଦର୍ଶନ ବାବଦରେ କିଛି ସୂଚନା ପାଇଥିଲୁ ।

ତେବେ ଏଇଠି ଆବଶ୍ୟକ ବୋଧ ହେଉଛି ଆମ ମାଟିରେ ଏହି ଆଧୁନିକତାର ଦର୍ଶନ ପ୍ରତିଫଳିତ ହୋଇଛି କି ନାହିଁ, ତାହାରି ସତ୍ୟାସତ୍ୟ ଅନ୍ୱେଷଣ କରି ଏକ ସମାଧାନରେ ପହଞ୍ଚିବା । ଏପରି ଅନୁସନ୍ଧାନ ପାଇଁ ଅବଲମ୍ବନ ହେଉଛି– ସାହିତ୍ୟ ଓ ଜୀବନ । କାରଣ ଜୀବନ ଯେଉଁ ଦର୍ଶନ ପୋଷଣ କରେ ଓ ତଦନୁଯାୟୀ ଯେଉଁ ଆଚରଣ ଦେଖାଏ, ତାହା ସାହିତ୍ୟରେ ସ୍ଥାନ ପାଏ । ତେଣୁ ସାହିତ୍ୟ ଓ ଜୀବନର ବିଶ୍ଳେଷଣରୁ ଆମ ମାଟିରେ ଆଧୁନିକତା କିପରି ସ୍ଥାନ ଘେନିଛି, ତାହାର ପ୍ରମାଣ ମିଳିପାରିବ ।

ପ୍ରଥମତଃ ମୁଁ ସାହିତ୍ୟର କଥା ବିଚାରକୁ ନେଉଛି । ସାହିତ୍ୟରେ କେଉଁ ପ୍ରକାର ମତିଗତିର ସୂଚନା ମିଳୁଥିଲେ, ତାହା ଖାଲି ସମକାଳୀନ ବା ସାଂପ୍ରତିକ ସାହିତ୍ୟ ନ

Digitized by srujanika@gmail.com

ହୋଇ ଆଧୁନିକ ସାହିତ୍ୟ ହୋଇପାରିବ । ସମକାଳୀନ ସାହିତ୍ୟରେ ଜନସାଧାରଣଙ୍କର ତତ୍କାଳୀନ ଚାହିଦାର ଅନ୍ତର୍ଲିପିକୁ ଆଦର୍ଶ ବୋଲି ଧରିନେଇ ତାହାରି ପ୍ରକାଶ ଘଟାଇ ଦିଆଯାଇଥାଏ । ଏଇ ସାହିତ୍ୟ ଅଧିକାଂଶ ସ୍ଥଳରେ ବ୍ୟକ୍ତିସତ୍ତାର ବିରୋଧୀ, ବରଂ ସମଷ୍ଟି ଓ ଦଳ ସମର୍ଥକ ହୋଇଥାଏ । କୌଣସି ସାହିତ୍ୟ ଯଦି ମଣିଷର ସାମୟିକ ସମସ୍ୟାବଳୀକୁ ଚିରନ୍ତନ ମାନବୀୟ ସମସ୍ୟାରେ ରୂପାନ୍ତରିତ କରି ନ ପାରିଲା କିମ୍ବା ତହିଁରେ ଚିରନ୍ତନତାର ଗୌରବ ଭରିଦେଇ ନପାରିଲା ସେହି ସାହିତ୍ୟ ସମକାଳୀନତାର କବଳରୁ ମୁକ୍ତ ହେବ କିପରି ? ମଣିଷର ସାମୟିକ ସ୍ଥିତି, ତା'ର ତତ୍କାଳୀନ ଇଚ୍ଛା ଓ ରୂପଛଟାକୁ ଦେଖୁଥିବା ସାହିତ୍ୟ ହିଁ ବସ୍ତୁତଃ ଆଂଶିକ ମଣିଷଟିକୁ ଦେଖିଥାଏ- ସମକାଳୀନ ସାହିତ୍ୟର ଗୁଣ ହେଉଛି, ମଣିଷର ଚରିତ୍ରର ଏକ ବିଶେଷ ଅଂଶକୁ ବିମ୍ବିତ କରିବା । କୌଣସି ମହତ୍ ସାହିତ୍ୟ ସମକାଳୀନତାର ସଂକୀର୍ଣ୍ଣ ବେଢ଼ା ମଧ୍ୟରେ ଆବଦ୍ଧ ନୁହେଁ । ମହତ୍ ସାହିତ୍ୟ କାଳୋତ୍ତୀର୍ଣ୍ଣ ସାହିତ୍ୟ-ଚିରକାଳର ସାହିତ୍ୟ ହେଉଛି ସେହି ସାହିତ୍ୟ ଯହିଁରେ ଶାଶ୍ୱତ ଆଧୁନିକତା ପରିପୂର୍ଣ୍ଣ । ବିଶେଷ ଏକ କାଳର ମୋହର-ମରା ସାହିତ୍ୟ ଆଧୁନିକ ସାହିତ୍ୟ ନୁହେଁ ।

ଯେଉଁ ସାହିତ୍ୟରେ ମଣିଷର ମାନସିକ ସଂଘାତର ଇତିହାସ ସ୍ପଷ୍ଟ, ଧର୍ମ ଓ ବିଜ୍ଞାନ ମଧ୍ୟରେ ଦେଖାଦେଉଥିବା ଚିତ୍ର ପ୍ରତିଫଳିତ, ଶାସ୍ତ୍ରୀୟ ଆଚାର ଓ ଅନୁଷ୍ଠାନର ନିଗଡ଼ ଭିତରୁ ମୁକ୍ତ ହେବା ଲାଗି ଯେଉଁଥିରେ ବିଦ୍ରୋହର ସ୍ୱର ଉଚ୍ଚାରିତ, କିମ୍ବା ନୂତନ ସମାଜ ସୃଷ୍ଟିର ଆବେଗ ଯେଉଁ ସାହିତ୍ୟରେ ଉଚ୍ଛଳ; ତାକୁ କୁହାଯିବ ଆଧୁନିକ ସାହିତ୍ୟ । ମୋଟ ଉପରେ ଯେଉଁ ସାହିତ୍ୟରେ ଥିବ ସମଷ୍ଟି ହାତରୁ ବ୍ୟକ୍ତିର ପରିପୂର୍ଣ୍ଣ ମୁକ୍ତିଲାଗି ବ୍ୟାକୁଳତା, ବ୍ୟକ୍ତି-ସତ୍ତାକୁ ଜୀବନ ସମାଜର କେନ୍ଦ୍ରୀୟ ଶକ୍ତି ହିସାବରେ ପ୍ରତିଷ୍ଠିତ କରେଇ ଦେବାର ଅଶ୍ରାନ୍ତ ପ୍ରୟାସ, ତାହା ହିଁ ପାଇବ ଆଧୁନିକ ସାହିତ୍ୟର ଗୌରବ ।

ମୁଁ ଏଇ ଆଲୋଚନାରେ ବ୍ୟକ୍ତି-ସତ୍ତାର କଥା ବାରମ୍ବାର ଉଠେଇଛି । ବ୍ୟକ୍ତି-ସତ୍ତା, ବ୍ୟକ୍ତିର ବିଶ୍ୱାସବୋଧ ଓ ବ୍ୟକ୍ତିର ଶକ୍ତି ଏ ଦୁଇଟିର ସମନ୍ୱୟରେ ଗଠିତ ବୋଲି ମୋର ଧାରଣା । ଯେଉଁ ସାହିତ୍ୟରେ ଏଇ ବ୍ୟକ୍ତି-ସତ୍ତାର ଉନ୍ମୋଚନ ଉପରେ ଦୃଷ୍ଟି ଯେତେ ବେଶୀ, ସେହି ସାହିତ୍ୟ ତେତେ ଆଧୁନିକ । ଭାବପ୍ରବଣତାର ବଶବର୍ତ୍ତୀ ନ ହୋଇ ଆମେ ଯଦି ବିଚାର କରୁଁ ଜଣା ଅଧିକେ ଆମେ ହୁଏତ ଆଧୁନିକତାର ଅନ୍ୟାନ୍ୟ ଲକ୍ଷଣ ଆମ ଓଡ଼ିଆ ସାହିତ୍ୟରୁ ପାଇପାରିବୁ । ମାତ୍ର ବ୍ୟକ୍ତିସତ୍ତାର ପ୍ରତିଷ୍ଠା-କାହାଣୀ ବା ତା'ର ଜୟଯାତ୍ରାର ଅକ୍ଷର-ସଂକେତ ମିଳିବା ଖୁବ୍ କଷ୍ଟ ।

ଫକୀରମୋହନଙ୍କ "ଛମାଣ ଆଠଗୁଣ୍ଠ"ରେ ହୁଏତ ଚାଷୀଙ୍କ ଉପରେ ଜମିଦାରଙ୍କ ନିପୀଡ଼ନର ଉଲ୍ଲେଖ ଥାଇପାରେ, ମାତ୍ର ସେଠି ବ୍ୟକ୍ତି ଆପଣାର ବିଶ୍ୱାସ ଓ ଶକ୍ତିକୁ

Digitized by srujanika@gmail.com

ଜାହିର୍ କରିପାରିନି । ପାରଂପରିକ କର୍ମବାଦ ବା ଭାଗ୍ୟଫଳ ଉପରେ ପରିଣାମ ନିର୍ଭର କରିଛି । 'ମାଟିର ମଣିଷ' ଏକ ବିଶେଷ କାଳର ଗାନ୍ଧୀବାଦୀ ଆଦର୍ଶକୁ ପ୍ରଚାର କରିଛି । ବରଜୁ ଜଣେ ପାରଂପରିକ ପୁରୁଷ, ପ୍ରାଚୀନ ସାମାଜିକ ଦର୍ଶନରେ ସେ ବିଶ୍ୱାସୀ । ଛକଡ଼ି ଖୁବ୍ ବ୍ୟକ୍ତିତ୍ୱହୀନ, ନିଜସ୍ୱ ଚିନ୍ତା ତା'ର କାହିଁ ? ସମସ୍ତେ ପରଂପରାକୁ ମାନି ନେଇଛନ୍ତି । ଉପନ୍ୟାସର କାହାଣୀ ଓ ଚରିତ୍ରମାନେ ସମସାୟିକ ଚାହିଦାର ପ୍ରଚାରକ ରୂପେ ବରଂ ସାଂପ୍ରତିକ ସାହିତ୍ୟର ଇଲାକା ଭିତରେ ଆପଣାର ପାଦଚିହ୍ନ ସାଇତି ଦେଇଛନ୍ତି । ଠିକ୍ ଏଇ ଜମିଦାର-ପ୍ରଜା ସଂଘର୍ଷର ଚିତ୍ର କିମ୍ବା ସ୍ୱାଧୀନତା ସଂଗ୍ରାମର ସାମାଜିକ କାହାଣୀ ରଚନା କରିଛନ୍ତି ନିତ୍ୟାନନ୍ଦ ମହାପାତ୍ର ଓ ଡକ୍ଟର ହରେକୃଷ୍ଣ ମହତାବ ସେମାନଙ୍କର ଉପନ୍ୟାସରେ । କାହ୍ନୁଚରଣ ତାଙ୍କ "ଶାସ୍ତି" ଉପନ୍ୟାସରେ ହୁଏତ ସନିଆ ଜରିଆରେ ଏକ ନୂତନ ସମାଜ ଗଠନର ସ୍ୱପ୍ନ ଦେଖିଛନ୍ତି, ଯେଉଁ ସମାଜରେ ଜାତି ପାହ୍ୟା ନ ଥିବ, ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ୍ ବା ଜୋହନକାକା, ରହିମ ଇତ୍ୟାଦି ମିଶି ଗଢ଼ିଥିବେ ଗୋଟିଏ ଜାତି- ସେ ହେଉଛି ମଣିଷ ଜାତି । ଏଇ ଦର୍ଶନ ମଧ ସଫଳ ହୋଇପାରିନି । ଗୋପୀନାଥ ମହାନ୍ତିଙ୍କର ଉପନ୍ୟାସ ହୁଏତ ଏକ ଅନ୍ଧାରି ମୂଳକର ମଣିଷ ଜାତିର ଶାଶ୍ୱତ କାହାଣୀ ଉଦ୍‌ଘାଟିତ କରୁଛି, ପୁଣି ସାଂପ୍ରତିକ ମଣିଷର ଦାନାପାଣିର ସଂଗ୍ରାମ ଓ ସମ୍ଭାବନାକୁ ଟିକିନିଖି ବିଚାର କରିଛି । କିନ୍ତୁ ବ୍ୟକ୍ତିସତାର ଐଶ୍ୱର୍ଯ୍ୟ କେଉଁଠି ସ୍ପଷ୍ଟ ? "ଅମାବାସ୍ୟାର ଚନ୍ଦ୍ର" ବହୁ ଜଟିଳତା ଭିତରେ ମଣିଷକୁ ଦେଖିଛି । କାଉଲ ବହୁ ବ୍ୟକ୍ତିତ୍ୱର ଏକ ସମନ୍ୱୟ । ସେ ବିଶ୍ୱାସ କରିଛି, କେବଳ ମାନବତା ଉପରେ, ପାପ ବା ପୁଣ୍ୟ କିଛି ନୁହେଁ; ମଣିଷ ହିଁ ମଣିଷର ଜୀବନ-ନିର୍ମାତା, ସମାଜ ଏକ ମିଛ ନାଁ । ମଣିଷର ସମଗ୍ର ରୂପଟିକୁ ତା ସ୍ୱଭାବର ସକଳ ଜଟିଳତା ଭିତରେ ଦେଖାଇ ପାରିଛି କାଉଲ୍ । ସେ ବିଶ୍ୱାସ କରିଛି ଆଧୁନିକତାର ଦର୍ଶନରେ, ମାତ୍ର ତହିଁରେ ସମସ୍ତଙ୍କୁ ଲିପ୍ତ କରାଯାଇ ପାରି ନାହିଁ ।

•

ସୁତରାଂ, ଆମ ସାହିତ୍ୟରେ ଯେଉଁ ଆଧୁନିକତା ଆସିଛି ବୋଲି କୁହାଯାଉଛି, ତାହା ଆଧୁନିକତା ନୁହେଁ– ଆଧୁନିକତାର ମିଥ୍ୟାଭାସ, ଆମ ସାହିତ୍ୟ ହିଁ ସମକାଳୀନତାକୁ ରୂପାୟିତ କରିଛି । ଜୀବନ ପକ୍ଷରେ ହୁଏତ କିଛି ବ୍ୟତିକ୍ରମ ଏ ସଂପର୍କରେ ଲକ୍ଷ୍ୟ କରାଯାଏ ।

ଆମ ଜୀବନର ଆଧୁନିକତାର ପଦଚିହ୍ନ ଲକ୍ଷିତ ହେଉଛି, ଫେସନମୋହର ଅନୁକରଣାତ୍ମକ କାର୍ଯ୍ୟ କଳାପରେ । ଏହାର ଦୃଷ୍ଟାନ୍ତ ଖୋଜିବା ଲାଗି ବେଶୀ ବାଟ ଯିବାକୁ ପଡ଼ିବ ନାହିଁ, ଆମେ ସମସ୍ତେ ଊଣା ଅଧିକେ ତହିଁରେ ଗୋଟିଏ ଗୋଟିଏ ଦୃଷ୍ଟାନ୍ତ । ଚଳଚ୍ଚିତ୍ର ଜଗତରୁ ଆମେ ଏଇ ପୋଷାକୀ ଆଧୁନିକତାର ପ୍ରେରଣା ବେଶୀ

Digitized by srujanika@gmail.com

ପାଉଛୁ– ଆମ ଲୋକଙ୍କର ଭସାଣିଆ ମନ ତାକୁଇ ବରଣ କରି ଆଧୁନିକ ବୋଲାଉଛି । ଏଇ ଆଧୁନିକତାକୁ କୁହାଯାଏ– ଅନୁକରଣାତ୍ମକ ଆଧୁନିକତା । ଏତଦ୍‌ଭିନ୍ନ ଆଉ ତିନି ପ୍ରକାର ଆଧୁନିକତାର ପରଚୟ ମିଳେ ଜୀବନରୁ । ପ୍ରତିକ୍ରିୟାତ୍ମକ ଆଧୁନିକତା ଭିତରେ ଆମେ ଦେଖୁ ସମୟର ନବୀନତା ପ୍ରତି ଆହ୍ୱାନ କିମ୍ବା ପ୍ରତିକ୍ରିୟା । କୌଣସି ପରିସ୍ଥିତି ଯଦି ଲୋକଚାହିଦାକୁ ଭୁଲିଯାଇ ନିଜ ବାଟରେ ଚାଲିଗଲା ସେଥିପାଇଁ ଲୋକେ ହେଲେ ପ୍ରତିକ୍ରିୟାଶୀଳ । 'ଲେଭି' ପାଇଁ ପ୍ରତିକ୍ରିୟା କିମ୍ବା ଟିକସ ବୃଦ୍ଧି ପାଇଁ ପ୍ରତିକ୍ରିୟା କିମ୍ବା ଦରଦାମ ଚଢ଼ା, ବେତନ ମିଳୁଛି ଊଣା– ଏଥିପାଇଁ ପ୍ରତିକ୍ରିୟା- ଏ ସବୁତ ଏବର କଥା, ଯଦି ଟିକିଏ ଅତୀତକୁ ଯାଆନ୍ତି ଦେଖିବେ ଯେତେବେଳେ ଆମ ଲୋକଙ୍କ ଭିତରେ ଥିବା କେତୋଟି ବିଚାର ବର୍ଜିତ ବିଶ୍ୱାସ ଓ ସାମାଜିକ ଆଚରଣ, ଯଥା- ସତୀର ସହମରଣ, ମେରିଆବନ୍ଦୀ ଇତ୍ୟାଦିକୁ ଅମାନବୀୟ ବୋଲି ବୁଝି ସମାଜରୁ ଲୋପ କରିଦେବା ପାଇଁ ରାମମୋହନ ରାୟଙ୍କ ଆଧୁନିକ ଦର୍ଶନରେ ଆସ୍ଥା ରଖିଥିବା କର୍ମୀଗଣ ଉଦ୍ୟମ କଲେ, ସେତେବେଳେ ମଧ ଲୋକେ ହୋଇଥିଲେ ପ୍ରତିକ୍ରିୟାଶୀଳ ।

ଏହି ପ୍ରତିକ୍ରିୟାତ୍ମକ ଆଧୁନିକତାରେ ଏକ ପ୍ରକାର ଅସହିଷ୍ଣୁତା ପ୍ରକାଶ ପାଇଥାଏ । କିନ୍ତୁ ପ୍ରତିରୋଧାତ୍ମକ ବା ରେସ୍‌ପନ୍‌ସିଭ ଆଧୁନିକତାରେ ପରିବର୍ତ୍ତିତ ନୂତନ ଚାଲ୍ ବା ରୁଚିବୋଧ ପ୍ରତି ନିର୍ବିରୋଧ ଓ ନିର୍ବିଚାରରେ ଏକ ସପକ୍ଷବାଦୀ ମନୋବୃତ୍ତି ଚେଇଁ ଉଠୁଥିବା ଜାଣିହୁଏ, ଆମ ଜୀବନରେ ଏଇ ତିନୋଟି ଶ୍ରେଣୀର ଆଧୁନିକତାର ଏକ ସମନ୍ୱୟ ଆମେ ଅନୁଭବ କରୁଛୁ । କିନ୍ତୁ ସର୍ଜନାତ୍ମକ ଆଧୁନିକତା, ଯାହାକି କେବେହେଲେ ସମକାଳୀନତାର ଆକର୍ଷଣରେ ମଜ୍ଜି ଯିବାର ଆଶା ରଖିନଥାଏ । ବରଂ କୌଣସି ନିର୍ଦ୍ଦିଷ୍ଟ ଚେତନାକୁ ନେଇ ଭବିଷ୍ୟତର ସ୍ୱରୂପ ଗଢ଼ିବାର ପ୍ରୟାସ ପୋଷିଥାଏ, ତାହା ଏଯାବତ୍ ଆମ ମାଟିରେ ଫଳିତ ହୋଇ ନାହିଁ । ଏହି ସର୍ଜନାତ୍ମକ ଆଧୁନିକତାର ଦର୍ଶନ ହିଁ ବାସ୍ତବତଃ ଆଧୁନିକତାର ଦର୍ଶନ– ଯାହାର ପ୍ରବେଶ ଘଟିଲେ ବ୍ୟକ୍ତି-ସତ୍ତାର ପ୍ଲାବନ ଘଟିବ, ଭାବବିପ୍ଳବ ଆରମ୍ଭ ହୋଇଯିବ, ମଣିଷ ଓ ମାଟି ସମସ୍ତେ ବଦଳିଯିବେ; ତାହା ହୋଇ ନାହିଁ । ଏହାର ଆଗମନର ପ୍ରତିଧ୍ୱନି ଦୂରରୁ ଶୁଣାଯାଉଛି, ମୁଁ ଖୁବ୍ ବିଶ୍ୱାସୀ ଯେ, ଏହାର ଅନୁପ୍ରବେଶ ପାଇଁ କ୍ଷେତ୍ର ପ୍ରସ୍ତୁତ ହୋଇଆସୁଛି । ଦିନେ ଓଡ଼ିଆ ଜନତା ସର୍ଜନାତ୍ମକ ଆଧୁନିକତାର ଅନୁସରଣ ନିଶ୍ଚୟ କରିବ ।



---

(ମୂଲ୍ୟାୟନ-୧, ଜୁଲାଇ, ୧୯୭୬)

Digitized by srujanika@gmail.com

# ସଂପାଦନା ପ୍ରସଙ୍ଗ

## ସଂପାଦନାର ଭୂମିକା :

ସାହିତ୍ୟ-କୃତିର ସଂରକ୍ଷଣ ଓ ପ୍ରସାରଣ ନିମନ୍ତେ ଗ୍ରନ୍ଥ-ସଂପାଦନାର ଆବଶ୍ୟକତା ଅନୁଭୂତ ହୋଇଥାଏ । ଆତ୍ମପ୍ରକାଶ ଉତ୍ତାରୁ ଆତ୍ମପ୍ରସାର ଲାଗି ପ୍ରାୟ ପ୍ରତ୍ୟେକ ସାହିତ୍ୟ-ସୃଷ୍ଟି ସହୃଦୟ-ସମାଜର ପୃଷ୍ଟପୋଷକତା ଲୋଡ଼ିଥାନ୍ତି । କୌଣସି ସାହିତ୍ୟ-ରଚନା କାଳକ୍ରମେ ବିସ୍ମୃତ ଓ ବିଲୁପ୍ତ ହୋଇଯିବା ଆଶଙ୍କାରୁ ତାହାର ସଂରକ୍ଷଣ ଓ ପ୍ରସାରଣ ଅତ୍ୟନ୍ତ ପ୍ରୟୋଜନ ବୋଧହୁଏ । ଅତୀତର ସଂପଦକୁ ବର୍ତ୍ତମାନ ଓ ଭବିଷ୍ୟତର ଦାୟାଦମାନଙ୍କ ପାଇଁ ଯୋଗାଇ ଦେଲାବେଳେ ସଂପାଦନାର କଥା ଉଠେ । ଅପ୍ରକାଶିତ ଲେଖା, ସଂଗ୍ରହ ଓ ସଂକଳନ କରି ଉପାଦେୟତା ଦୃଷ୍ଟିରୁ ପ୍ରକାଶ କଲାବେଳେ ମଧ ସଂପାଦନା ଲୋଡ଼ା ହୋଇଥାଏ । ନିଜର ବା ଅନ୍ୟ କୌଣସି ଲେଖକଙ୍କର କୃତିସମଗ୍ରର ନିର୍ବାଚନ, ବର୍ଗୀକରଣ ଏବଂ ଏକତ୍ର ଗ୍ରନ୍ଥନ ବେଳେ ସଂପାଦନାର ଆଶ୍ରୟ ନିଆଯାଇଥାଏ । ମୂଲ୍ୟବାନ କୌଣସି ଐତିହାସିକ ଦଲିଲ ବା ଅକ୍ଷର କୃତିର ପାଠ୍ୟପ୍ରକାଶ, ସମୟୋପଯୋଗୀ ମୂଲ୍ୟାୟନ ବେଳେ ସମ୍ପାଦନାର ମାଧ୍ୟମ ଗ୍ରହଣ କରାଯାଇଥାଏ ।

ସାହିତ୍ୟ-ରଚନାର ଆକାର-ପ୍ରକାର ଏତେ ବିପୁଳ ଓ ଅପରିମିତ ଯେ ଏହାର ବିଚିତ୍ର ରସଭୋଜ୍ୟ ସବୁ ଜିଜ୍ଞାସୁ ପାଠକ-ସମାଜ ପାଇଁ ହାତପାଆନ୍ତାରେ ଯୋଗାଇ ଦେବା ସେତେ ସହଜ ନୁହେଁ । ଦେଶର ସାହିତ୍ୟ କେତେ ପରିମାଣରେ ଲେଖାଯାଇଛି, କେଉଁ କେଉଁ ଶୈଳୀରେ ରଚିତ ହୋଇଛି, ଦେଶର ବିଭିନ୍ନ ଭୌଗୋଳିକ ପ୍ରାନ୍ତରରେ ଏହା କିପରି ଆତ୍ମପ୍ରକାଶ କରିଛି– ତାହାର ହିସାବ ଜାଣିବା ଓ ଖୋଜାଲୋଡ଼ା କରି ପଢ଼ିବା ସାଧାରଣ ପାଠକ ପକ୍ଷରେ ସହଜସାଧ ନୁହେଁ । ସାରା ଦେଶର କୋଣାନୁକୋଣରେ ପ୍ରଜ୍ୱଳିତ ଭାବ-ଶିଖାର ସ୍ଫୁଲିଙ୍ଗକୁ ବହନ କରିଥିବା ରଚନାବଳୀର

Digitized by srujanika@gmail.com

ଅନ୍ତରାତ୍ମାରେ ଜାତୀୟ ଜୀବନର ସ୍ରୋତ, ସାଂସ୍କୃତିକ-ରସଧାରା, ସମାଜର ଭାବମୂର୍ତ୍ତି ଏବଂ ଭବିଷ୍ୟତ ଦୃଷ୍ଟିର ସଂକେତ କିପରି ପ୍ରତିବିମ୍ବିତ ହୋଇଛି, ତାହାକୁ ସୀମିତ ଆୟତନ ଭିତରେ ଖୋଜିଲୋଡ଼ି ଅଧ୍ୟୟନ କରିବା ସାଧାରଣ ପାଠକଙ୍କ ପକ୍ଷରେ ସହଜ ନୁହେଁ । ପ୍ରଯତ୍ନ ବିନା ଏ କ୍ଷେତ୍ରରେ ଦେଶର ବୌଦ୍ଧିକ ବିଭବ ଓ ଜାତୀୟ ଚିନ୍ତନର ପରିଚୟ କୌଣସି ସହଜଲଭ୍ୟ ସୂତ୍ରରୁ ମଧ ପାଇବା ସମ୍ଭବ ନୁହେଁ । ଏଥିପାଇଁ ଆବଶ୍ୟକ ଆପାତ ସମ୍ବନ୍ଧଯୁକ୍ତ ନାନାଦି ରଚନାର ସଂପାଦନା । ଏହା ଏକକ ଗ୍ରନ୍ଥରେ ସଂଯୋଜିତ ହୋଇପାରେ କିମ୍ବା ବିଷୟ-ସମ୍ବନ୍ଧକୁ ଚାହିଁ ବିବିଧ ଖଣ୍ଡରେ ପରିବେଷିତ ହୋଇପାରେ ।

ନାନାପ୍ରକାରର ସାହିତ୍ୟ-କୃତିରୁ ମହତ୍ତ୍ୱପୂର୍ଣ୍ଣ ଓ ପ୍ରତିନିଧି ସ୍ଥାନୀୟ ରଚନାରାଜି ସଂଗ୍ରହ ଓ ସଂକଳନ କରି ସଂପାଦକ, ଦେଶର ବୃହତ୍ତର ପାଠକ-ସମାଜ ଉଦ୍ଦେଶ୍ୟରେ ତାହା ପରିବେଷଣ କରିବା ଦ୍ୱାରା ସାହିତ୍ୟର ଅନନ୍ତ ସମୁଦ୍ରକୁ ବେଳାଭୂମିରୁ ମର୍ମ୍ମ ଦେଇ ଅନୁଭବ କରିବାର ସୁଯୋଗ ଅନୁରାଗୀମାନଙ୍କୁ ସହଜ-ଲଭ୍ୟ ହୋଇଥାଏ । କ୍ଲାସିକ୍ ରଚନା ସହିତ ପରିଚିତ ହେବା କଷ୍ଟକର ହୁଏ ନାହିଁ କିମ୍ବା ଦେଶର ଚନ୍ତନ-ସୂତ୍ରଟିକୁ ଧରିବା ଓ ମନନର ମାନଚିତ୍ର କଳନା କରିବାରେ ବିଶେଷ ଅସୁବିଧା ଉପୁଜେ ନାହିଁ । ଏହା ଯଦି ପ୍ରମାଦ-ଶୂନ୍ୟ, ପରିଚ୍ଛନ୍ନ, ପ୍ରାମାଣିକ, ସତ୍ୟବଦ୍ଧ ହୋଇଥାଏ, ତେବେ ଏହାର ସଂପାଦନା ମାନ ପ୍ରତି ଆସ୍ଥା ଆସେ, ନିର୍ଭରଯୋଗ୍ୟ ବୋଲି ଧାରଣା ଜନ୍ମେ । ଅକ୍ସଫୋର୍ଡ, ହାର୍ଭାର୍ଡ ପ୍ରଭୃତି ବିଶ୍ୱବିଦ୍ୟାଳୟ ତରଫରୁ ପ୍ରକାଶିତ ଓ ସଂପାଦିତ ବିଶ୍ୱ-ସାହିତ୍ୟର ବିବିଧ ରଚନା, ଆମ ଦେଶର ବିଶିଷ୍ଟ ଗବେଷଣା-ସଂସ୍ଥାମାନଙ୍କରୁ ପ୍ରକାଶିତ ପ୍ରାଚ୍ୟ-ବିଦ୍ୟା ବିଷୟକ ଗ୍ରନ୍ଥ ସମୂହ ଏବଂ ଜର୍ମାନ ଗବେଷକ ମାକ୍ସ ମୁଲାରଙ୍କର 'Sacred Books of the East' ପ୍ରଭୃତିକୁ ଗ୍ରନ୍ଥ-ସଂପାଦନାର ସଫଳ ଦୃଷ୍ଟାନ୍ତ ରୂପେ ଗ୍ରହଣ କରାଯାଇପାରେ । ଏମାନଙ୍କର ଲେଖା ଓ ଲେଖକଗଣ ଅମରତ୍ୱ ଲାଭ କରିଛନ୍ତି କହିଲେ ଚଳେ ।

ଲେଖକ, ନିଜ ଲେଖାର ମୂଲ୍ୟକୁ ଯେମିତି ବୁଝିଥାଆନ୍ତି, ସଂପାଦକଙ୍କ ବିଚାର ବିବେଚନାରେ ହୁଏତ ତାହା ବହୁଗୁଣିତ ହୋଇଥାଏ କିମ୍ବା ନ୍ୟୂନବୋଧ ହୋଇପାରେ । ସଂସ୍କୃତଜ୍ଞ ଫରାସୀ ପଣ୍ଡିତ ଶେଜି, କବି କାଳିଦାସଙ୍କର ଶକୁନ୍ତଳାର ଏକ ସଂସ୍କରଣ ସଂପାଦନା କରି ୧୮୨୦ ଖ୍ରୀଷ୍ଟାବ୍ଦରେ କାବ୍ୟଟିକୁ ବିଶ୍ୱ-ସାହିତ୍ୟରେ ମାନ୍ୟତା ପ୍ରଦାନ କରିଥିଲେ । ଅବଶ୍ୟ ଏହାର ବହୁ ପୂର୍ବରୁ ୧୭୮୯ରେ ସାର୍ ଉଇଲିୟମ୍ ଜୋନସ୍‌ଙ୍କର ଇଂରେଜୀ ଅନୁବାଦ କବି ଗ୍ୟେଟେଙ୍କୁ ମୁଗ୍ଧ କରିଥିଲା ଏବଂ ସେ 'ଶକୁନ୍ତଳା' କବିତା ଲେଖିବା ପାଇଁ ଉଦ୍‌ବୁଦ୍ଧ ହୋଇଥିଲେ (୧୭୯୧) । ଏହାହିଁ ହେଉଛି ସମ୍ପାଦନା ଓ ଅନୁବାଦ କର୍ମର ଚରମ ସଫଳତା । ସାହିତ୍ୟକୁ ଜୀବନଚର୍ଯ୍ୟାର ପାଥେୟ ରୂପେ ପରିଚିତ କରାଇବାରେ, ସ୍ରଷ୍ଟା-ମାନସର ଅନ୍ତର୍ବେଦୀରୁ ଉତ୍ତୋଳିତ କରି ତାହାକୁ

Digitized by srujanika@gmail.com

ବିଶ୍ୱ-ମାନସର ମହାବେଦୀ ଆଡ଼କୁ ଘେନିଯିବାରେ ସଂପାଦନା ହିଁ ସମର୍ଥ ହୋଇଥାଏ ।

କବି ବୁଦ୍ଧଦେବ ବସୁ କହନ୍ତି– କୌଣସି ବହୁପ୍ରସୂ ଲେଖକଙ୍କ ପକ୍ଷରେ ସୁନିର୍ବାଚିତ ସଂକଳନ ହେଉଛି ଏକ ଚିକିତ୍ସା । ଏହାର ଅର୍ଥ ହେଲା, ଜଣେ ଅୟୁତମନା ବହୁପ୍ରସୂ ସ୍ରଷ୍ଟାର ସବୁ ଲେଖାକୁ ପଢ଼ି ତାକୁ ଚିହ୍ନିବା ଏବଂ ତହିଁରୁ କିତା କିତା କରି ଭାବ ଉପଲବ୍ଧ କରିବା ପାଠକମାନଙ୍କ ପକ୍ଷରେ ସହଜ ବ୍ୟାପାର ନୁହେଁ । ଏଥିପାଇଁ ଲୋଡ଼ା ବହୁପ୍ରସୂ ଲେଖକଙ୍କର ପ୍ରତିନିଧି ସ୍ଥାନୀୟ ସଂକଳନ-ସଂପାଦନା । ସାରସ୍ୱତ ମଧ୍ୟସ୍ଥିତୁଲ୍ୟ ସଂପାଦକ ହିଁ ଲେଖକ ଓ ପାଠକଙ୍କୁ ନିକଟବର୍ତ୍ତୀ କରାଇଥାନ୍ତି ।

ସଂକଳନ ଓ ସଂପାଦନା ଏକା କଥା ନୁହେଁ; ସଂକଳନର ପ୍ରାଣଶକ୍ତି ହେଉଛି ସଂପାଦନା । ସଂପାଦନା ସ୍ପର୍ଶ ବିହୁନେ ରଚନାବଳୀର ସଂକଳନ, ଅଶବ୍ଦ ଶବ୍ଦ ମାତ୍ର; ଯେତିକି ପ୍ରକାଶ୍ୟ ତତୋଧିକ ଗୋପ୍ୟ ଥିଲାପରି ମନେହୁଏ । ସଂପାଦନାର ପ୍ରଲେପ ବଳରେ ସଂକଳିତ-ବସ୍ତୁ ଜ୍ୟୋତିଷ୍ମାନ ହୋଇ ଉଠନ୍ତି । ପ୍ରାଚୀ ସମିତି ସମ୍ପାଦିତ ପ୍ରାଚୀନ ଗ୍ରନ୍ଥ ଏବଂ ତତ୍ ପୂର୍ବବର୍ତ୍ତୀ ସଂକଳୟିତା– ଗୌରୀଶଙ୍କର ରାୟ, ଗୋବିନ୍ଦ ରଥ ଇତ୍ୟାଦିଙ୍କର ପ୍ରାଚୀନ ପୋଥି ସଂକଳନକୁ ଦୃଷ୍ଟାନ୍ତ ରୂପେ ଗ୍ରହଣ କରାଯାଇପାରେ । ପୁନଶ୍ଚ ଶିବପ୍ରସାଦ ଦାଶ (୧୯୦୧-୧୯୭୬)ଙ୍କର 'ଗଙ୍ଗାଧର ପତ୍ରାବଳୀ' (୧୯୫୫) ଏବଂ ଡକ୍ଟର ଦେବୀ ପ୍ରସନ୍ନ ପଟ୍ଟନାୟକଙ୍କର 'କବିଲିପି' (୧୯୫୭)– ଏଇ ଦୁଇଟି ଗ୍ରନ୍ଥ ନିରୀକ୍ଷା କଲେ କିଏ ସଂକଳନ ଓ କିଏ ସଂପାଦିତ, ତାହା ବୁଝିହୁଏ । 'ଗଙ୍ଗାଧର ପତ୍ରାବଳୀ' ସଂକଳନର ସୀମା ଟପି ବି ନାହିଁ; 'କବିଲିପି' ସଂକଳିତ ସାମଗ୍ରୀଠାରେ ଆଉ କିଛି ଯୋଗ କରି ପତ୍ର-ସାହିତ୍ୟର ପରିସର ବୃଦ୍ଧି କରିଛି, ଅଦେଖା ଆୟତନ ଆଡ଼କୁ ପାଠକଙ୍କୁ ଘେନିଯାଇଛି । ପତ୍ରଗୁଡ଼ିକର ତଥ୍ୟାନୁଶୀଳନ ଆବେଦନର ଶକ୍ତି ବିଶ୍ଳେଷଣ, ପତ୍ର ଲେଖକଙ୍କର ପାରସ୍ପରିକ ସଂପର୍କ, ସେମାନଙ୍କ ମାନସିକତାର ଆଲୋଚନା, ଓଡ଼ିଶାର ତତ୍କାଳୀନ ସାଂସ୍କୃତିକ ବାତାବରଣରେ ସେମାନଙ୍କର ଭୂମିକା ଇତ୍ୟାଦି ନାନା ପ୍ରସଙ୍ଗର ଉଲ୍ଲେଖ ସଂକଳିତ କବିଲିପିର ଗୁଣାତ୍ମକ ମୂଲ୍ୟ ବୃଦ୍ଧି କରିଛି । ଏହା 'ସଂପାଦନା-ଦୃଷ୍ଟି' ପ୍ରେରିତ ।

ସଂପାଦନା-କର୍ମ ବିଶେଷ ଦୃଷ୍ଟିକୋଣର ଅପେକ୍ଷା ରଖେ । ଏହି 'ଦୃଷ୍ଟିକୋଣ' ହାସଲ କରିବା ପ୍ରାୟ ନିର୍ଭର କରେ, ବହୁପାଠିତା, ନିରପେକ୍ଷତା ଓ ମୂଲ୍ୟାୟନ କୌଶଳ ଉପରେ । ବହୁପାଠୀ ସଂପାଦକ ଆହୃତ ଜ୍ଞାନର ବିନିଯୋଗରେ ସଂକଳିତ ସାମଗ୍ରୀକୁ ସଂପାଦନା କଲାବେଳେ ଲେଖାର ଗୁଣାଗୁଣ ବିକଶି ଉଠେ । ଲେଖକ-ନିକଟରେ ଏହା ଯେତିକି ମୂଲ୍ୟ ପାଇଥିଲା, ସଂପାଦକଙ୍କର ମାନଦଣ୍ଡରେ ଏହାର 'ପରିଚୟ-ବ୍ୟାପ୍ତି' ସେତିକି ସାଧିତ ହେଲା । ନାନା ବିଦ୍ୟାର ତଥ୍ୟାନୁଷଙ୍ଗରୁ ମୂଳ ରଚନାଟିର ବ୍ୟକ୍ତିତ୍ୱ ବହୁଗୁଣିତ ହୋଇଗଲା କହିଲେ ଚଳେ । ଏପରି ସ୍ଥଳେ ସଂପାଦକଙ୍କର ଭୂମିକା ହେଉଛି, ଜଣେ ବହୁଦର୍ଶୀ ସଚେତନ ପାଠକ ଓ ସମୀକ୍ଷକଙ୍କର

Digitized by srujanika@gmail.com

ଭୂମିକା । ସଂପାଦକ ହେଉଛନ୍ତି ମୂଳ ରଚନାର ପ୍ରଥମ ବିଦଗ୍ଧ ପାଠକ ଓ ଦ୍ୱିତୀୟ ସ୍ରଷ୍ଟା; କାରଣ ଲେଖକଙ୍କର ରଚନାକୁ ପୁନର୍ଜୀବନ ଦେବାରେ ଏବଂ ପ୍ରତିଷ୍ଠାର ପଥ ସଜାଡ଼ିବାରେ ତାଙ୍କର ଅବଦାନ ବେଶୀ ।

## ସଂପାଦନାର ପରିସର :

ସଂପାଦନାର ପରିସର ଖୁବ୍ ବ୍ୟାପକ । ଏହା ସର୍ଜନାତ୍ମକ ମୌଳିକ ଲେଖାରୁ ସଂବାଦ-ଲେଖା ପର୍ଯ୍ୟନ୍ତ ବିବିଧ ବିଷୟକୁ ଆପଣା ପରିସରଭୁକ୍ତ କରିପାରେ । ଏକକ ବା ଏକାଧିକ ଲେଖକଙ୍କୁ ଗ୍ରନ୍ଥ-ବିଶେଷରେ ସ୍ଥାନ ଦେଇପାରେ; ଆକର ବା କୋଷଗ୍ରନ୍ଥ ପ୍ରଣୟନ ଅବସରରେ ବିଭିନ୍ନ ସ୍ୱାଦର ବହୁ ସନ୍ଦର୍ଭକୁ ମଧ୍ୟ ଗ୍ରଥିତ କରିପାରେ । ସାହିତ୍ୟ, ସମାଜତତ୍ତ୍ୱ, ଦର୍ଶନ, ମନସ୍ତତ୍ତ୍ୱ, ଇତିହାସ, ରାଜନୀତି, ବିଜ୍ଞାନ, ଅର୍ଥନୀତି, ନୃତତ୍ତ୍ୱ ଇତ୍ୟାଦି ଜ୍ଞାନ-ବିଜ୍ଞାନର ନାନା ଭୂମିରୁ ସାର ଉପାଦାନ ସଂଗ୍ରହ କରି ସଂପାଦନା କ୍ଷେତ୍ରକୁ ଅଣାଯାଇପାରେ । ସଂପାଦନାର କ୍ଷେତ୍ର ବଡ଼, ଉପାଦାନ ମଧ୍ୟ ବିପୁଳ ଓ ବୈଚିତ୍ର୍ୟମୟ । ତଥାପି ବୈଚିତ୍ର୍ୟ ମଧ୍ୟରେ ଐକ୍ୟ ସ୍ଥାପନ ହିଁ ସମ୍ପାଦନାର ମୂଳ ଲକ୍ଷ୍ୟ । ଚଳଚ୍ଚିତ୍ର ବା ଟି.ଭି. ପାଇଁ ଉପାଦାନ-ପ୍ରସ୍ତୁତି ବେଳେ ଯେଉଁ 'ପଂସାଦନା-ଦୃଷ୍ଟି' ଲୋଡ଼ା, ପରିସଂଖ୍ୟାନ ରିପୋର୍ଟ ବା କୌଣସି ଶିକ୍ଷ ପ୍ରତିଷ୍ଠାନର ବୁଲେଟିନ୍ ସଂପାଦନା ବେଳେ ଭିନ୍ନ ଦୃଷ୍ଟିରୁ ବିନିଯୋଗ ଆବଶ୍ୟକ । ସେହିପରି ସାହିତ୍ୟ ରଚନାବଳୀ ସଂପାଦନା ଓ ଆକର ବା କୋଷଗ୍ରନ୍ଥ ସଂପାଦନା ମଧ୍ୟ ଏକା ଶୈଳୀରେ ହୁଏ ନାହିଁ । ତେଣୁ ସଂଗୃହୀତ ଉପାଦାନର ମୂଳ ଚରିତ୍ର ଓ ବିଷୟ-କ୍ଷେତ୍ରକୁ ଚାହିଁ 'ସଂପାଦନା' ତଦୁପଯୋଗୀ ରୀତି ଅନୁସରଣ କରିଥାଏ । କ୍ଷେତ୍ର ବିଚାରରେ ଭିନ୍ନତା ଥିଲେ ବି, କିମ୍ବା ନିବନ୍ଧନ ପ୍ରଣାଳୀରେ ଊଣାଅଧିକେ ଫରକ ରହୁଥିଲେ ମଧ୍ୟ ସଂପାଦକର ଆଖି; ଏହାର ନିରାତଙ୍କ ସତର୍କ ଦୃଷ୍ଟି ହିଁ ପ୍ରତ୍ୟେକ କ୍ଷେତ୍ରରେ ଏକାନ୍ତ ଅପରିହାର୍ଯ୍ୟ । ଏହି ଦୃଷ୍ଟିରୁ ଶକ୍ତି ବଳରେ ସମ୍ପାଦନା ବେଳେ ଅନୁସୃତ ବିଧାନ ସବୁ ଶକ୍ତିଶାଳୀ ହୋଇଯାଆନ୍ତି । ଏହି ପ୍ରସଙ୍ଗରେ ସଂପାଦନା-କର୍ମର ପ୍ରଚଳିତ କେତୋଟି 'ବିଧାନ'ର ସୂଚନାତ୍ମକ ଉଲ୍ଲେଖ ଏଠାରେ କରାଯାଇପାରେ ।

## ସଂପାଦନା ବିଧି :

ଦୃଷ୍ଟିକୋଣ ଠିକ୍ କରି ସଂପାଦକ, ସଂପାଦନାରେ ପ୍ରବେଶ କରନ୍ତି; କାରଣ ଏହି ଦୃଷ୍ଟିକୋଣଟି ହେଉଛି ତାଙ୍କ ପାଇଁ ପଥ ଦିଶାରି । ଦୃଷ୍ଟିକୋଣରୁ ମାନଦଣ୍ଡର ଠିକଣା ମିଳେ । ତଦନୁଯାୟୀ ପୂର୍ବରୁ ସଂଗୃହୀତ ସାମଗ୍ରୀକୁ ଚାହିଁ ସେ କ୍ଷେତ୍ରଟିଏ ପ୍ରସ୍ତୁତ କରନ୍ତି, କ୍ଷେତ୍ରକୁ ଚାହିଁ ସଂପାଦନାର ବିଧି ନିର୍ଦ୍ଧାରିତ ହୁଏ । ଏହା ଯଦି ସାହିତ୍ୟ-କ୍ଷେତ୍ରର ହୋଇଥାଏ, ତେବେ ଏହାର ବିଭିନ୍ନ ବିଭାଗର ପ୍ରବୃତ୍ତି ଅନୁଯାୟୀ ସଂପାଦନାର କୌଶଳ ନିରୂପିତ ହୁଏ । ସମ୍ପାଦନା ବେଳେ;

Digitized by srujanika@gmail.com

୧.୧ : ସଂଗୃହୀତ ଉପାଦାନର ବର୍ଗୀକରଣ, ଐତିହାସିକ କ୍ରମରେ ସଜ୍ଜୀକରଣ ଏବଂ ପ୍ରତ୍ୟେକ ରଚନାର ଉତ୍ସ ସନ୍ଧାନ ଉପରେ ବିଶେଷ ଧ୍ୟାନ ଦିଆଯାଇପାରେ ।

୧.୨ : ବିଭିନ୍ନ ବିଭାଗରେ ଲେଖାଗୁଡ଼ିକୁ ସଜାଇ ସାରିଲା ପରେ ପ୍ରତ୍ୟେକ ବିଭାଗ ସଂପର୍କରେ ଏକ ପରିଚୟାତ୍ମକ ବିବରଣୀ ସଂଯୋଗ କରିବା ଆବଶ୍ୟକ । କାରଣ ଲେଖାବଳୀର ଚରିତ୍ର ଜାଣିବା ପାଇଁ ଏହା ସାହାଯ୍ୟ କରେ । ଯଦି କୌଣସି ଲେଖକଙ୍କର ବିଭିନ୍ନ କିସମର ଲେଖା ଯଥା- ଗଳ୍ପ, କବିତା, ପ୍ରବନ୍ଧ ଇତ୍ୟାଦିର ସଂକଳନ କରାଯାଉଥାଏ, ତେବେ ପ୍ରତ୍ୟେକ ବିଭାଗର ଆଦ୍ୟ କଥନୀ ରୂପେ ପରିଚୟାତ୍ମକ ରଚନାଟିଏ ସଂଯୋଜିତ ହେବା ଦରକାର । ତହିଁରୁ ପାଠକମାନେ ଲେଖା ପ୍ରତି ଅନୁକୂଳ (ପ୍ରାଥମିକ) ଧାରଣା ସଂଗ୍ରହ କରିବେ ।

୧.୩ : କୌଣସି ଲେଖାର ବକ୍ତବ୍ୟରେ ଭିନ୍ନ ମତ ଥିଲେ ସମ୍ପାଦକ ଟିପ୍‌ପଣୀ ଆକାରରେ ନିଜ ମତର ଉଲ୍ଲେଖ କରିପାରନ୍ତି, କିମ୍ବା ସେହି ମତ ସହିତ ସମତୁଲ ମତ ଯଦି ପୂର୍ବରୁ ପ୍ରକାଶ ପାଇଥାଏ, ତା'ର ଉଲ୍ଲେଖ ମଧ୍ୟ କରିପାରନ୍ତି । ଏହାଦ୍ୱାରା ପାଠକମାନଙ୍କର ଚିନ୍ତାର ପରିସର ବୃଦ୍ଧି ପାଏ ।

୧.୪ କାବ୍ୟ-କବିତାର ସଂକଳନ ବେଳେ ମତ ବା ମତାନ୍ତରର ପରିଚୟ ଦେବାର ସୁଯୋଗ ନାହିଁ । କିନ୍ତୁ ପାଠ ଓ ପାଠାନ୍ତରର ଉଲ୍ଲେଖ ରଖିବା ବିଧି ସମ୍ମତ । ସାଦୃଶ୍ୟ-ସୂଚକ ପଦ୍ୟାଂଶର ଉଲ୍ଲେଖ ଟିପ୍‌ପଣୀରେ କରିବା ମଧ୍ୟ ଅସଂଗତ ନୁହେଁ । କାବ୍ୟ-କବିତାରେ ପ୍ରକାଶ ପାଇଥିବା କୌଣସି କିମ୍ବଦନ୍ତୀ, ପୌରାଣିକ ଉପାଦାନ, ଅପରିଚିତ ସ୍ଥାନ, ଐତିହାସିକ କ୍ଷେତ୍ର ଓ ନାମର ସୂଚନା ପ୍ରଭୃତି ସଂପାଦକଙ୍କ ଟିପ୍‌ପଣୀରେ ସ୍ଥାନ ପାଇବା ବିଧି । ଶବ୍ଦାବଳୀର ଅର୍ଥାନୁସାରୀ ଟୀକା ମଧ୍ୟ ଏଥିରେ ସଂଯୁକ୍ତ ହୋଇଥାଏ ।

୧.୫ : ଏକକ ଲେଖକଙ୍କର ରଚନାବଳୀ ସଂପାଦନା ବେଳେ ଲେଖକଙ୍କର ରଚନାରେ ଯଦି ପୁନର୍ଲିଖନର କିଛି ନିଦର୍ଶନ ମିଳୁଥାଏ, ଅର୍ଥାତ୍ କୌଣସି ଲେଖା ପ୍ରଥମେ ପ୍ରକାଶ ପାଇଲା ବେଳେ ଯେମିତି ଥିଲା ପରେ ଯଦି ସେହି ଲେଖାଟି ପୁନର୍ଲିଖିତ ହୋଇ ପରିବର୍ତ୍ତିତ ହୋଇଥାଏ, ତାହାହେଲେ ସମ୍ପାଦକ ଗ୍ରନ୍ଥ ସଂକଳନ ବେଳେ ଏହାକୁ ସଂଗ୍ରହ କରି ସମ୍ପାଦନାରେ ଅନ୍ତର୍ଭୁକ୍ତ କରିବା ଉଚିତ । ଏହାଦ୍ୱାରା କବି ମନରେ ଘଟିଥିବା ଭାବାନ୍ତର ଓ କାବ୍ୟ-କଳାର ବିନ୍ୟାସ-ରୀତି ସମ୍ପର୍କରେ କିଛି ଧାରଣା ସଂଗ୍ରହ କରିହୁଏ । କବି ଗଡ଼ନାୟକଙ୍କର 'ମାଟି' କବିତା କେତେବାର ପୁନର୍ଲିଖିତ ହୋଇ ପ୍ରକାଶ ପାଇଛି । ପ୍ରଥମ ଲିଖିତାଂଶଠାରୁ ପରବର୍ତ୍ତୀ ଅଂଶଗୁଡ଼ିକ ଭିନ୍ନ । ସେହିପରି Waste Land, Savitri, ଗୀତାଞ୍ଜଳି ଇତ୍ୟାଦି ପୁନର୍ଲିଖିତ ହୋଇଛି । ମୂଳ ଲେଖା ଓ ପୁନର୍ଲିଖିତ ଲେଖାର ଆଲୋକ ଚିତ୍ର ସଂପାଦକଙ୍କର ସଂକଳନରେ ସ୍ଥାନ ପାଇବା ଯୋଗ୍ୟ ।

Digitized by srujanika@gmail.com

୧.୬ : ଅପର ପକ୍ଷରେ ଅଣ-ସାହିତ୍ୟିକ ରଚନା– Documentary Reports, ବିବରଣୀର ପ୍ରତିଲିପି ଇତ୍ୟାଦି ସଂପାଦନା ବେଳେ ପ୍ରାୟ ଅନ୍ୟାନ୍ୟ ସଂଯୋଜନାର ଆବଶ୍ୟକତା ପଡ଼େ ନାହିଁ ।

୨.୧ : ଇତିହାସ-ବୋଧ ଓ ସୌନ୍ଦର୍ଯ୍ୟବୋଧ ଦ୍ୱାରା ସାଧାରଣତଃ ଉଚ୍ଚକୋଟୀର ସଂପାଦନ କର୍ମ ପରିଚାଳିତ ହୋଇଥାଏ । ଇତିହାସ-ବୋଧରୁ ତଥ୍ୟ ଓ ଉତ୍ସସନ୍ଧାନ ଏବଂ ସୌନ୍ଦର୍ଯ୍ୟବୋଧରୁ ସାହିତ୍ୟ-ଗୁଣର ବିଚାର-ବିବେଚନା ଲାଗି ପ୍ରବୃତ୍ତି ଜାଗେ । ଇତିହାସ-ବୋଧ ଦ୍ୱାରା ଅନୁପ୍ରେରିତ ସଂପାଦନା ବୃତ୍ତି, ଲେଖା ଓ ଲେଖକଙ୍କର ସମୟ-କ୍ରମ ଉପରେ ଯେପରି ଦୃଷ୍ଟି ଦେଇଥାଏ, ସାହିତ୍ୟର କଳାତ୍ମକ ମୂଲ୍ୟ ବା ବୈଶିଷ୍ଟ୍ୟ ପ୍ରତି ସେପରି ଧ୍ୟାନ ଦିଏ ନାହିଁ । ଫଳରେ କାଳାନୁଯାୟୀ ଲିଖିତ ଓ ପ୍ରକାଶିତ ଲେଖା ଓ ଲେଖକଙ୍କୁ ସଂକଳନରେ ସ୍ଥାନ ଦେବାର ଅଭ୍ୟାସ ଚରିତାର୍ଥ ହୁଏ । ଏପରି ଦୃଷ୍ଟିକୋଣ ଆମ ଭାଷାର ସାହିତ୍ୟ-ସଂପାଦନାରେ ସର୍ବତ୍ର ଦେଖାଯାଉଛି । କବିତା, ଗଳ୍ପ, ପ୍ରବନ୍ଧ ଇତ୍ୟାଦି ସଂକଳନ ସଂପାଦନା କଲାବେଳେ ସମ୍ପାଦକଗଣ ଧ୍ୟାନ ଦେଉଛନ୍ତି ଯେପରି ଅଧିକ ସଂଖ୍ୟକ ଲେଖକ ଏଥିରେ ସ୍ଥାନ ପାଆନ୍ତୁ । ଯଦି ନ ହେଉଛି, ତେବେ ସଂପାଦିତ ଗ୍ରନ୍ଥଟିର ପ୍ରକାଶ ପରେ ଲେଖକ ମହଲରୁ ପ୍ରତିକ୍ରିୟା ପ୍ରକଟିତ ହେଉଛି । ଅତୀତରେ ଏପରି ଘଟଣା ଅନେକ ଘଟିଛି । କିନ୍ତୁ ଏହା ଶୁଦ୍ଧ ସାହିତ୍ୟ-ସଂପାଦନାର ମୌଳିକ ରୀତି ନୁହେଁ ।

୨.୨ ସୌନ୍ଦର୍ଯ୍ୟବୋଧ ଦ୍ୱାରା ଅନୁପ୍ରେରିତ ସାହିତ୍ୟ-ସଂପାଦନା ରୀତି ହିଁ ପ୍ରକୃତ ସଂପାଦନା । ସାହିତ୍ୟ-ଗୁଣ ବା ନାନ୍ଦନିକ ମୂଲ୍ୟକୁ ଚିହ୍ନି ସଂଗୃହୀତ ସାହିତ୍ୟ ବସ୍ତୁକୁ ସଂପାଦନାର ପରିସରଭୁକ୍ତ କରିବା ହିଁ ସଂପାଦନାର ମୌଳିକ ନୀତି । ଏଥିପାଇଁ ସଂପାଦକ ପ୍ରମାଦଶୂନ୍ୟ, ନିର୍ଭୀକ ଓ ସ୍ୱଚ୍ଛଚେତା ଜ୍ଞାନୀ ଏବଂ ରସାମୋଦୀ ଆଲୋଚକ ହେବା ଚାହି । ଏହି ଗୁଣରେ ଗୁଣୀ ସଂପାଦନା ହିଁ ଯେକୌଣସି ସାହିତ୍ୟର ମାନକୁ ସଂରକ୍ଷିତ ଓ ପ୍ରସାରିତ କରିପାରେ ।

ଆମେ ଅନୁଭବ କରୁଁ, ଏକତ୍ର ଗ୍ରନ୍ଥନ ବା ସଂକଳନ, ସଂପାଦନା ନୁହେଁ । ଗୁନ୍ଥି ଦେବାରେ ଶ୍ରମ ଅଛି ସତ, ଶିଳ୍ପ ନାହିଁ । Artisan ଓ Artist ଭିତରେ ରହିଥିବା ତଫାତକୁ ସଂକଳକ ଓ ସଂପାଦକଙ୍କଠାରେ ଲକ୍ଷ୍ୟ କରାଯାଇପାରେ । ସଂପାଦକ ଜଣେ ଆର୍ଟିଷ୍ଟ; ସଂକଳକ ଆର୍ଟିଜାନ୍ । ବୌଦ୍ଧିକ ଓ ନାନ୍ଦନିକ- ଉଭୟ ବୃତ୍ତିର ମଧୁର ସଂଯୋଗ ସଂପାଦକଙ୍କ ମାନସ-ଭୂମିରେ ଆମେ ଲକ୍ଷ୍ୟ କରିଥାଉଁ; ତାହାରି ଫଳଶ୍ରୁତି ହେଉଛି ସାର୍ଥକ ସଂପାଦନା ।



---

(ଏଷଣା/୪, ମାର୍ଚ୍ଚ-୧୯୮୨)

Digitized by srujanika@gmail.com

# ଗବେଷଣାର ସରହଦ ଓ ବିଷୟ ପରିକଳ୍ପନା

ସାହିତ୍ୟ ଗବେଷଣା,ଗଭୀର ଅନ୍ତର୍ନିରୀକ୍ଷା, ପ୍ରଶାନ୍ତ ଅବଗାହନ ଓ ପ୍ରଶସ୍ତ ବିଦ୍ୟାଧିଷଣାର ସାଧନ-କର୍ମ । ସହଜ ପ୍ରାପ୍ତି ଓ ସ୍ୱଚ୍ଛ ସିଦ୍ଧି ସୂଚକ ଫଳଶ୍ରୁତି ଏହାର ଉଦ୍ଦେଶ୍ୟ ନୁହେଁ । ଅନ୍ଧାରିତ କକ୍ଷକୁ ଆଲୋକିତ କରିବା, ଆଲୋକିତ ଆୟତନରେ ତଥାପି ଲୁକ୍‌କାୟିତ ରତ୍ନର ସନ୍ଧାନ ନେବା, ଆଲୋକରୁ ଆଲୋକାଭ୍ୟନ୍ତରକୁ ପ୍ରବେଶ କରିବା, ଜ୍ଞାତ ବା ଅଜ୍ଞାତ-ଭୂମି ସହ ଭାବସମ୍ପର୍କ ସ୍ଥାପିବା ଇତ୍ୟାଦି ହେଉଛି ଗବେଷଣା ବୃତ୍ତିର ସ୍ୱଭାବ-ଧର୍ମ । ସୂର୍ଯ୍ୟରଶ୍ମି ସ୍ଫଟିକ ପିଣ୍ଡରେ ଜ୍ୟୋତିର ବିକିରଣ ଘଟାଇଲା ପରି, ଗବେଷକର ଆଖି ଓ ଚେତନା-ନିକଷ ବଳରେ ଜ୍ଞାନର ନୂତନ ଦିଗ୍‌ବଳୟ ଉନ୍‌ମୋଚିତ ହୋଇଥାଏ ।

ଗବେଷକ ସତ୍ୟର ପ୍ରତିଷ୍ଠାତା, ତଥ୍ୟର ଆବିଷ୍କର୍ତ୍ତା । ତଥ୍ୟ ଓ ସତ୍ୟର ଲାଳନ-ପାଳନ କର୍ମ ହେଉଛି, ଗବେଷକର ନିତ୍ୟଧର୍ମ । ସଂଗୃହୀତ ତଥ୍ୟର କଞ୍ଚାମାଲ୍ ଘେନି ସତ୍ୟର ପ୍ରତିପାଦନ ଲାଗି କ୍ଷେତ୍ର ପ୍ରସ୍ତୁତ କରିବା ଏବଂ ପ୍ରତିପାଦ୍ୟ-ସତ୍ୟ ଭିତରୁ ଆବଶ୍ୟକ ସ୍ଥଳେ ତଥ୍ୟର ନିର୍ଯ୍ୟାସ ସନ୍ଧାନ କରିବା ଗବେଷକର ସାଧାରଣ ଜୀବନଚର୍ଯ୍ୟା । ଗବେଷକ, ଏକାଧାରରେ ଲେଖକ ଓ ପାଠକ, ଯୁଗ୍ମ ବ୍ୟକ୍ତିତ୍ୱର ଅଧିକାରୀ । ଗବେଷକଠାରେ ଥିବା ପାଠକ-ଆତ୍ମା ହିଁ ତୃଷିତ ଚକୋର । ଅନିର୍ବାର ତୃଷାର ତାଡ଼ନାରେ ତା'ର ପଦପାତ, ଅନ୍ୱେଷଣ ଇଲାକା ପରେ ଇଲାକା ଦଖଲ କରିବାରେ ସେ ସର୍ବଦା ଆଗ୍ରହୀ । ଯେଉଁଠି ଏଇ ଆଗ୍ରହ ମୁମୂର୍ଷୁ, ଗବେଷକର ଯାତ୍ରା ସେଠି ଶିଥିଳ । ଶିଥିଳ ପାଠକଆତ୍ମା, ଗବେଷଣାର ପରିପନ୍ଥୀ । ଉଦ୍‌ବେଗଭରା ଅଭିନିବେଶ ହିଁ ଗବେଷକର ସହଚର । ଉଦ୍‌ବେଗ ଓ ଉତ୍କଣ୍ଠାର ଯୌଥ ଦାନରୁ ଜିଜ୍ଞାସାର ଜନ୍ମ । ଏଇ ଜିଜ୍ଞାସା ଦେଖାଏ ଦ୍ୱାର, ରୁଦ୍ଧପଥର ଅମଡ଼ା ଭାଙ୍ଗେ ଏଇ ଜିଜ୍ଞାସା, ଅଭିଯାତ୍ରୀକୁ ବଳଦିଏ ଏଇ ଜିଜ୍ଞାସା, ବୌଦ୍ଧିକ ବିହାରର ଅନୁକୂଳ ପାଥେୟ ଯୋଗାଏ ଏଇ ଜଜ୍ଞାସା ।

Digitized by srujanika@gmail.com

ଗବେଷଣା ପାଇଁ ନିଜକୁ ପ୍ରସ୍ତୁତ କରିବା ପୂର୍ବରୁ ଗବେଷକର ଆଖି ଏକ ବିସ୍ତୃତ ଦିଗ୍‌ବଳୟରେ ସଂଚରଣ କରୁଥାଏ । ତା' ଆଗରେ ବହୁରାସ୍ତା, ବହୁ ପ୍ରାନ୍ତର; ବିଦ୍ୟା-ବିନୋଦର ଅନନ୍ତ ବିରିଧି, ଜିଜ୍ଞାସାର ଅନନ୍ତ ଆକାଶ । କାହାକୁ ଧରିବ ଓ କାହାକୁ ଛାଡ଼ିବ ତାହାହିଁ ହେଉଛି ତା'ର ଏକମାତ୍ର ସମସ୍ୟା । ଏହି ସମସ୍ୟାରେ ନ ପଶି ନିଜକୁ ନିରାପଦ ଦୂରତ୍ୱରରେ ରଖନ୍ତି । ଆୟତ୍ତ କରିଥିବା ଜ୍ଞାନକୁ ଶେଷ ଅର୍ଜନ ରୂପେ ବିଚାର କରି ସେତିକିରେ ସୀମିତ ହୋଇ ରହନ୍ତି । ପରିଶ୍ରମ କରି ଯେତିକି ଜାଣିଛୁ, ଅଧ୍ୟବସାୟର କଣ୍ଟାଦାଗ ଯେତିକି ସହିଛୁ, ଶ୍ରମର ଯେତେ ସ୍ୱେଦକଣିକା ବୁହାଇଛୁ, ସେତିକି ଯଥେଷ୍ଟ । ଏପରି ମନୋଭାବ ପୋଷି କେତେକ ନିରାପଦ ଓ ବିଳାସ ଭୋଗୀର ଜୀବନଯାପନ କରନ୍ତି । ଆଉ କେତେକ ଦେଖିଥିବା ଜଗତକୁ ପରିସୀମା ଭିତରେ ପଶି ଆପଣାର ବିଜୟ ଖୁଣ୍ଟି ପୋତିବା ଲାଗି ଆଗ୍ରହ ବଳାନ୍ତି । ଦେଖି ଦେଖି ତାଙ୍କ ଆଖିରୁ ଜ୍ୟୋତି ମରିଯାଉ ପଛକେ ଦେଖିବାର ନୂଆ ନିଶାରେ ଏବଂ ଦେଖୁ ଦେଖୁ ନୂଆ ଆଲୁଅର ଅଗ୍ନିଶିଖାରେ ଆପଣା ଆଖିରେ ଜ୍ୟୋତିକୁ ତୋଫା କରିବା ଅଭିଳାଷରେ ଆପଣା ପାଇଁ ସମସ୍ୟାର ଶରଶଯ୍ୟା ରଚନା କରନ୍ତି । ବହୁ ଜିଜ୍ଞାସାର କୁହୁଡ଼ି ଘେରା ଭିତରେ ପଶିବାକୁ ମନ ବଳାନ୍ତି । ପ୍ରଶ୍ନ ପରେ ପ୍ରଶ୍ନ ତାଙ୍କ ମନର କେନ୍ଦ୍ରବିନ୍ଦୁଟିକୁ ଚହଲାଇ ଦିଏ । ଜୀବନ ଓ ଜଗତର ସାହିତ୍ୟ ସଂସ୍କୃତି, ଇତିହାସ, ଧର୍ମ, ଦର୍ଶନ ଏପରି ବହୁ କ୍ଷେତ୍ରର ବହୁ ପ୍ରଶ୍ନ । କାହା ଆଡ଼କୁ ଢଳିବେ, କେଉଁ କୂଳକୁ ନାଆ ମେଲିବେ, ଏଇ ଦ୍ୱନ୍ଦ୍ୱ ତାଙ୍କୁ ଆଛନ୍ନ କରେ ।

## ଦ୍ୱନ୍ଦ୍ୱ :

ତୀବ୍ରତର ମାନସିକ ଦ୍ୱନ୍ଦ୍ୱର ଆଲୋଡ଼ନ ଭିତରୁ ଯେଉଁ ନିଷ୍ଫଳ ମନଟିର ଉଦୟ ଘଟେ, ତାହାହିଁ ହେଉଛି ଗବେଷକର ମନ । ଏତେବେଳେ ଗବେଷକ ଆପଣା ମନରେ ଉକୁଟି ଉଠିଥିବା ସବୁ ପ୍ରଶ୍ନକୁ ସମାଧାନ କରିସାରିଥାଏ । ନାନା ସମସ୍ୟାର ମାୟାଜାଲକୁ କାଟି ଆଗେଇ ଯିବା ଲାଗି ଦମ୍ଭ ଧରିଥାଏ । ନିଜେ ସ୍ଥିରମନା ହୋଇ ବିଚରଣ କରିବା ଲାଗି ଉପଯୋଗୀ ଇଲାକାଟିଏ ଖୋଜିବାକୁ ଉଦ୍ୟମ କରୁଥାଏ । ଏହି ମୁହୂର୍ତ୍ତ ହିଁ ଗବେଷକ ଲାଗି କ୍ଷେତ୍ରଠାବର ମୁହୂର୍ତ୍ତ । ଗବେଷଣା ଲାଗି କ୍ଷେତ୍ରଟିଏ ଠାବ କଲା ପୂର୍ବରୁ ଆପଣା ମନର ସକଳ ଅସ୍ଥିରତାକୁ, ବିଳାସଭୋଗୀ ଆଳସ୍ୟକୁ ଦୂରେଇ ଦେବାକୁ ପଡ଼ିଥାଏ । ସକ୍ରିୟତା ଓ ସଚେତନତା, ମାନସିକ ସ୍ଥିରତା ଓ ଅନାହତ ଧୈର୍ଯ୍ୟ ଗବେଷକର ବ୍ୟକ୍ତିତ୍ୱର ମୌଳିକ ଗୁଣ । ଆପଣା ବୃତ୍ତିତ୍ୱକୁ ଠିକ୍ କଲାପରେ କ୍ଷେତ୍ର ପାରିଧି ବା କ୍ଷତ୍ର ପରିକ୍ରମା ପାଇଁ ସମୟ ଆସେ ।

Digitized by srujanika@gmail.com

## କ୍ଷେତ୍ର ପରିକ୍ରମା :

ଏହାପରେ ଗବେଷକର ଚିନ୍ତା, କେଉଁ କ୍ଷେତ୍ରକୁ ସେ ସ୍ୱକ୍ଷେତ୍ର ରୂପେ ଗ୍ରହଣ କରିବ । ଗବେଷଣାର କ୍ଷେତ୍ର ତ ଅନେକ । ଜଗତରେ ଯେତେ ବିଦ୍ୟା, ଯେତେ ଶାସ୍ତ୍ର ଓ ବିଜ୍ଞାନର ପରିସର ଏଥି ଭିତରୁ କେଉଁଥିରେ ସେ ପ୍ରବେଶ କରିବ । ସେ ଯଦି ଜଣେ ବିଜ୍ଞାନର ଛାତ୍ର ହୋଇଥାଏ, ତା' ଲାଗି କ୍ଷେତ୍ର ପରିକ୍ରମାର ସମ୍ଭାବନା ଯାହା, ଜଣେ ସାହିତ୍ୟ ଛାତ୍ର ଲାଗି ମନୋନୟର ପରିସର ଭିନ୍ନ । ସାହିତ୍ୟ ଗବେଷକ ଆପଣା ଲାଗି ଗବେଷଣାର କ୍ଷେତ୍ରଟିଏ ବାଛିବା ବେଳେ କେବଳ ସାହିତ୍ୟର ସରହଦ ଭିତରେ ଲୁଚି ରହିପାରେ ନାହିଁ । ସାହିତ୍ୟ ଭୂଇଁରେ ଥାଇ ସେ ଇତିହାସ ଭିତରକୁ ପ୍ରବେଶ କରେ, ଦର୍ଶନ ଦୁଆରେ ଠିଆ ହୁଏ । ପ୍ରତ୍ନତତ୍ତ୍ୱର ଗହ୍ୱର ଭିତରେ ପହଞ୍ଚେ, ସମାଜ ତତ୍ତ୍ୱର ଚଉହଦୀ ଭିତରେ ବିଚରଣ କରିବା ଲାଗି ବାଧ୍ୟ ହୁଏ, ନୃତତ୍ତ୍ୱର ପରିଧି ଭିତରେ ଆପଣାର ପ୍ରତିବିମ୍ବ ଖୋଜିବାକୁ ଇଚ୍ଛା କରେ । ଏହିପରି ଅନ୍ତର୍ବିଭାଗୀୟ ବହୁକ୍ଷେତ୍ର ସାହିତ୍ୟ ଗବେଷକକୁ ସ୍ପର୍ଶ ଚଞ୍ଚଳ କରିପାରେ । ଏତଦ୍‌ଭିନ୍ନ ତା' ସାହିତ୍ୟର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ଭୂଗୋଳ ଭିତରେ ନିଜକୁ ସାମିଲ କରିବା ପାଇଁ ତାକୁ ମଧ୍ୟ ଅନେକ ସୁଯୋଗ ମିଳେ । ଏତେ ଉନ୍ମୋଚନ ଥିବା ସ୍ଥଳେ, ଚାରିଆଡ଼କୁ ରାସ୍ତା ଥିବାବେଳେ ସେ କେଉଁ ରାସ୍ତାରେ ଯାଇ କେଉଁ ଭୂମିରେ ପହଞ୍ଚିବ ଗବେଷକଙ୍କ ପାଇଁ ତାହା ଚିନ୍ତାର ବିଷୟ ହୋଇପଡ଼େ ।

ଏତିକିବେଳେ ଗବେଷକର କର୍ତ୍ତବ୍ୟ ହେଉଛି, ବ୍ୟକ୍ତିତ୍ୱ, ଦୃଷ୍ଟିକୋଣ ଓ ଅର୍ଜିତ ଜ୍ଞାନର ପୃଷ୍ଠଭୂମି ଓ ସାମର୍ଥ୍ୟକୁ ବିଚାର କରି କ୍ଷେତ୍ରଟିଏ ବାଛିନେବା । ଆପଣା ଲବ୍ଧ ଜ୍ଞାନର ପୃଷ୍ଠଭୂମି ଯଦି ସୂଚନା ଦେଉଥାଏ ଯେ, କୌଣସି ଏକ ଅନ୍ତର୍ବିଭାଗୀୟ କ୍ଷେତ୍ରରେ ପ୍ରବେଶ କଲେ ଆପଣା ଦୃଷ୍ଟିକୋଣ ଅନୁଯାୟୀ ସେହି କ୍ଷେତ୍ରରେ ପ୍ରବାସୀ ନ ହୋଇ ଅଧିବାସୀ ହେବାର ସାମର୍ଥ୍ୟ ଅର୍ଜନ କରିପାରିବ, ତେବେ ସେ ସେହି କ୍ଷେତ୍ରକୁ ସ୍ୱଗବେଷଣାର କ୍ଷେତ୍ର ରୂପେ ଗ୍ରହଣ କରିବା ଉଚିତ । ମନେକରାଯାଉ କୌଣସି ଜଣେ ଗବେଷକ ଇତିହାସରେ ଦୁର୍ବଳ, କିନ୍ତୁ ଦର୍ଶନରେ ଅବଗାହୀ । ତେବେ ସେ ସାହିତ୍ୟ+ଇତିହାସ ସମ୍ପର୍କିତ କ୍ଷେତ୍ରରେ ପ୍ରବେଶ କରିବା ଅନୁଚିତ । ଏ କ୍ଷେତ୍ରରେ ସାହିତ୍ୟ+ଦର୍ଶନ କ୍ଷେତ୍ରଟି ତା' ପାଇଁ ଶ୍ରେୟସ୍କର । ଗବେଷକର କ୍ଷେତ୍ର ଯଦି ଅନ୍ତର୍ବିଭାଗୀୟ ହୋଇ ନଥାଏ, କେବଳ ଆପଣା ସାହିତ୍ୟ ଜଗତକୁ ଘେନୁଥାଏ, ତେବେ ତା' ନିକଟରେ ସମସ୍ୟା ହେଉଛି ସେହି ସାହିତ୍ୟ ଜଗତର କେଉଁ ପକ୍ଷକୁ ଆପଣାର ଅଧ୍ୟୟନ କ୍ଷେତ୍ର ରୂପେ ଗ୍ରହଣ କରିବ– ପ୍ରାଚୀନ ପକ୍ଷ କି ଆଧୁନିକ ପକ୍ଷ । ପ୍ରାଚୀନ ପକ୍ଷର ବହୁ ଶାଖା ଯେପରି ଆଧୁନିକ ପକ୍ଷର । ଗବେଷକ ଯଦି ପ୍ରାଚୀନ ସାହିତ୍ୟର କାବ୍ୟ, ଅଳଙ୍କାର, ଗଦ୍ୟ, ନାଟକ ଇତ୍ୟାଦି କୌଣସି ବିଭାଗ

Digitized by srujanika@gmail.com

ପ୍ରତି ଅନୁରାଗୀ ହୋଇଥାଏ, ସେଥିରୁ କୌଣସିଟିକୁ ସ୍ୱକ୍ଷେତ୍ରର ପରିସୀମାଭୁକ୍ତ କରିପାରେ । ବିଭାଗ ଭିନ୍ନ ଯଦି ସେ କୌଣସି ତତ୍ତ୍ୱ ଚିନ୍ତାଧାରା ବା ମୌଳିକ ଦର୍ଶନ ପ୍ରତି ଅନୁରକ୍ତ ହୋଇଥାଏ, ତେବେ ତାହାକୁ ସଚେତନଭାବେ ଗ୍ରହଣ କରିବା ଉଚିତ । ପ୍ରାଚୀନ ସାହିତ୍ୟକୁ ଆପଣାର ଗବେଷଣା କ୍ଷେତ୍ର ରୂପେ ବରଣ କରୁଥିବା ଗବେଷକ ପ୍ରଥମତଃ ବିଚାର କରିବ ସେ ସାହିତ୍ୟର ବିଭାଗକୁ ବରିବ କି ଭାବନାକୁ ବରଣ କରିବ । (Idea or aspect) ଉଦାହରଣ ସ୍ୱରୂପ କୁହାଯାଇପାରେ, ଶୃଙ୍ଗାର ଭାବନା ଭକ୍ତି ଭାବନା ଇତ୍ୟାଦି ହେଲା ଚିନ୍ତା ଓ ତତ୍ତ୍ୱ (ideas)ର ପରିଶୀଳନ କ୍ଷେତ୍ର । ଭକ୍ତି ସାହିତ୍ୟ, ଗଦ୍ୟ ସାହିତ୍ୟ, କାବ୍ୟ ସାହିତ୍ୟ ଇତ୍ୟାଦି ହେଲା ବିଭାଗ ସମ୍ବନ୍ଧୀୟ (aspects) ଅନୁଶୀଳନ କ୍ଷେତ୍ର । ଅତଏବ ଗବେଷକ ସ୍ଥିର କରିବ ଆପଣାର ମାନସିକ ବଳ ଅନୁଯାୟୀ କେଉଁଠି ତା'ପାଖେ ଉପଯୋଗୀ । ଆଧୁନିକ ସାହିତ୍ୟକୁ କ୍ଷେତ୍ର ରୂପେ ଗ୍ରହଣ କଲାବେଳେ ଏହିପରି ପଦ୍ଧତିର ବିନିଯୋଗ ସେ କରିପାରେ । ଅବଶ୍ୟ ପ୍ରାଚୀନଠାରୁ ଆଧୁନିକର କ୍ଷେତ୍ର ଅଧିକ ପ୍ରଶସ୍ତ । ଚିନ୍ତା, ବିଭାବର ବୈଚିତ୍ର୍ୟ ଏତେ ଯେ ଏହାର ସମୀକରଣ ତା' ପକ୍ଷରେ ସହଜ ହୋଇ ନପାରେ, ତଥାପି କ୍ଷେତ୍ରବ୍ୟାପ୍ତି ଦୃଷ୍ଟିରୁ ଗବେଷକକୁ ଏ ସ୍ଥଳରେ ଦୂରଦୃଷ୍ଟି ସମ୍ପନ୍ନ ହେବାକୁ ପଡ଼ିବ । ଆଧୁନିକ ସାହିତ୍ୟକୁ ଗବେଷଣାର କ୍ଷେତ୍ର ରୂପେ ବାଛିଥିବା ଗବେଷକ ଆପଣାର ରୁଚି ଓ ସମୟରୁଚି ସହିତ ସମନ୍ୱୟ ଆଣିବାକୁ ଭୁଲିବ ନାହିଁ । ଆଧୁନିକ ସାହିତ୍ୟର ଗବେଷକ ନିଜ ଭୂମିରୁ ଭବିଷ୍ୟତକୁ ସଙ୍କେତ ଦେଲାଭଳି କିମ୍ବା ଭବିଷ୍ୟତର ଉଚ୍ଚାରଣକୁ ସାହାଯ୍ୟ କଲାଭଳି ଉପାଦାନ ଯୋଗାଇ ଦେବାର ସମ୍ଭାବନା ଥିବାରୁ ଏ କ୍ଷେତ୍ରରେ ତା'ର ଭୂମିକା ସାମାଜିକ ଉପଯୋଗିତାକୁ ପରିପୂର୍ଣ୍ଣ କରିପାରେ । ପ୍ରାଚୀନ ସାହିତ୍ୟର ଗବେଷକ ସାଂସ୍କୃତିକ ଉପଯୋଗିତା ମେଣ୍ଟାଇବା ଲାଗି ଅନୁକୂଳ ବାତାବରଣ ସୃଷ୍ଟି କରିପାରେ । ଏହାର ଅର୍ଥ ନୁହେଁ ଆଧୁନିକ ସାହିତ୍ୟର ଗବେଷକ ସାମାଜିକ ଉପଯୋଗିତା ମେଣ୍ଟାଇବା ସଂଗେ ସଂଗେ ସାଂସ୍କୃତିକ ଉପଯୋଗିତା ମେଣ୍ଟାଏ ନାହିଁ । ଆଜିର ସମାଜ ପାଇଁ ଉପଯୋଗୀ ହେଉଥିବା ଗବେଷଣା ଆସନ୍ତାକାଲିର ସମାଜ ଲାଗି ଏକ ସାଂସ୍କୃତିକ ଉପଯୋଗିତାରେ ପରିଣତ ହୋଇପାରେ । ତେଣୁ କ୍ଷେତ୍ର ନିର୍ବାଚନ ଅବସରରେ ଗବେଷକ ନିଜକୁ ଏପରି ପ୍ରସ୍ତୁତ କରିବ ଯେ, ଦ୍ୱୀପମୟ (Islands) ପୃଥିବୀରେ ତାହାର ପୋତଟି ନିର୍ବିଘ୍ନରେ ଗତିକରି କୌଣସି ଏକ ଦ୍ୱୀପକୁ ନିରାପଦ ପୋତାଶ୍ରୟ ବୋଲି ବିଚାର କରି ସ୍ୱଚ୍ଛନ୍ଦରେ ଆଶ୍ରୟ ନେଇପାରିବ ।

କ୍ଷେତ୍ରରେ ପହଞ୍ଚିଗଲା ପରେ ଗବେଷକର ଦ୍ୱିତୀୟ ପଦକ୍ଷେପ ହେଉଛି ବିଚିତ୍ରବର୍ଣ୍ଣାଳୀ କ୍ଷେତ୍ର ଭିତରୁ ଗୋଟିଏ ରୂପ, ଗୋଟିଏ ସୂତ୍ର ବା ନିର୍ଦ୍ଦିଷ୍ଟ ଆବାସ ଭୂମିଟିଏ ଠିକଣା କରିବା । ଏହାକୁ କୁହାଯାଏ ବିଷୟ ନିର୍ବାଚନ (Selection of

Digitized by srujanika@gmail.com

Topic or Subject) । ପ୍ରାକୃତିକ ଜଗତରେ ବଡ଼ସାନର ଭେଦ ଥିଲାଭଳି ବିଷୟ ପ୍ରସଙ୍ଗରେ ବଡ଼ ବା ସାନ ବିଷୟ ନିର୍ବାଚନର ସମ୍ଭାବନା ଅଛି । ବିଷୟ ଠିକଣା କଲାବେଳେ ଏହା ଅତି ବୃହତ୍ ବା ଅତିକ୍ଷୁଦ୍ର ହେବା ଉଚିତ ନୁହେଁ । ଯାହାକୁ ଅନାଇଲେ ଆଖି ପାଉନଥିବ କିମ୍ବା ଯାହାକୁ ଚାହିଁଲେ ଅଣୁବୀକ୍ଷଣ ଲୋଡ଼ା ପଡୁଥିବ ସେପରି ବିଷୟରୁ ଦୂରେଇ ରହିବା ଦରକାର । ଗବେଷକ ଯଦି ସମୁଦ୍ର ସନ୍ତରଣପଟୁ, ଦକ୍ଷତା ହାସଲ କରିଥାଏ, ତେବେ ଅତି ବୃହତ୍ ବିଷୟ ତା' ପକ୍ଷରେ ଗବେଷଣା ପାଇଁ ଅନୁକୂଳ ହୋଇପାରେ । ନଚେତ ନୁହେଁ । ଅତିକ୍ଷୁଦ୍ର ସୀମିତ ସମ୍ବଳଯୁକ୍ତ ବିଷୟ ମଧ୍ୟ ଗବେଷଣା ପାଇଁ ଅନୁକୂଳ ନୁହେଁ । ଅବଶ୍ୟ ଆଧୁନିକ ଗବେଷଣା ତତ୍ତ୍ୱରେ ଅଣୁଯୋଜନା (Micro-project)କୁ ଉତ୍ସାହିତ କରାଯାଉଛି । ବିଦେଶରେ ଅଧିକରୁ ଅଧିକ କ୍ଷୁଦ୍ର ଆକୃତି ବିଶିଷ୍ଟ ଅଧୀତବ୍ୟ ବିଷୟ । ଯାହାକି ସମୟର ମୂଲ୍ୟବୋଧକୁ ଉଦ୍‌ଭାସିତ କରିବା ପାଇଁ ସମର୍ଥ, ସାମାଜିକ ଉପଯୋଗିତାକୁ ମେଣ୍ଟାଇବା ଲାଗି ପ୍ରୟୋଜନ ଏବଂ ଜୀବନର ଭାବମୂର୍ତ୍ତିକୁ ସ୍ପଷ୍ଟ କରିବା ଲାଗି ଯାହା ବିଶେଷ ଉପଯୋଗୀ, ଏପରି ବିଷୟର ପରିସର କ୍ଷୁଦ୍ର ନିଶ୍ଚୟ । କିନ୍ତୁ ଅଧ୍ୟୟନର ସୀମା ଅତ୍ୟନ୍ତ ଗଭୀର ଓ ପ୍ରସାରଣଶୀଳ । ବିଷୟଟି ଯଦି ହୁଏ 'ସାଂପ୍ରତିକ କବିର ସଂଶୟ ଦୃଷ୍ଟି'– ଏହାର ପରିସର କ୍ଷୁଦ୍ର କିନ୍ତୁ ଅନୁଶୀଳନ-କ୍ଷେତ୍ର ଅତ୍ୟନ୍ତ ବ୍ୟାପକ । କାରଣ ଏହା ମନସ୍ତତ୍ତ୍ୱ, ବିଜ୍ଞାନ; ନୃତତ୍ତ୍ୱ ଏବଂ ଦର୍ଶନ ଓ ବିଶ୍ୱର କ୍ରିୟା ପ୍ରତିକ୍ରିୟାକୁ ବିଶ୍ଳେଷଣ କରି ନିର୍ଦ୍ଦିଷ୍ଟ ଏକ ପ୍ରତିପାଦନରେ ପହଞ୍ଚିବାକୁ ଉଦ୍ୟମ କରେ । ଏ କ୍ଷେତ୍ରରେ ବିଷୟର ଶିରୋନାମା ଓ ପରିସରକୁ ବିଷୟଟି ଛୋଟ ବୋଲି ଜଣାଯାଉଥିଲେ ମଧ୍ୟ ଅନୁଶୀଳନର ପ୍ରାସଙ୍ଗିକ ସମ୍ଭାବନା ଦୃଷ୍ଟିରୁ ଛୋଟ ମନେହୁଏ ନାହିଁ । ବିକଳ୍ପରେ ଯଦି ଠିକଣା କରାଯାଏ 'ରାଧାନାଥଙ୍କ କବିତାରେ ନିସର୍ଗ ଚେତନା' କିମ୍ବା 'ଗଙ୍ଗାଧର ମେହେରଙ୍କ ଜାତୀୟତାବୋଧ' ଏହା ଗବେଷଣା ପାଇଁ ବିଚାର୍ଯ୍ୟ ଅତ୍ୟନ୍ତ କ୍ଷୁଦ୍ର ଓ ସୀମିତ ବିଷୟର ଅନ୍ତର୍ଭୁକ୍ତ ହୋଇପାରେ । ଅନ୍ୟପକ୍ଷରେ ଗବେଷକ ଯଦି ଠିକଣା କରନ୍ତି ଓଡ଼ିଆ ସାହିତ୍ୟରେ ଧର୍ମର ପ୍ରଭାବ ଏହାର ପରିସର ଅତି ବୃହତ୍ । ଗବେଷଣାର ଦୃଷ୍ଟି ଏ କ୍ଷେତ୍ରରେ ଅନ୍ତର୍ଭେଦୀ ନ ହୋଇ ବହିର୍ବାହୀ ହେବାର ଆଶଙ୍କା ବେଶୀ । ବୃହତ୍ ବିଷୟକୁ ଅଧ୍ୟୟନ କରି ଲେଖିଲା ବେଳେ ଲିଖିତ ସନ୍ଦର୍ଭର ଆକାର ମଧ୍ୟ ବୃହତ୍ ହେବା ବିଚିତ୍ର ନୁହେଁ । ସହସ୍ରାଧିକ ଗୁଣରେ ମଣ୍ଡିତ କରି ଗବେଷଣା ସନ୍ଦର୍ଭ ପ୍ରସ୍ତୁତ କରିବା ଅପେକ୍ଷା ସ୍ୱାଭାବିକ ଆକୃତି ବିଶିଷ୍ଟ ନିବନ୍ଧଟିଏ ରଚନା କରି ନିର୍ଦ୍ଦିଷ୍ଟ କୌଣସି ପ୍ରତିପାଦନରେ ପହଞ୍ଚିବା ଶ୍ରେୟସ୍କର । ଗବେଷଣାର ବିଷୟ ବଡ଼ ହେବ ନାହିଁ କି ଛୋଟ ହେବ ନାହିଁ । ଯୁକ୍ତିଯୁକ୍ତ ଆକୃତି ବିଶିଷ୍ଟ ହେବ । ଏଥିପାଇଁ ଗବେଷକଙ୍କୁ ସତର୍କ ମନୋନିବେଶ ଭିତରେ କିଛି ସମୟ ବିତେଇବାକୁ ପଡ଼ିବ ।

Digitized by srujanika@gmail.com

କାରଣ ନିଶ୍ଚଳ ମନରେ ଠିକଣା କରାଯାଉଥିବା ବିଷୟକୁ ଚାରିଆଡ୍ରୁ ବିଚାର ନ କଲେ ଅସୁବିଧାରେ ପଡ଼ିଯିବାର ଆଶଙ୍କା ଅଛି ।

ଏଇଠି ପ୍ରଶ୍ନ ଉଠିପାରେ ଗବେଷକ କିପରି ବିଚାର କରିବ । ବିଷୟ କାହିଁ ବିଷୟ କାହିଁ ବୋଲି ଚିତ୍କାର କରି ଗବେଷକ ଯଦି ଘୂରିବୁଲେ ବିଷୟ ତା' ପାଖରେ ଆସି ପହଞ୍ଚିଯିବ ନାହିଁ, ତୃଷାର୍ତ୍ତ ପାଣି ପାଣି ଚିତ୍କାର କଲାଭଳି ତା'ର ପରିଣତି ହେବ । ସଫଳତାରେ ପହଞ୍ଚିବାକୁ ହେଲେ କିଛି ଉଦ୍‌ଯୋଗ ଲୋଡ଼ା । ଉଦ୍‌ଯୋଗ ଦୁଇଟି ଦିଗରେ ଚାଳିତ ହେବା ଉଚିତ । ୧. ଅଧ୍ୟୟନ, ୨. ପରାମର୍ଶ । ଏମ୍.ଏ. ଡିଗ୍ରୀ ପାଇସାରିଲା ପରେ ପରେ ଗବେଷଣାରେ ପ୍ରବୃତ୍ତ ହେବା ବେଳେ ବିଷୟ ଦୁର୍ଭିକ୍ଷ ଦେଖା ଦେଇଥାଏ । ଯଦି ନବୀନ ଛାତ୍ରଟି ଅଧ୍ୟୟନ ଭିତରେ କିଛିକାଳ ବିତାଏ, ପଠିତ ବିଦ୍ୟାର ବିଭିନ୍ନ ସୃଷ୍ଟି ଓ ବିଭାଗକୁ ସାମଗ୍ରିକ ଭାବେ ଜାଣିବାର କୌତୂହଳ ପ୍ରକାଶ କରେ, ତେବେ ସେ ନିଜେ କ୍ରମଶଃ ନିର୍ଦ୍ଦିଷ୍ଟ କୌଣସି ବିଷୟ ଆପଣା ଗବେଷଣା ପାଇଁ ସ୍ଥିର କରିପାରିବ । କିନ୍ତୁ ଡିଗ୍ରୀ ପ୍ରାପ୍ତି କରେ ପରେ ପୋଥିରେ ଡୋରି ବାନ୍ଧି ସେ ଯଦି ନିକିମା ହୋଇ ବସେ ବିଷୟ ଚିହ୍ନିବା ତା' ପକ୍ଷରେ କଷ୍ଟକର ହେବ । ବିଷୟଟିଏ ଖୋଜିବା ପାଇଁ ପ୍ରାଜ୍ଞ ବ୍ୟକ୍ତିମାନଙ୍କର ଦ୍ୱାରସ୍ଥ ହେବା, ସେମାନଙ୍କୁ ପରାମର୍ଶ ଲୋଡ଼ିବା ବିନା ଅନ୍ୟ ଉପାୟ ତାଙ୍କୁ ଦିଶିବ ନାହିଁ । ଏପରି ସ୍ଥଳେ ଗବେଷକ କ'ଣ କରିବ ? ଅନୁରାଗୀ ଓ ତପନିଷ୍ଠ ଗବେଷକ ନିଜର ଅଧ୍ୟୟନରୁ ବିଷୟ ନିର୍ବାଚନ କରିବା ଏକାନ୍ତ ଶ୍ରେୟସ୍କର । ତେବେ କେଉଁ ବିଷୟକୁ ସେ ସ୍ଥିର କରିବ ? ପଠନ ଦ୍ୱାରା ଯେଉଁ ବିଷୟ ତା'ର ଉତ୍ସାହକୁ ଉଦୀପ୍ତ କରୁନାହିଁ ଜିଜ୍ଞାସାକୁ ବହୁଗୁଣିତ କରିବା ଲାଗି ଯାହା ସମର୍ଥ ନୁହେଁ, ବୌଦ୍ଧିକ କ୍ଷୁଧାର ତୃପ୍ତି ଲାଗି ଯାହାର ପୁଞ୍ଜି ନାହିଁ, କିମ୍ବା ଯେଉଁଥିରେ ପ୍ରବେଶ କରିବା ଲାଗି ଗବେଷକକୁ ଅନ୍ଧାରିଆ ଅନ୍ଧାରିଆ ଲାଗୁଛି ସେପରି ବିଷୟକୁ ସେ ଠିକଣା କରିବ ନାହିଁ । ଯେଉଁ ବିଷୟ ଗବେଷକର ରୁଚି ଅନୁକୂଳ, ଉତ୍ସାହ ଉଦ୍ଦୀପକ, ଜିଜ୍ଞାସାର ପରିପୂରକ ଆଗ୍ରହର ସହଗାମୀ, ସର୍ବୋପରି ଯେଉଁ ବିଷୟରେ ପ୍ରବେଶ କରିବା ତା' ପକ୍ଷରେ କ୍ଳାନ୍ତିକର ନୁହେଁ, ସେହି ବିଷୟଟିକୁ ସେ ଗ୍ରହଣ କରିବା ବାଞ୍ଛନୀୟ ।

ବିଷୟଟିକୁ ସ୍ଥିର କରିସାରିଲା ପରେ ଗବେଷକର ପ୍ରଧାନ ପ୍ରଣିଧାନ ବିଷୟ ହେଉଛି, ସ୍ଥିର ହୋଇଥିବା ବିଷୟ ସମ୍ପର୍କରେ ପୂର୍ବରୁ କି କି କାର୍ଯ୍ୟ ହୋଇଛି କିମ୍ବା ପାଖାପାଖି ସେହି ବିଷୟକ ଚର୍ଚ୍ଚା କେତେ ହେଇଛି ସେସବୁ ହିସାବକୁ ନେବା । ଯଦି ସ୍ଥିର ହୋଇଥିବା ବିଷୟର ସହୋଦର କୌଣସି ବିଷୟକ ଚର୍ଚ୍ଚା ଏ କ୍ଷେତ୍ରରେ କରାଯାଇଥାଏ, ତାହା ମଧ୍ୟ ଗବେଷକର ହିସାବଭୁକ୍ତ ହେବ । କାରଣ ନିର୍ବାଚିତ ବିଷୟ କିମ୍ବା ସମଧର୍ମୀ ବିଷୟର ଏକ ଐତିହାସିକ ପରିଚର୍ଚ୍ଚାର ସଂକଳନ ଏ କ୍ଷେତ୍ରରେ

Digitized by srujanika@gmail.com

ବିଶେଷ ସହାୟକ ହୋଇଥାଏ । ଗବେଷକ ଯେଉଁ ବିଷୟକୁ ସ୍ଥିର କରୁଛି ସେହି ବିଷୟ ସମ୍ପର୍କରେ ଯଦି କୌଣସି ଅନୁଶୀଳନ ଅତ୍ରତତ୍ର କରାଯାଇଥାଏ, ସେଗୁଡ଼ିକୁ ନିଜର ଅଧ୍ୟୟନ ପରିସରଭୁକ୍ତ କରିବା ଉଚିତ । ଫଳରେ ଏମାନଙ୍କର ଆଲୋଚନାର ରୀତିଗତି ନିଜ ଆଲୋଚନାର ଗତିପଥ କ'ଣ ହେବ, କେଉଁ ବାଗରେ ବିଷୟଟିକୁ ପର୍ଯ୍ୟାଲୋଚନା କଲେ ନୂଆ ଦୃଷ୍ଟିକୋଣର ଆଭାସ ମିଳିବ ତାହା ଗବେଷକ ଏଥିରୁ ସ୍ଥିର କରିପାରେ, ନୂଆ ଅନ୍ତର୍ଦୃଷ୍ଟି ଓ ନବୀନ ମତପୋଷଣ ସୁଯୋଗ ଗବେଷକ ଏହା ବୃଦ୍ଧି କରିଥାଏ । ଗବେଷକ ଯଦି ଅନୁଭବ କରେ ଯେ, ପୂର୍ବରୁ କରାଯାଇଥିବା ଚର୍ଚ୍ଚା ସମୂହ ତଥ୍ୟସର୍ବସ୍ୱ (Factual) ଏବଂ ପ୍ରକାଶିତ ତଥ୍ୟାବଳୀ ବିଷୟଟିର ଅନେକ ଅଂଶକୁ ଆଲୋକିତ କରିବାରେ ସମର୍ଥ ନୁହେଁ, ତା'ହେଲେ ଗବେଷକ ଏଠି ବିଷୟଟିର ଅନାଲୋଚିତ ଅଂଶକୁ ପ୍ରାଧାନ୍ୟ ଦେଇ ଆଲୋଚନାରେ ପ୍ରବେଶ କରିବ । ମନେକରାଯାଉ ଯଦି ଗବେଷକ ଅନୁଭବ କରେ ଯେ, ପୂର୍ବ ଆଲୋଚନାର ବିଷୟଟି ଅନୁଶୀଳନାତ୍ମକ ଓ ବିଶ୍ଳେଷଣଧର୍ମୀ (Critical) ହୋଇଥିଲା, ତେବେ ଆଲୋଚନାର ଦିଗଟିକୁ ଭିନ୍ନ ବାଟରେ ଘେନିଯିବା ପାଇଁ ସେ ପ୍ରୟାସ କରିବ । ଗବେଷକମାନଙ୍କ ପାଇଁ ପ୍ରାଚୀନ ବିଷୟର ନୂତନ ପରିଶୀଳନ କ୍ଷେତ୍ରରେ ଏ ପଦ୍ଧତି ଅନୁସୃତ ହୋଇପାରେ । କିନ୍ତୁ ନୂଆ ବିଷୟ ପରିକଳ୍ପନା ବେଳେ ସେ ସଂପୂର୍ଣ୍ଣ ରୂପେ ମୁକ୍ତ । ନିଜର ଦୃଷ୍ଟିକୋଣ ଓ ମତ ମନ୍ତବ୍ୟ ଉପରେ ବିଶେଷ ନିର୍ଭରଶୀଳ ହୋଇଥାଏ । ଆଲୋଚନାର ଅବସରରେ ସେ ତଥ୍ୟସର୍ବସ୍ୱ ହୋଇପାରେ କିମ୍ବା ଯୁକ୍ତିପ୍ରବଣ ବ୍ୟାଖ୍ୟାନଶୈଳୀ ଓ ତୁଳନାତ୍ମକ ଅଧ୍ୟୟନ ରୀତିରେ ପ୍ରବେଶ କରିପାରେ । ବିଷୟଟି ମିଳିଗଲା ପରେ ଏହାର ଏକ ସାମଗ୍ରିକ ରୂପରେଖ କଳ୍ପନା କରିବା ଗବେଷକର ପ୍ରଧାନ କର୍ତ୍ତବ୍ୟ । ବିଷୟଟିର ସୀମା ଓ ପରିସୀମା କେତେ, ଏହାର ବ୍ୟବହାରିକ ନକ୍ସା କ'ଣ ହେବ, କେଉଁ କେଉଁ ବିଭାଗ ଉପବିଭାଗ ଏଥିରେ ରହିବ ପ୍ରଥମେ ଏ ବାବଦରେ ଏକ ପ୍ରକାର ସର୍ବେକ୍ଷଣ (Survey) ଗବେଷକ ସଂପୂର୍ଣ୍ଣ କରିବ ।

ବିଷୟଟିର ସାଧାରଣ ରୂପରେଖ (Outline) ତିଆରି କରିସାରିଲା ପରେ ଗବେଷକର ସାହସ ହେବ ଯେ, ସେ ଏହି ଆକୃତି ବିଶିଷ୍ଟ ବିଷୟଟି ସହିତ ସମ୍ବନ୍ଧ ସ୍ଥାପନ କରିବାକୁ ଯାଉଛି । ବିଷୟଟିର ଶିରୋନାମା ବାବଦରେ ଗବେଷକ ଅତ୍ୟନ୍ତ ସ୍ପଷ୍ଟ ଓ ତା'ର ଧାରଣା ଖୁବ୍ ପରିଚ୍ଛନ୍ନ ରହିବା ଏକାନ୍ତ ଆବଶ୍ୟକ । ବିଷୟଟିକୁ ବିଭିନ୍ନ ଅଧ୍ୟାୟ କ୍ରମରେ ଆପାତତଃ ସେ ବିଭକ୍ତ କରିବ । ପ୍ରତ୍ୟେକ ବିଭାଗର ନାମ ଓ ତା'ର ଆଲୋଚ୍ୟ ପ୍ରସଙ୍ଗ ସ୍ପଷ୍ଟ ଭାବରେ ଲେଖି ରଖିବ । ଅଧ୍ୟାୟଗୁଡ଼ିକ ଭିତରେ ଯଦି କିଛି ଉପଶୀର୍ଷକର ଆବଶ୍ୟକ ପଡୁଥାଏ, ତାହାକୁ ପୂର୍ବରୁ ଠିକଣା କରିବ । ଏଥିପାଇଁ ଆବଶ୍ୟକ ହେଉଥିବା ଜ୍ଞାତବ୍ୟ ତଥ୍ୟ ଓ ଉପାଦାନକୁ କଳନା କରିବାକୁ

Digitized by srujanika@gmail.com

ପଡ଼େଇବ ନାହିଁ । ଏହାହିଁ ହେବ ଗବେଷକର ପରିକଳ୍ପିତ ବିଷୟର ଚିଠାଫରଦ (Scheme) । ଗବେଷଣାରତ ଥିବା ଅବସ୍ଥାରେ ଆବଶ୍ୟକମତେ ଗବେଷକ ଏହି ସ୍କିମ୍‌କୁ ଅଦଳବଦଳ କରିପାରେ ।

ସ୍କିମ୍‌ଟି ଏପରି ହୋଇଥିବ ଯେ, ଏଥିରେ ଥିବା କୌଣସି ଅଧ୍ୟାୟ ଅପ୍ରସାଙ୍ଗିକ କିମ୍ବା ସୂତ୍ରଚ୍ଛିନ୍ନ ହେଲା ଭଳି ବୋଧହେବ ନାହିଁ । ଅଧ୍ୟାୟଗୁଡ଼ିକ ପରସ୍ପରର ପରିପୂରକ ହେଉଥିବା ପ୍ରତି ଗବେଷକ ସୁନଜର ଦେଉଥିବେ । କୌଣସିଟି ଯେପରି ଗ୍ରନ୍ଥିଚ୍ଛିନ୍ନ ନ ହୁଏ, ଚେନ୍‌ର ଗୋଟିଏ କଡ଼ି ଅପର କଡ଼ିକୁ ଧରି ରଖିଲା ଭଳି ଗବେଷଣାର ବିଷୟର ପ୍ରତ୍ୟେକ ଅଧ୍ୟାୟ ପରସ୍ପରଠାରୁ ନିର୍ଭରଶୀଳ ହୋଇଥିବେ । ଯୋଗସୂତ୍ର ସ୍ଥାପନ (Establish link) ପ୍ରତି ସୁନଜର ଦେବା ହେଉଚି ବିଷୟ ପରିକଳ୍ପନା ଓ ଅଧ୍ୟାୟ ବିଭାଜନର ମୂଳକଥା ।

ଗବେଷକ ଅଧ୍ୟାୟଗୁଡ଼ିକୁ ଦୀର୍ଘ ଆକୃତି ବିଶିଷ୍ଟ କରିବ ନାହିଁ । ଅଧ୍ୟାୟଟିର ଆଲୋଚ୍ୟ ବସ୍ତୁ ବ୍ୟାପକ ବୋଧ ହେଉଥିଲେ ମଧ ତାହାକୁ ଯେତେ ସମ୍ଭବ ଛୋଟ କରିବା ପାଇଁ ଉଦ୍ୟମ କରିବ । କାରଣ ଅଧ୍ୟାୟର ଆଲୋଚ୍ୟ ବସ୍ତୁ କମ୍ ହେଉଥିଲେ ଆଲୋଚନାରେ ଗାମ୍ଭୀର୍ଯ୍ୟ ଓ ଗଭୀରତା ଫୁଟିବ; ବଡ଼ ହୋଇଥିଲେ ଏହା ବର୍ଣ୍ଣନାତ୍ମକ ଓ ପରିଚୟ ସଂଚାରୀ ହୋଇପାରେ । ବିନ୍ଦୁ ବିନ୍ଦୁ ଜଳ ବୃହତ୍ ଜଳାଶୟଟିଏ ସୃଷ୍ଟି କଲାପରି ଛୋଟ ଅଧ୍ୟାୟର ଶକ୍ତି ଓ ସାମର୍ଥ୍ୟରେ ଗବେଷଣା ବିଷୟଟି ସୁନିର୍ଦ୍ଦିଷ୍ଟ ଓ ଏହାର ଆୟତନ ସୁବିନ୍ୟସ୍ତ ବୋଧହେବ । ଯେକୌଣସି ସଚେତନ ଗବେଷକ ନିର୍ଦ୍ଦିଷ୍ଟ ବିଷୟଟିକୁ ଆପଣାର କରିସାରିଲା ପରେ ତହିଁରୁ ଓହରି ଯିବା ପାଇଁ ମନ ବଳାଇବା ଆଦୌ ଉଚିତ ନୁହେଁ । ଯଦି କେତେବେଳେ କୌଣସି ଆଶଙ୍କା, କୁପରାମର୍ଶର ମାୟାଜାଲ ତାକୁ କବଳିତ କରେ ତଥାପି ସେ ତା'ର ବିଷୟ ସହିତ ସଂପର୍କକୁ ଦୃଢ଼ ଓ ଅବଚ୍ଛିନ୍ନ ରଖିବ । ବିଷୟରୁ ଓହରି ଯିବା ଅର୍ଥ ପରାଜୟର କଷଣକୁ ବରଣ କରିବା । ନିର୍ବାଚିତ ବିଷୟଟି କଷ୍ଟସାଧ ବୋଧ ହେଉଥିଲେ ମଧ ଯଦି ଏହା ବହୁ ବିଚାର ପରେ ସ୍ଥିର ହୋଇଯାଇଛି, ତେବେ ତହିଁରୁ ଅପସରି ଆସିବା ପାଇଁ ଉଦ୍ୟମ କରିବା ଗବେଷକର ପନ୍ଥା ନୁହେଁ । ନିଷ୍ଠା ଓ ଧୈର୍ଯ୍ୟ, ବିଷୟ ସହିତ ନିତ୍ୟ ସଂପର୍କ. ଗବେଷଣା ପାଇଁ ଆପଣା ପ୍ରବୃତ୍ତିକୁ ଉତ୍ତେଜିତ କରିବାର ବିଶେଷ ମାଦକ ଭୋଜ୍ୟ ।

## ପଥଦିଶାରୀ ଓ ଗବେଷକ (The guide and the scholar) :

ବିଷୟଟି ସହିତ ନିତ୍ୟସଂପର୍କ ଗବେଷକକୁ ଯେପରି ଅଧିକରୁ ଅଧିକ ଉତ୍ସାହ ଦେଇଥାଏ, ପଥଦିଶାରୀଙ୍କ ପରାମର୍ଶ ସେହିପରି ଗବେଷକକୁ ପ୍ରେରଣା ଯୋଗାଏ । ମନୋନୀତ ବିଷୟ ସହିତ ମାନସିକ ସଂକଳ୍ପ ଜାତହେଲା ଉତ୍ତାରୁ ଗବେଷକ କ୍ରମଶଃ କର୍ମତତ୍ପର ହୋଇଉଠେ । ପଥଦିଶାରୀଙ୍କ ସହିତ ଘନ ଘନ ସଂପର୍କ ରଖିବାକୁ ଇଚ୍ଛା

Digitized by srujanika@gmail.com

କରେ । ଗବେଷଣାର ପଥରେ ଚାଲୁ ଚାଲୁ ଯଦି କେଉଁଠି କେମିତି ଅଜଣା ସମସ୍ୟା ମୁଣ୍ଡଟେକି ଉଠେ, ଆପଣା ଅଧ୍ୟୟନ ଯଦି ସେହି ସମସ୍ୟାକୁ ମୁକାବିଲା କରିବାକୁ ସମର୍ଥ ନ ହୁଏ, ତେବେ ଦିଗଦ୍ରଷ୍ଟାଙ୍କର ନିର୍ଦ୍ଦେଶ ଓ ପରାମର୍ଶ ସେଇଠି ଅନିବାର୍ଯ୍ୟ ହୋଇଉଠେ । ଯଦି ଦିଗ୍‌ଦ୍ରଷ୍ଟା ଗବେଷକଙ୍କ ନିର୍ବାଚିତ ପ୍ରସଙ୍ଗରେ ତଦ୍‌ବିଦ୍ ହୋଇ ନଥାନ୍ତି ଏବଂ ଏଥିପାଇଁ ପ୍ରୟୋଜନ ହେଉଥିବା ଆନୁଷଙ୍ଗିକ ସମସ୍ୟାକୁ ଆଗୁଆ ଦେଖିପାରି ନଥାନ୍ତି ସେ କ୍ଷେତ୍ରରେ ଗବେଷକର ଅଗ୍ରଗତି ବିଳମ୍ବିତ ହୋଇଯାଏ । ତେଣୁ ଏଇଠି ପ୍ରଶ୍ନ ଉଠୁଛି ଗବେଷକ କାହାକୁ ଆପଣା ଗବେଷଣା ପ୍ରସଙ୍ଗ ପାଇଁ ଦିଗ୍‌ଦ୍ରଷ୍ଟା ରୂପେ ବରଣ କରିବ । ଏହା ଏକ ସହଜ ବ୍ୟାପାର ଭଳି ମନେହେଉଥିଲେ ମଧ ଗବେଷଣାର ସଫଳ ସିଦ୍ଧି ଦୃଷ୍ଟିରୁ ଏଥିପ୍ରତି ବିଶେଷ ସତର୍କତା ଅବଲମ୍ବନ କରାଯିବା ଉଚିତ । ଗବେଷକ ସତର୍କ ହେବେ ଏଇଥିପାଇଁ ଯେ, ସେ ଯେଉଁ ବିଷୟ ସ୍ଥିର କରିଛନ୍ତି, ସେହି ବିଷୟ ପ୍ରତି ଯେଉଁମାନେ ଦକ୍ଷ କିମ୍ବା ଯେଉଁମାନେ ସମଧର୍ମୀ କ୍ଷେତ୍ରର ପ୍ରାଜ୍ଞ ଗବେଷକ, ସେମାନଙ୍କ ଭିତରୁ କାହାକୁ ସେ ଗବେଷଣା ଗୁରୁ ରୂପେ ଗ୍ରହଣ କରିବ । ଅବଶ୍ୟ ଆମ ରାଜ୍ୟରେ ଡକ୍ଟରେଟ୍ ଉପାଧିଧାରୀ ଯେକୌଣସି ବ୍ୟକ୍ତି ଓ ଅଭିଜ୍ଞ ଶିକ୍ଷକଙ୍କୁ ଯେକୌଣସି କ୍ଷେତ୍ରର ଗବେଷଣା ଗୁରୁ ରୂପେ ଛାତ୍ରମାନେ ଗ୍ରହଣ କରୁଥିବାର ଦୃଷ୍ଟାନ୍ତ ବିରଳ ନୁହେଁ । କିନ୍ତୁ ବିଦେଶରେ ଏପରି ମନୋନୟନଧାରା ଆଦୌ ଦେଖାଯାଏନି କହିଲେ ଚଳେ । ଜଣେ ପ୍ରାଚ୍ୟ ବିଦ୍ୟାବିଶାରଦଙ୍କୁ ଯଦି ଆଧୁନିକ କାବ୍ୟ ସାହିତ୍ୟର କୌଣସି ବିଷୟକ ଗବେଷଣାରେ ଜଣେ ଛାତ୍ର ପଥଦିଶାରୀ ଗବେଷଣା ଗୁରୁ ରୂପେ ଗ୍ରହଣ କରେ, ତା'ହେଲେ ଛାତ୍ର ଗବେଷକଟି ସଂକଟର ସମ୍ମୁଖୀନ ହେବା କିଛି ବିଚିତ୍ର ନୁହେଁ । ଗବେଷଣା ଗୁରୁ ଠିକଣା କରିବା ପୂର୍ବରୁ ଗବେଷକ ଯାହାଙ୍କୁ ଗାଇଡ୍ ରୂପେ ଗ୍ରହଣ କରିବାକୁ ଇଚ୍ଛୁକ, ତାଙ୍କର ପଢ଼ାଶୁଣା, ଲେଖାଲେଖି ଏବଂ ଗବେଷଣା କ୍ଷେତ୍ରରେ ତାଙ୍କର ଅଭିଜ୍ଞତାକୁ ପ୍ରଥମରୁ ଚିହ୍ନିଥିବା ଏକାନ୍ତ ଆବଶ୍ୟକ । ଯେକୌଣସି ପ୍ରାଜ୍ଞ ଓ ବୟସ୍କ ବିଶାରଦଙ୍କୁ ଗବେଷଣା ଗୁରୁ ରୂପେ ଗ୍ରହଣ କଲାବେଳେ ଗବେଷକଜଣଙ୍କ ତାକୁ ତାଙ୍କର ଲେଖା ଭିତରୁ ଚିହ୍ନିବାକୁ ଉଦ୍ୟମ କରିଥିଲେ କିମ୍ବା ବ୍ୟକ୍ତିଗତ ସଂପର୍କରୁ ତାଙ୍କୁ ଜାଣିଥିଲେ କର୍ମ ପଥରେ ସଂକୋଚ ଭାବ ରହେ ନାହିଁ । ସ୍ୱାଧୀନତା ଓ ମୁକ୍ତପ୍ରାଣତା ବିଶେଷ ପ୍ରକାଶ ପାଏ ।

ଏହା ସତକଥା ଯେ, ଗବେଷଣା କର୍ମ ଆୟାସସାଧ୍ୟ ଓ ଶୃଙ୍ଖଳାସାପେକ୍ଷ । ଶୃଙ୍ଖଳାର ବିବିଧ ଶଙ୍କୁ କ'ଣ, ବିଚାର ବିବେଚନାର ଭିତ୍ତି କ'ଣ ? ଅଭିବ୍ୟକ୍ତିର ଧାରା କିପରି, ଏସବୁ ବିଭିନ୍ନ ପ୍ରାୟୋଗିକ ବିଧି ଗବେଷଣା-ଗୁରୁ, ଛାତ୍ର ଗବେଷକଙ୍କୁ ବିଭିନ୍ନ ସମୟରେ ସୂଚାଇ ଦେଇଥାନ୍ତି । ତଥ୍ୟାନୁସନ୍ଧାନ ବେଳେ ଯେଦି କେବେ କେଉଁଠି ମୂଳ ସୂତ୍ର ଖୋଜି ପାଇବା ଗବେଷକଙ୍କ ପାଖରେ ଅସମ୍ଭବ ବୋଧହୁଏ,

Digitized by srujanika@gmail.com

ସେତେବେଳେ ଗବେଷଣା ଗୁରୁ ଗନ୍ତବ୍ୟ ପଥର ସନ୍ଧାନ ଦିଅନ୍ତି । ଗବେଷଣା ଗୁରୁ ଓ ଗବେଷକଙ୍କ ଭିତରେ ପ୍ରତ୍ୟକ୍ଷ ସଂପର୍କ ରହୁଥିଲେ ଗବେଷଣା କର୍ମଟି ବୋଝ ଭଳି ମନେହୁଏ ନାହିଁ । ଅନେକ କ୍ଷେତ୍ରରେ ଦେଖାଯାଏ ଗବେଷଣା ଗୁରୁଙ୍କର ସ୍ୱୀକୃତି ପାଇସାରିଲା ପରେ ଗବେଷକ ନିଜ ସ୍ଥାନରେ ଥାଇ ଯୋଗଯୋଗ ରଖିବାରେ ହେଳା କରନ୍ତି । କସ୍ମିନ୍‌କାଳେ ମନେପଡ଼ିଲେ କୌତୂହଳବଶତଃ ଆପଣା ସମ୍ବାଦ କିମ୍ବା କିଛି ସମସ୍ୟାର ସଂକେତ ଦେଇ ଉତ୍ତର ପ୍ରତ୍ୟାଶା କରନ୍ତି । ଏହା ଗବେଷଣାର ପନ୍ଥା ନୁହେଁ । ଦୂରଦୂରାନ୍ତର ଗବେଷକମାନେ ଗବେଷଣା ଗୁରୁଙ୍କ ନିକଟକୁ ସମୟର ସ୍ୱଳ୍ପ ବ୍ୟବଧାନ ମଧ୍ୟରେ ଯୋଗଯୋଗ ରଖିବା ପାଇଁ ନିରନ୍ତର ଉଦ୍ୟମ କରିବା ଦ୍ୱାରା ଗବେଷଣା ପ୍ରବୃତ୍ତିରେ ସଜୀବତା ଖେଳିଯାଏ । ଆପଣା ଜିଜ୍ଞାସାକୁ ଚରିତାର୍ଥ ନ କଲା ପର୍ଯ୍ୟନ୍ତ କୌଣସି ଗବେଷକ ସ୍ଥିରହୋଇ ବସିପାରେ ନାହିଁ । କୌତୂହଳଟିଏ ମନରେ ଉଦିତ ହେଲା ଅର୍ଥ ତାହାକୁ ପରିଣତିରେ ନେଇ ପହଞ୍ଚାଇବା ହେଉଛି ଗବେଷକର କର୍ମ । ବ୍ୟକ୍ତିଗତ ସ୍ତରରେ ଯଦି ଏହାର ସମାଧାନ ହୋଇଯାଏ ତ' ଭଲ, ନ ହୋଇପାରିଲେ ଗବେଷଣା ଗୁରୁଙ୍କ ଭୂମିକା ହିଁ ଲୋଡ଼ାପଡ଼େ । ଫଳରେ ଯୋଗସୂତ୍ରରୁ ଯେଉଁ ଫଳ ମିଳିଲା, ଉଭୟଙ୍କ ମଧ୍ୟରେ ଆଲୋଚନା ହେତୁ ମନର ଅନ୍ଧାର ଯେପରି ପରିଷ୍କୃତ ହେଲା, ତାହା ଗବେଷକଙ୍କୁ ନୂତନ ଉତ୍ସାହରେ ଆଗେଇ ଯିବା ଲାଗି ପାଥେୟ ଯୋଗାଇ ଦେଲା ନାହିଁ କି ?

ଗବେଷଣା ଗୁରୁଙ୍କ ଶକ୍ତି ଓ ଦୁର୍ବଳତା ସଂପର୍କରେ ଗବେଷକ ସଚେତନ ଥିବା ଆବଶ୍ୟକ । ଶକ୍ତି ଓ ଦୁର୍ବଳତା– ଏହି ଦୁଇଟି କଥା ସଂପୂର୍ଣ୍ଣ ରୂପେ ପଢ଼ାପଢ଼ି ଓ ଲେଖାଲେଖି ସଂପର୍କୀୟ । ବାହୁବଳ, ପଦବୀ ବା ପରିବେଶର ବଳ ସହିତ ଏହାର କୌଣସି ସାତ୍ତ୍ୱିକ ସଂପର୍କ ନାହିଁ । ହୁଏତ ବ୍ୟତିକ୍ରମରେ କେତେବେଳେ କେମିତି ଭୌତିକ ସଂପର୍କ ଥାଇପାରେ । ଗବେଷଣା ବିଧି ସଂପର୍କରେ ଆଲୋଚନା କରିଥିବା ବହୁ ପାଶ୍ଚାତ୍ୟ ଗ୍ରନ୍ଥରୁ ସୂଚନା ମିଳେ ଯେ, ଗବେଷଣା ଗୁରୁଙ୍କର ଏକ ବିଶେଷ ଦୁର୍ବଳତା ହେଉଛି ତାଙ୍କ କୃତିକୁ ସ୍ୱୀକୃତି ଦେବାରେ ତାଙ୍କର ଶିଷ୍ୟ ଅନୁକୂଳ ମନୋଭାବ ପୋଷଣ କରୁଛି କି, ପ୍ରତିକୂଳତା ଆଚରଣ କରୁଛି, ତାହା ହିଁ ଜାଣିବା । କେତେକ କହନ୍ତି, କୌଣସି ଜଣେ ବିଶାରଦଙ୍କୁ ଆପଣାର ପ୍ରିୟ କରାଇବାର ମୂଳ ସୂତ୍ର ହେଉଛି, ତାଙ୍କ ଲିଖିତ କୌଣସି ଗ୍ରନ୍ଥକୁ କିମ୍ବା ତାଙ୍କ ମତକୁ ଆପଣା ଗବେଷଣାର reference ରୂପେ ବ୍ୟବହାର କରିବା । କିନ୍ତୁ ଏପରି ମନୋଭାବର ଯେ ବ୍ୟତିକ୍ରମ ନାହିଁ, ତା' ନୁହେଁ । ଯେଉଁମାନେ ନିରପେକ୍ଷ, ନିରାସକ୍ତ ଏବଂ ଅତ୍ମସ୍ତୁତି ବିମୁଖ-ଜ୍ଞାନୀବ୍ୟକ୍ତି ସେମାନେ ଏପରି ପ୍ରଲୋଭନ ଓ ମାୟା ଜାଲରେ ଆବଦ୍ଧ ହୁଅନ୍ତି ନାହିଁ ।

Digitized by srujanika@gmail.com

ଗବେଷଣା କୌଶଳଟି ବିଧିବଦ୍ଧ ଭାବରେ ଜାଣିବା ଲାଗି ନାନା ମତେ ଉଦ୍ୟମ କରୁଥିବା ଗବେଷକ ଏବଂ ସେହି ଗବେଷକଙ୍କୁ ନାନା ପରୀକ୍ଷାର ସମ୍ମୁଖୀନ କରାଇ ଶ୍ରମ ଓ ସଂକଟର ଭାର ବୁହାଇ ଗବେଷଣା ଗୁରୁ ଯଦି ଶୁଦ୍ଧ ସୁବର୍ଣ୍ଣଟିଏ ପାଇବାର ଆଶା ରଖିଥାନ୍ତି, ତେବେ ତାଙ୍କୁ ମାୟାମୟ ଆକର୍ଷଣ ଗ୍ରାସ କରିବ କାହିଁକି ? ଗବେଷକ ଆପଣା ବିଚାର ବିବେଚନାରେ ମୁକ୍ତ ହେଲାପରି ପଥଦିଶାରୀ ଗବେଷଣା ଗୁରୁ ମଧ୍ୟ ଅଭୟଦାତା, ବିଜ୍ଞ, ବିବେକୀ ହେବା ଉଚିତ । ଉଭୟଙ୍କ ମଧ୍ୟରେ ନିଷ୍କପଟ ସାଧର୍ମ୍ୟତା ଓ ସତ୍ୟାନୁସଂଧାନ ପାଇଁ ନିରଳସ ଉଦ୍ୟମ ଦେଖାଦେଲେ ଗବେଷଣା କର୍ମ ଦୁରୂହ ବ୍ୟାପାର ହୋଇ ରହେ ନାହିଁ । ଗବେଷକର ଜୀବନ ସାଥୀ ତା'ର ବିଷୟ ଏବଂ ପଥଦିଶାରୀ ହେଉଛନ୍ତି ତା'ର ପ୍ରାଣ ପ୍ରତିଷ୍ଠାତା । ବିଷୟଟି ପାଇଁ କେଉଁ କେଉଁ ପୁଞ୍ଜି ଆବଶ୍ୟକ ସେହି ସାମଗ୍ରୀ ସଂଗ୍ରହ ଭିତ୍ତିରେ ଗବେଷକର ଅଧ୍ୟୟନ ଓ ଅଗ୍ରଗତି ନିର୍ଭରକରେ । ଗୁରୁଙ୍କ ସହଯୋଗରେ ଗବେଷକ ଆବଶ୍ୟକ ଗ୍ରନ୍ଥପଞ୍ଜିର ଫର୍ଦ୍ଦଟିଏ ପ୍ରସ୍ତୁତ କରିପାରେ । ଏହି ଗ୍ରନ୍ଥପଞ୍ଜୀ ବା Bibliography ଗବେଷଣାର ପଣ୍ୟ ଓ ପାଥେୟ ।



---

(ସୁଚରିତା/ ୧୯୮୬ ଫେବୃଆରୀ)

Digitized by srujanika@gmail.com



ସମାଲୋଚନା-ସାହିତ୍ୟ କ୍ଷେତ୍ରରେ **ଅଧ୍ୟାପକ ଡକ୍ଟର କ୍ଷେତ୍ରବାସୀ ନାୟକ** (୧୯୩୯-୮୬) ଏକ ଉଜ୍ଜ୍ୱଳ ନାମ । ସ୍ୱଳ୍ପ ଜୀବନକାଳ ମଧ୍ୟରେ ସେ ଓଡ଼ିଆ ସାହିତ୍ୟ ସଂଗେ ସଂଗେ ଇଂରାଜୀ, ସଂସ୍କୃତ, ବଙ୍ଗଳାଦି ଭାଷାର ସାହିତ୍ୟ ଅଧ୍ୟୟନ ପୂର୍ବକ ଓଡ଼ିଆରେ କିଛି ଉଚ୍ଚକୋଟୀର ସମୀକ୍ଷାଗ୍ରନ୍ଥ ରଚନା କରିଯାଇଛନ୍ତି; ତନ୍ମଧ୍ୟରେ 'ଆଧୁନିକ ଓଡ଼ିଆ କାବ୍ୟସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ', 'କବି ଓ କାମିନୀ', 'ଭାରତୀୟ କାବ୍ୟତତ୍ତ୍ୱ', 'ସାହିତ୍ୟର ସାମାନ୍ୟ କଥନ', 'କବି ଅର୍ଜ୍ଜୁନ ଦାସ' ପ୍ରଭୃତି ପ୍ରଧାନ । ସାହିତ୍ୟ ସମୀକ୍ଷା ସହିତ କିଛି ସାହିତ୍ୟ-ସୃଷ୍ଟିରେ ମଧ୍ୟ ସେ ସ୍ପଷ୍ଟ ସ୍ୱାକ୍ଷର ରଖିଯାଇଛନ୍ତି । ବିଭିନ୍ନ ସାଂସ୍କୃତିକ ସଂଗଠନ ସହିତ ଓଡ଼ିଆ ଗବେଷଣା ପରିଷଦର ପ୍ରତିଷ୍ଠାତା-ସଂପାଦକ ଭାବରେ କାର୍ଯ୍ୟ କରିଥିଲେ । ଏହି ଗ୍ରନ୍ଥରେ ସ୍ଥାନିତ ଏଯାବତ୍ ଅପ୍ରକାଶିତ କେତୋଟି ପ୍ରବନ୍ଧରୁ ତାଙ୍କର ଗଭୀର ଅଧ୍ୟୟନ ଓ ଦୃଷ୍ଟିର ଦିଗନ୍ତ ସ୍ପଷ୍ଟ ।

Digitized by srujanika@gmail.com